

ଶବରୀପା



କାହ୍ନୁପା



ଲୁଇପା

# ଚର୍ଯ୍ୟା ଗୀତିକା

ଡକ୍ଟର ଖଗେଶ୍ୱର ମହାପାତ୍ର



ସରହପା



ଭୁସୁକୁପା

# ଚର୍ଯ୍ୟାଗୀତିକା

ଅଧ୍ୟାପକ ଡଃ **ଖଗେଶ୍ୱର ମହାପାତ୍ର** ଏମ୍.ଏ., ପି. ଏଚ୍.ଡ଼ି,

ଆଧୁନିକ ଭାରତୀୟ ଭାଷା ବିଭାଗ

ଦିଲ୍ଲୀ ବିଶ୍ୱବିଦ୍ୟାଳୟ

ଦିଲ୍ଲୀ



ଫ୍ରେଣ୍ଡସ୍ ପବ୍ଲିଶର୍ସ

ପୁସ୍ତକ ପ୍ରକାଶକ ଓ ବିକ୍ରେତା

ବିନୋଦ ବିହାରୀ, କଟକ-୨

# ଚର୍ଯ୍ୟା ଗୀତିକା



ପ୍ରକାଶକ

**ସହଦେବ ପ୍ରଧାନ**
ଫ୍ରେଣ୍ଡସ୍ ପବ୍ଲିଶର୍ସ
ବିନୋଦବିହାରୀ
କଟକ-୨

ପ୍ରଥମ ସଂସ୍କରଣ, ୧୯୬୫
ଦ୍ୱିତୀୟ ସଂସ୍କରଣ, ୧୯୭୦
ତୃତୀୟ ପରିବର୍ଦ୍ଧିତ ସଂସ୍କରଣ, ୧୯୭୬

ମୁଦ୍ରକ :

**ରୁବି ପ୍ରିଣ୍ଟର୍ସ**
ନିମଚଉଡ଼ି
କଟକ-୨

ମୂଲ୍ୟ ଟ ୧୨-୫୦

# CHARJA GEETIKA



Publisher
**Sahadev Pradhan**
Friends Publishers
Binodbehari
Cuttack 2

First Edition, 1965
Second Edition, 1970
Third Enlarged Edition, 1976

Printers :
**Ruby Printers**
Nimchouri
Cuttack-2

**PRICE Rs. 12-50**

# ଭୂମିକା

ବଙ୍ଗଳା ବନ୍ଧୁ ହାତରେ ଧରା ଚର୍ଯ୍ୟା ଗୀତମୁଣ୍ଡିକୁ ଓଡ଼ିଆ ଚେତନା ବୋଲି ଚିନ୍ତା କରିବାକୁ ମନରେ ଅଡ଼ୁଆ ଲାଗିଥିଲା ବେଳେ ଦଶବର୍ଷ ତଳେ ଓଡ଼ିଶାରେ ଏକ ଚର୍ଯ୍ୟା ସଙ୍କଳନ ପ୍ରକାଶ କରିବାକୁ ସ୍ଥିର କରିଥିଲି । ଯାହାହେଉ, ଏହା ମଧ୍ୟରେ ଡଃ କରୁଣାକର କରଙ୍କ ବହୁ ପ୍ରତୀକ୍ଷିତ ବହି ପ୍ରକାଶିତ ହୋଇଛି । ଓଡ଼ିଆ ଭାଷାର ଐତିହ୍ୟ ପ୍ରତିପାଦନରେ ଉତ୍ସାହୀ ଅନେକେ ଲୋକ ତାଙ୍କ ବହିରୁ ପ୍ରଚୁର ଉପାଦାନ ପାଇବାର ଆଶା କରାଯାଏ । ମୋ ବହିଟି ପ୍ରଥମରୁ ଛାତ୍ରସମାଜ ଓ ସାଧାରଣ ପାଠକଙ୍କୁ ଚର୍ଯ୍ୟା ଆଲୋଚନାରେ ଉଦ୍‌ବୁଦ୍ଧ କରିବା ଲକ୍ଷ୍ୟରେ ଲେଖାଯାଇଥିଲା । ଏ ବହିଟି ବର୍ତ୍ତମାନ ତୃତୀୟ ସଂସ୍କରଣରେ ପହଞ୍ଚିଥିଲେ ମଧ୍ୟ ଓଡ଼ିଆ ସାହିତ୍ୟର ପ୍ରବୀଣ ଅଧ୍ୟାପକଗଣ ଏବେବି 'ବୌଦ୍ଧଗାନ ଓ ଦୋହା' ନାମକ ପଦାର୍ଥଟି ପ୍ରତି ଉନ୍ମୁଖ ରହିଥିବାରୁ ମୁଁ ବାସ୍ତବରେ ମୋର ଲକ୍ଷ୍ୟ ପୂର୍ଣ୍ଣ ହୋଇନାହିଁ । 'ଚର୍ଯ୍ୟା-ଗୀତିକା' ନାମରେ ସହଜଯାନୀ ସିଦ୍ଧମାନଙ୍କ ରଚନାକୁ ଓଡ଼ିଆ ଆଲୋଚନାରେ ଚିହ୍ନିତ କରିବା ପକ୍ଷରେ ମୁଁ ଯୁକ୍ତିଯୁକ୍ତ ଭାବେ ପ୍ରତିପାଦନ କରିଥିଲେହେଁ ଅଜ୍ଞତାବଶତଃ ହେଉ ବା ଅବହେଳା ବଶତଃ ହେଉ ଏଠିକି ଅବଧାରଣା କରିବାକୁ ଅନେକ ସମର୍ଥ ହୋଇନାହାନ୍ତି । ଏଣୁ ଦଶବର୍ଷ ମଧ୍ୟରେ ଚର୍ଯ୍ୟା ଆଲୋଚନାରେ ପାଦେ ମାତ୍ର ପ୍ରଗତି ହୋଇନାହିଁ । ଓଡ଼ିଆ ସାହିତ୍ୟର ଇତିହାସ ଲେଖକମାନେ ତାଙ୍କ ବହିରେ ଏହି ବିଷୟରେ ଯେଉଁ ଅଧ୍ୟାୟ ଯାହା ଭର୍ତ୍ତି କରୁଛନ୍ତି, ତାହା କେବଳ ଆମ ଭ୍ରାନ୍ତିରେ ପ୍ରଚଳିତ କିମ୍ବଦନ୍ତୀମୂଳକ ଆଲୋଚନା ଉପରେ ଆଧାରିତ । ବିଶେଷତଃ ଐତିହାସିକ ଭାଷା ବିଜ୍ଞାନର ପ୍ରମାଣ ଓ ପଦ୍ଧତି ସମ୍ବନ୍ଧରେ ସମ୍ୟକ ଅବହିତ ନଥାଇ ଚର୍ଯ୍ୟାର ଭାଷାତାତ୍ତ୍ୱିକ ଆଲୋଚନାରେ ଅନେକ ପ୍ରବୃତ୍ତ ହେଉଥିବାରୁ ଆମର ଆଲୋଚନା କେବଳ ଦେଶଗତ ମାନ୍ୟତା ପ୍ରତିପାଦନରେ ସୀମିତ ରହିଯାଉଛି । ଏବେ ଓଡ଼ିଶାରେ ସାହିତ୍ୟ ଚର୍ଚ୍ଚାରେ ନେତୃତ୍ୱ ଓ ଧାରା ବଦଳୁଥିବାର ପ୍ରତୀତ ହୁଏ । ତେଣୁ ଆଶା ରଖୁଛି, ନୂତନ ଗୋଷ୍ଠୀର ଆଲୋଚକଙ୍କ ନିକଟରେ ମୋର ନିବେଦନ ବ୍ୟର୍ଥ ହେବ ନାହିଁ ।

ଚର୍ଯ୍ୟାର ଭାଷା ଓଡ଼ିଆ—ଏ କଥା ଆଉ ଅତି ଆବେଗମୂଳକ ଭାବରେ କହିଲେ ଚଳିବ ନାହିଁ; କହିବା ମଧ୍ୟ ବିପଦଜନକ । ତେଣୁ ଏ ପୁସ୍ତକର ସୀମିତ ପରିସର ମଧ୍ୟରେ ଏ ବିଷୟରେ କିଛି ସିଦ୍ଧାନ୍ତ କରିବାକୁ ମୁଁ ପସନ୍ଦ କରେନାହିଁ । ତେବେ ଗୀତଗୋବିନ୍ଦର ଆଧୁନିକ ରୂପାନ୍ତର' ଓ 'ଦେବକୋଷ' ପ୍ରତି ଲକ୍ଷ୍ୟ କଲେ ଚର୍ଯ୍ୟାର ଭାଷା ଓଡ଼ିଆ ଭାଷାର କେତେକ ନିକଟବର୍ତ୍ତୀ, ତାହା ସହଜରେ ଉପଲବ୍ଧ କରିହେବ ।

ଏହି ପ୍ରସଙ୍ଗରେ ମୋର ଅନ୍ୟ ବହି "ପ୍ରତ୍ନ-ଓଡ଼ିଆ : ଚର୍ଯ୍ୟା-ଗୀତିକା ଭିତ୍ତିକ ପ୍ରସ୍ତାବିତ ବ୍ୟାକରଣ" (୧୯୭୬) ଅନୁଧ୍ୟେୟ । ସିଦ୍ଧକବିମାନଙ୍କର ଓଡ଼ିଶା ସହିତ ସମ୍ପର୍କ ନିର୍ଣ୍ଣୟ ଐତିହାସିକମାନଙ୍କ କାର୍ଯ୍ୟ । ମୁଁ ସେମାନଙ୍କର ଟୀକା-ଟିପ୍ପଣୀ 'ପରିଶିଷ୍ଟ' ଭାବରେ ପ୍ରଦାନ କରିଛି । ସେହି ତଥ୍ୟଗୁଡ଼ିକ ଭିତ୍ତିରେ ସେମାନେ ଓଡ଼ିଆ ହୋଇ ପ୍ରମାଣିତ ହୋଇପାରିବେ କି ନାହିଁ, ତାହା ବିଚାର୍ଯ୍ୟ । ଚର୍ଯ୍ୟାର ଧର୍ମ-ଦର୍ଶନ ବିଷୟରେ ସ୍ୱତନ୍ତ୍ର ଭାବେ ବିସ୍ତାରିତ ଆଲୋଚନା କରି ନାହିଁ । କାରଣ ସହଜଯା ଧର୍ମର ମୂଳତତ୍ତ୍ୱ ସମ୍ପୃକ୍ତ ସମ୍ବନ୍ଧରେ ବହୁ କଥା ପରେ ଗୀତିକା ଗୁଡ଼ିକର ବ୍ୟାଖ୍ୟା ପ୍ରସଙ୍ଗରେ ପ୍ରଦତ୍ତ ହୋଇଛି । ଆଗ୍ରହୀ ପାଠକମାନେ ସେ ସବୁର ଉପଯୋଗ କରିପାରିବେ ।

ବର୍ତ୍ତମାନ ବର୍ଦ୍ଧିତ ସଂସ୍କରଣରେ ଅନ୍ୟ ଦୁଇଜଣ ସିଦ୍ଧକବି ସରହପା ଓ ଭୁସୁକୁପାଙ୍କର ୫୦ଟି ଗୀତିକା ଅନ୍ତର୍ଭୁକ୍ତ କରାଯାଇଛି । ଆଶା, ଅବଶିଷ୍ଟ ପଚାଶଟି ଗୀତିକା ଦ୍ୱିତୀୟଖଣ୍ଡରେ ସଙ୍କଳିତ ହେବ ।

ଏହି ବହିଟି ଲେଖିବା ଓ ପ୍ରକାଶ କରିବା ଦିଗରେ ଯେଉଁମାନଙ୍କର ସାହାଯ୍ୟ ଓ ସହାନୁଭୂତି ମୋ ନିକଟରେ ଅବିସ୍ମରଣୀୟ ସେମାନେ—ଡ. କୃଷ୍ଣଚନ୍ଦ୍ର ତ୍ରିପାଠୀ (ପ୍ରାକ୍ତନ ଅଧ୍ୟକ୍ଷ, ଓଡ଼ିଆ ବିଭାଗ, ରେଭେନ୍ସା କଲେଜ), ଡ: ରାମ ସିଂ ତୋମାର (ଅଧ୍ୟକ୍ଷ, ହିନ୍ଦୀ ବିଭାଗ, ବିଶ୍ୱଭାରତୀ), ଶ୍ରୀ ସି ଆର୍. ଜାନା (ଅଧ୍ୟକ୍ଷ, ତିବ୍ବତୀ ବିଭାଗ, ବିଶ୍ୱଭାରତୀ) । ଶ୍ରୀ ହରକ କୁମାର ପ୍ରାମାଣିକ ଓ ଶ୍ରୀ ଏସ୍ ଏନ୍. ଅଗରୱାଲ (ପରିଚାଳକ, କିତାବ ମହଲ ଆଲ୍ଲାହାବାଦ) । ସାହିତ୍ୟକାର ନିକଟରେ ଗ୍ରାହକତା ଲାଭଠାରୁ ବଳି ଅନ୍ୟ ଅନୁପ୍ରେରଣା ଉଚ୍ଛୁ ନାହିଁ । ଜଣେ ଆଧୁନିକ କବି ହୋଇ ମଧ୍ୟ ପ୍ରାଚୀନ ସିଦ୍ଧ କବିମାନଙ୍କ ରଚନା ପ୍ରତି ପ୍ରଚୁର ଆନ୍ତରିକତା ଦେଖାଇ ମତେ ପ୍ରେରଣା ଦେଇଛନ୍ତି ଶ୍ରୀ ରମାକାନ୍ତ ରଥ ।

ତା ୧୦ । ୮ । ୭୫
ଦିଲ୍ଲୀ ବିଶ୍ୱବିଦ୍ୟାଳୟ

ଖଗେଶ୍ୱର ମହାପାତ୍ର

# ମୁଖବନ୍ଧ

ମୁଁ ୧୯୪୯ ମସିହା ଅକ୍ଟୋବର ମାସ ଠାରୁ ଆରମ୍ଭ କରି ଅନ୍ୟୂନ ଦୁଇବର୍ଷ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ରହି ଓଡ଼ିଆଭାଷାର ବିକାଶ ବିଷୟରେ ଗବେଷଣା କରୁଥିବା ସମୟରେ ହରପ୍ରସାଦଙ୍କ ୧୯୦୭ରେ ନେପାଳରୁ ଆବିଷ୍କୃତ ଓ ୧୯୧୬ରେ 'ବୌଦ୍ଧଗାନ ଓ ଦୋହା' ନାମରେ ପ୍ରକାଶିତ 'ଚର୍ଯ୍ୟାପଦ'ଗୁଡ଼ିକ ସମ୍ବନ୍ଧରେ ସାଧାରଣ ଭାବରେ ଆଲୋଚନା କରିଥିଲି । ଉକ୍ତ ଆଲୋଚନା ପ୍ରସଙ୍ଗରେ ମୋର ଜଣେ ଅଧ୍ୟାପକ ସମାଲୋଚନା କରିଥିଲେ ଯେ, ଉକ୍ତ ଗ୍ରନ୍ଥରେ ପ୍ରକାଶିତ ଚର୍ଯ୍ୟାଗୀତିଗୁଡ଼ିକ ଗୋଟିଏ ପାଣ୍ଡୁଲିପିରୁ ମୁଦ୍ରିତ ହୋଇଥିବାରୁ ଚର୍ଯ୍ୟାଗୁଡ଼ିକର ଭାଷା ଅନେକ ସ୍ଥଳରେ ସନ୍ଦେହାତ୍ମକ । ପ୍ରାୟ ଏକ ହଜାର ବର୍ଷରୁ ଅଧିକ କାଳ ପୂର୍ବେ ଭାରତର ପୂର୍ବାଞ୍ଚଳରେ ଏଗୁଡ଼ିକ ରଚିତ ହୋଇଥିଲା । ନେପାଳରୁ ଯେଉଁ ପାଣ୍ଡୁଲିପି ଉପରେ ଏହାର ପାଠ ପ୍ରତିଷ୍ଠିତ ହୋଇଅଛି, ତାହାର ମୌଳିକ ରଚନାର ସମୟ ଓ ଉକ୍ତ ପାଣ୍ଡୁଲିପି ପୋଥିର ଲେଖା ସମୟ ମଧ୍ୟରେ ବହୁ ଥର ଏହା ନକଲ କରାଯାଇଥିବ । ତେଣୁ ପ୍ରତ୍ୟେକ ଲିପିକାର ଭାଷାରେ କେତେକ ପ୍ରମାଦ ଓ ପରିବର୍ତ୍ତନ କରିଥିବା ଅତ୍ୟନ୍ତ ସ୍ୱାଭାବିକ । ତେଣୁ ଉକ୍ତ ଅଧ୍ୟାପକଙ୍କ ଉକ୍ତି ସମ୍ପୂର୍ଣ୍ଣ ସମୀଚୀନ, ଏକଥା ପ୍ରାୟ ସମସ୍ତେ ସ୍ୱୀକାର କରିବେ ।

ଲଣ୍ଡନରେ ଥିବା ସମୟରେ ମୁଁ ଢାକା ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଡକ୍ଟର ଶହୀଦ-ଉଲ୍ଲାଙ୍କ ଫରାସୀ ଭାଷାରେ ପ୍ରକାଶିତ "Les chants Mystiques de Kanha et de Saraha" ପଢ଼ିବାକୁ ପାଇଥିଲି । ସେଥିରେ ସେ ଫରାସୀ ଭାଷାରେ ଅନୂଦିତ କେତେକ ଚର୍ଯ୍ୟାର ବିଷୟ ମଧ୍ୟ ଆଲୋଚନା କରିଛନ୍ତି । କିନ୍ତୁ ଉକ୍ତ ଗ୍ରନ୍ଥଟି ଫ୍ରାନ୍ସରେ ବା ଲଣ୍ଡନରେ ସୁଲଭ ନଥିବାରୁ ଭାରତକୁ ଆସି ତାହାକୁ ତନ୍ନ ତନ୍ନ ଭାବରେ ପଢ଼ିବାର ସୁବିଧା ମୁଁ ପାଇନାହିଁ । ଢାକା ବିଶ୍ୱବିଦ୍ୟାଳୟରୁ ୧୯୫୭ ଖ୍ରୀ.ଅ ରେ ପ୍ରକାଶିତ ସାହିତ୍ୟପତ୍ରିକା(୧୩୬୪, ପ୍ରଥମ ବର୍ଷ, ପ୍ରଥମ ସଂଖ୍ୟା)ରେ "ବୌଦ୍ଧଗାନେର ଭାଷା" ନାମକ ପ୍ରବନ୍ଧରେ ସେ ମତ ଦେଇଛନ୍ତି, "ଆମ୍ଭେମାନେ ବୌଦ୍ଧଗାନର ବଙ୍ଗଳାଭାଷାକୁ ପଶ୍ଚିମବଙ୍ଗର ବୋଲି ନିର୍ଦ୍ଦେଶ ନ କରି କେବଳ ପ୍ରାଚୀନ ବଙ୍ଗଳା କିମ୍ବା ବୈଜ୍ଞାନିକ ଭାବେ ପ୍ରାଚୀନ ବଙ୍ଗ-କାମରୂପୀ ଭାଷା କହିବା ସଙ୍ଗତ ମନେକରୁଛୁ ।" ସେହି ପ୍ରବନ୍ଧରେ ସେ ମତ ଦେଇଛନ୍ତି ଯେ, ଏହାର ଭାଷା

ଓଡ଼ିଆ, ଆସାମୀ, ମୈଥିଳୀ, ହିନ୍ଦୀ ଓ ଅପଭ୍ରଂଶ ନୁହେଁ । ଓଡ଼ିଆ ନ ହେବାର କାରଣ ସ୍ୱରୂପ ସେ କହନ୍ତି, 'ଆର୍ଯ୍ୟଦେବଙ୍କ ଭିନ୍ନ ଅନ୍ୟ କୌଣସି କବିଙ୍କ ଭାଷାରେ ଓଡ଼ିଆର ବୈଶିଷ୍ଟ୍ୟ, ଯଥା ଅଧିକରଣରେ 'ରେ' ଅଛ୍ ଧାତୁର ଅତୀତ କାଳରେ 'ଥିଲ' ପ୍ରଭୃତି ଦେଖାଯାଏ ନାହିଁ ।''

ତତ୍ପରେ ପ୍ରବୋଧ ଚନ୍ଦ୍ର ବାଗ୍‌ଚୀ ତିବ୍ବତୀୟ ଅନୁବାଦର ସାହାଯ୍ୟ ନେଇ ଚର୍ଯ୍ୟାଗୀତି-ଗୁଡ଼ିକର ପାଠ ସଂଶୋଧନ କରିବାକୁ ଚେଷ୍ଟା କରିଅଛନ୍ତି * । ମୁଁ ପ୍ରାୟ ୪ବର୍ଷ ତଳେ କାଠମାଣ୍ଡୁକୁ ଦ୍ୱିତୀୟ ଥର ଯାତ୍ରା କରିବା ସମୟରେ କାଠମାଣ୍ଡୁସ୍ଥ ପୋଥିଶାଳାକୁ ଯାଇ 'ବୌଦ୍ଧଗାନ ଓ ଦୋହା' ଗ୍ରନ୍ଥର ମୌଳିକ ପାଣ୍ଡୁଲିପିଟି ଦେଖିବାକୁ ଚାହିଁଥିଲି । ଗ୍ରନ୍ଥାଗାର ରକ୍ଷକ ମୋତେ ହରପ୍ରସାଦଙ୍କ ''ବୌଦ୍ଧଗାନ ଓ ଦୋହା'' ପୁସ୍ତକଟି ଓ 'ସରହପାଦଙ୍କ ଦୋହା' ନାମକ ଖଣ୍ଡିଏ ତାଳପତ୍ର ପୋଥି ଆଣିଦେଲେ । 'ବୌଦ୍ଧଗାନ ଓ ଦୋହା' ହେଉଛି ହରପ୍ରସାଦଙ୍କ ପ୍ରଦତ୍ତ ନାମ । କିନ୍ତୁ ଯେଉଁ ପାଣ୍ଡୁଲିପି ଉପରେ ଏହା ପ୍ରତିଷ୍ଠିତ, ତାହାର ନାମଟି ଶୀଘ୍ର ବାହାର କରିବାରେ ଅସୁବିଧା ଥିବାରୁ ଓ ମୋର ସମୟାଭାବରୁ ମୌଳିକ ଗ୍ରନ୍ଥଟି ଦେଖିବାର ସୌଭାଗ୍ୟଲାଭ କରିପାରିଲି ନାହିଁ ।

ଚର୍ଯ୍ୟାଗୀତିଗୁଡ଼ିକର ଯେଉଁ ପାଠ ବର୍ତ୍ତମାନ ପୂର୍ବା ଆମ ଆଗରେ ଉପସ୍ଥାପିତ କରିଯାଏ, ତାହା ପାଠକକୁ ଦୁଇଟି ସମସ୍ୟାର ସମ୍ମୁଖୀନ କରାଏ । ପ୍ରଥମତଃ ତାହାର ଭାଷାତତ୍ତ୍ୱ ଓ ଦ୍ୱିତୀୟତଃ ତାହାର ଧର୍ମତତ୍ତ୍ୱ * । ଚର୍ଯ୍ୟାଗୀତି ଗୁଡ଼ିକର ମୂଳପଦକୁ ଉଦ୍ଧାର

---

୧୯୫୬ ଖ୍ରୀଷ୍ଟାବ୍ଦ, (ଶାନ୍ତିନିକେତନ) ପ୍ରକାଶିତ ବାଗ୍‌ଚୀ ଏବଂ ଶାନ୍ତିଭିକ୍ଷୁଙ୍କ ସମ୍ପାଦିତ 'ଚର୍ଯ୍ୟାଗୀତି କୋଷ' ଦ୍ରଷ୍ଟବ୍ୟ ।

* ଆତ୍ମାବାଦ ବା ଈଶ୍ୱରବାଦ ବ୍ୟତୀତ ଷଟ୍‌ଚକ୍ର ସାଧନା ଏହି ଧର୍ମତତ୍ତ୍ୱରେ ପ୍ରଧାନ ଅଂଶ ଗ୍ରହଣ କରିଅଛି । ଷଟ୍‌ଚକ୍ରସାଧନା ଭାଗବତ୍ ଗ୍ରନ୍ଥରେ ମଧ୍ୟ ଦେଖିବାକୁ ମିଳେ :—

(କ) ପାର୍ଷ୍ଣ୍ୟାପୀଡ୍ୟ ଗୁଦଂ ପ୍ରାଣଂ ହୃଦୁରଃକଣ୍ଠମୂର୍ଦ୍ଧସୁ
ଆରୋପ୍ୟ ବ୍ରହ୍ମରନ୍ଧ୍ରେଣ ବ୍ରହ୍ମ ନୀତ୍ୱୋତ୍ସୃଜେତ୍ତନୁମ୍ ।'

(ଖ) ''ଏ ଜୀବ ଆତ୍ମା ମହେଶ୍ୱର । ସୂକ୍ଷ୍ମ ନିର୍ମଳ ନିରାଧାର ।
ସ୍ୱରୂପ ସ୍ୱରୂପ ଏ ଆଦ୍ୟ । ଦେହେଁ ପ୍ରକାଶ ଚକ୍ରଭେଦ ।
ପ୍ରଥମ ଚକ୍ରେ ସୂକ୍ଷ୍ମ ରୂପ । ଦ୍ୱିତୀୟେ ପ୍ରକାଶେ ଅଳପ ।
ତହୁଁ ଅଧିକ ମଣିପୁରେ । ପ୍ରକାଶ ଅନାହତ ଦ୍ୱାରେ ।
ମୃଣାଳ ସୂତ୍ର ମାର୍ଗେ ଜ୍ୟୋତି । ଧ୍ୟାନ ଅଭ୍ୟାସେ ଯାହା ଚିନ୍ତି ।
ଚକ୍ର ପବନ ମହାବଳୀ । ମନ ପବନ ସଙ୍ଗେ ତୋଳି ।
ବିଶୁଦ୍ଧ ଚକ୍ର ଭ୍ରୂମଧ୍ୟଦେଶେ । ଆସନ ଦୃଢ଼ ବନ୍ଧ ପାଶେ ।
ପ୍ରାଣକୁ ବ୍ରହ୍ମରନ୍ଧ୍ରେ ଥୋଇ । ନିଶ୍ଚଳ ଧ୍ୟାନେ ମନ ଦେଇ ।
ତେବେ ତୁ ଦେଖିବୁ ସାକ୍ଷାତେ । ଆତ୍ମାର ରୂପ ଦୃଷ୍ଟି ମାତ୍ରେ ।



* * *

କରିବାରେ ଚର୍ଯ୍ୟାପଦ ଉପରେ ମୁନିଦତ୍ତଙ୍କ ଟୀକା ବେଳେ ବେଳେ ଆଲୋକପାତ କରେ । କାରଣ ମୁନିଦତ୍ତ ଯେଉଁ ମୌଳିକଗୀତିକୁ ସମ୍ମୁଖରେ ରଖି ଟୀକା କରିଥିଲେ, ତାହାର ପ୍ରାରମ୍ଭ ଶବ୍ଦାବଳୀ ଟୀକାରେ ଉଦ୍ଧାର କରିଛନ୍ତି । ତଦ୍ଦ୍ୱାରା ମୌଳିକ ଚର୍ଯ୍ୟାଗୀତିର ପଦ କେତେକ ସ୍ଥଳରେ ସଂଶୋଧିତ ହୋଇ ପାରୁଅଛି । କିନ୍ତୁ ମନେହୁଏ, ମୁନିଦତ୍ତଙ୍କ ଟୀକା ଲେଖିବାର ଉଦ୍ଦେଶ୍ୟ ହେଉଛି, ସେ ଚର୍ଯ୍ୟାଗୀତି ଗୁଡ଼ିକର ଧର୍ମତତ୍ତ୍ୱକୁ ପ୍ରକାଶ କରିବା; ତାହାର ଭାଷାତତ୍ତ୍ୱକୁ ପ୍ରକାଶ କରିବା ନୁହେଁ । ଭାଷାତାତ୍ତ୍ୱିକ ଆଲୋଚନାରେ ଗବେଷକଙ୍କୁ କେତେକ ପରିମାଣରେ ନିରାଶ ହେବାକୁ ପଡ଼େ । ମୁନିଦତ୍ତ ଯେଉଁ ପୋଥି ଉପରେ ନିର୍ଭର କରି ତାଙ୍କ ଟୀକା ଲେଖିଥିଲେ, ତାହା ଯେ ପ୍ରମାଦହୀନ ହୋଇଥିବ, ଏହା ବିଶ୍ୱାସ କରାଯାଇ ନ ପାରେ । ମୁନିଦତ୍ତଙ୍କ ଟୀକାରେ ନାଚଅ, ଯାଅଅ ପ୍ରଭୃତି ଅ-ପ୍ରତ୍ୟୟାନ୍ତ କ୍ରିୟାକୁ ବର୍ତ୍ତମାନ କାଳ ତୃତୀୟ ପୁରୁଷ କ୍ରିୟା ରୂପରେ ନେଇଛନ୍ତି । (ଯଥା ନୃତ୍ୟତି, ଯାତିକୁ ଅପଭ୍ରଷ୍ଟ ବୋଲି ଗ୍ରହଣ କରିଛନ୍ତି । କିନ୍ତୁ ଭାଷାତତ୍ତ୍ୱ ଦିଗରୁ ଏହା ସନ୍ଦେହାତ୍ମକ । ହୁଏ ତ 'ନାଚଇ', 'ଯାଅଇ' ପ୍ରଭୃତି ମୌଳିକ ପାଠ ଥିଲା ।

ଚର୍ଯ୍ୟାଗୀତିକାରମାନେ ମିଥିଳାଠାରୁ ଆରମ୍ଭ କରି ଓଡ଼ିଶା ପ୍ରଦେଶ ପର୍ଯ୍ୟନ୍ତ ବିସ୍ତୃତ ରହିଥିବା ଓ ମାଗଧୀ ଅପଭ୍ରଂଶ ବ୍ୟବହାର କରୁଥିବା ଅଞ୍ଚଳର ଅଧିବାସୀ ଥିବାର ଜଣାପଡ଼େ । ସେମାନେ ଅନେକ ଆଞ୍ଚଳିକ ଶବ୍ଦ ପ୍ରୟୋଗ କରିଅଛନ୍ତି, ଯାହା କି ଏହି ସମଗ୍ର ଅଞ୍ଚଳରେ ସର୍ବଜନ ବୋଧ୍ୟ ନୁହେଁ । ମନେହୁଏ, ପଣ୍ଡିତ ମୁନିଦତ୍ତ ଏହିସବୁ ଶବ୍ଦ-ଗୁଡ଼ିକର ଅର୍ଥ କେତେକ ସ୍ଥଳରେ ସମ୍ପୂର୍ଣ୍ଣଭାବେ ବୁଝିବାରେ ସମର୍ଥ ହୋଇ ନ ଥିଲେ (୩୨ ନମ୍ବର ଚର୍ଯ୍ୟାର ଟୀକା ଦ୍ରଷ୍ଟବ୍ୟ) । ଚର୍ଯ୍ୟାଗୀତିଗୁଡ଼ିକର ଭାଷାରେ ବଙ୍ଗଳା, ଓଡ଼ିଆ, ମୈଥିଳୀ, ଭୋଜପୁରୀ, ମାଘୀ, ଆସାମୀ ଭାଷାର ଏବଂ ଅଳ୍ପସ୍ଥଳରେ ପୂର୍ବୀ ହିନ୍ଦୀର ପ୍ରାଚୀନ ନିଦର୍ଶନ ମିଳିବା ସ୍ୱାଭାବିକ । ତେଣୁ ଏହାକୁ ପ୍ରାଚୀନ ବଙ୍ଗଳା ପ୍ରାଚୀନ ଓଡ଼ିଆ ପ୍ରଭୃତି କହିବା କେତେଦୂର ବୈଜ୍ଞାନିକ, ତାହା ଚିନ୍ତନୀୟ । ଏହାର ଭାଷା ମୋଟାମୋଟି ପ୍ରାକୃତ ସଙ୍କାର ଅନ୍ତର୍ଭୁକ୍ତ ମାଗଧୀ ଅପଭ୍ରଂଶର ଶେଷସ୍ତରର ନିଦର୍ଶନ । ମୁନିଦତ୍ତ ଏହାର ଭାଷାକୁ 'ପ୍ରାକୃତ' ବୋଲି ଲେଖିଛନ୍ତି । ଏହିପରି ମତ ମୁଁ ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରକାଶିତ

---

"ଏ ଷଡ଼ଚକ୍ର ଭେଦ ସୂତ୍ରେ । ଶବଦ ଦ୍ୱାଦଶ ପ୍ରକାରେ ।
ଏ ଅନାହତ ପୁରେ ସ୍ଥିତ । ଜୀବ ଆତ୍ମାର ତତ୍ତ୍ୱଗତ ।"
[ ଭଗବତ ୧ । ୧୩ । ୧୬–୧୭ (ଗର୍ଗବଂଶୁ ସଂସ୍କରଣ) ]

(ଗ) ପ୍ରାଣ ଅପାନ ବାୟୁ ବଳେ । ରସନା ତୋଳି ତାଳୁ ମୂଳେ ।
ନିଶ୍ଚଳ ଧ୍ୟାନେ ଦୃଷ୍ଟି ଏକେ । ସାଧିବ ପୂରକ କୁମ୍ଭକେ ।
ରେଚକେ କରି ତାକୁ ସମ । ନାସାଗ୍ରେ ସ୍ଥାପିବ ନୟନ ।
(୭ । ୧୨ । ୩୧—୩୨)

'କୋଣାର୍କ'ପତ୍ରିକାର ଦ୍ୱିତୀୟ ବର୍ଷ ଦ୍ୱିତୀୟ ସଂଖ୍ୟା(୧୯୬୦)ରେ ଛାପନ କରିଥିଲି । ଏଥିରେ ଓଡ଼ିଆଭାଷାର ଦ୍ୱିତୀୟା ବିଭକ୍ତିର ଚିହ୍ନ—'କୁ'ସପ୍ତମୀ ଏକବଚନର'ଚିହ୍ନ'ରେ ବ୍ୟବହାର ଓ କେତେକ ଓଡ଼ିଆଶବ୍ଦର ପ୍ରୟୋଗ ଥିଲେ ମଧ୍ୟ ଏହା ମାଗଧୀ ଅପଭ୍ରଂଶର ଶେଷ ସ୍ତରରେ ଲେଖା, ବୋଲି ମୁଁ ଏବେ ମଧ୍ୟ ମତ ପୋଷଣ କରୁଅଛି । *

ଅତି ଆନନ୍ଦର କଥା, ବିଶ୍ୱଭାରତୀର ଅଧ୍ୟାପକ ଶ୍ରୀଯୁକ୍ତ ଖଗେଶ୍ୱର ମହାପାତ୍ର ପୂର୍ବ-ପ୍ରକାଶିତ ପଚାଶଟି ଚର୍ଯାଗୀତ ମଧ୍ୟରୁ କାହ୍ନୁ, ଲୁଇ ଓ ଶବରଙ୍କର ରଚିତ ସତର ଗୋଟି ଚର୍ଯା ବିସ୍ତୃତ ଟୀକା-ଟିପ୍ପଣୀ ଓ ଦୀର୍ଘ ଉପାଦେୟ ମୁଖବନ୍ଧ ସହ 'ଚର୍ଯା-ଗୀତିକା' ନାମରେ ଓଡ଼ିଆଭାଷାରେ ପ୍ରକାଶ କରିଅଛନ୍ତି । ଓଡ଼ିଆଭାଷାରେ ପ୍ରକାଶିତ ଚର୍ଯାଗୀତ ସମ୍ବନ୍ଧୀୟ ଏହା ପ୍ରଥମ ପୁସ୍ତକ । ଏଥିରେ ସେ ପ୍ରାଞ୍ଜଳ ଭାବରେ ଚର୍ଯାଗୁଡ଼ିକର ଅର୍ଥ ପୂର୍ବବର୍ତ୍ତୀ ପ୍ରାୟ ସମସ୍ତ ଗବେଷକମାନଙ୍କର ମତାମତ ପ୍ରଦାନପୂର୍ବକ ଉପସ୍ଥାପିତ କରିଅଛନ୍ତି । ଏହାର ଯେ ସର୍ବତ୍ର ଆଦର ହେବ, ଏଥିରେ ସନ୍ଦେହ ନାହିଁ । କାରଣ ଓଡ଼ିଆଭାଷାର ଓ ସାହିତ୍ୟର ବିବର୍ତ୍ତନ ** ସମ୍ପର୍କରେ ଏ ଗ୍ରନ୍ଥ ବିଶିଷ୍ଟ ଆଲୋକପାତ କରେ ।

ଏପରି ଗୋଟିଏ ମୂଲ୍ୟବାନ ଗ୍ରନ୍ଥକୁ ପ୍ରକାଶ କରିବାର ଦାୟିତ୍ୱ ନେଇଥିବାରୁ ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ—୨, ଓଡ଼ିଆ ପାଠକମାନଙ୍କର ଧନ୍ୟବାଦର ପାତ୍ର ।

ରେଭେନ୍‌ସା କଲେଜ,
( ସ୍ୱାଧୀନତା ଦିବସ )
ତା ୧୫।୮।୬୫

କୁଞ୍ଜବିହାରୀ ତ୍ରିପାଠୀ

---

* ପ୍ରଫେସର ଡକ୍ଟର ହରିବଂଶ କୋଚ୍ଛଡ ତାଙ୍କର "ଅପଭ୍ରଂଶ ସାହିତ୍ୟ" ନାମକ ପି.ଏଚ୍.ଡି ପାଇଁ ସ୍ୱୀକୃତ ପ୍ରବନ୍ଧରେ ଏହି ମତ ମଧ୍ୟ ଗ୍ରହଣ କରିଛନ୍ତି ।
( ପୃ. ୩୦୦—୩୧୮ ଦେଖ )

* ଚର୍ଯାପଦରେ ବ୍ୟବହୃତ ଓଡ଼ିଆ ବିଭକ୍ତି (ଚିହ୍ନ) ସକାଶେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରକାଶିତ E. O. L. S. ଗ୍ରନ୍ଥ ଦ୍ରଷ୍ଟବ୍ୟ ।

* ଓଡ଼ିଆ ସାହିତ୍ୟରେ ଷଡ଼୍‌ଚକ୍ରସାଧନା ବା କାୟସାଧନା ସମ୍ବନ୍ଧରେ ଅବସରପ୍ରାପ୍ତ ଅଧ୍ୟାପକ ଡ. କରୁଣାକର କରଙ୍କ ଡି.ଲିଟ୍ ଥିସିସ୍ ଦ୍ରଷ୍ଟବ୍ୟ ।

# ସୂଚୀପତ୍ର

ବିଷୟ ପୃଷ୍ଠା

## ପ୍ରଥମ ଭାଗ—ଅବତରଣିକା



## ଦ୍ୱିତୀୟ ଭାଗ—ଗୀତିକାର ଓ ଗୀତିକା

ବିଷୟ | ପୃଷ୍ଠା



## ତୃତୀୟ ଭାଗ

# ସଙ୍କେତ ସୂଚୀ

ବ.ସା.ପ. ପତ୍ରିକା—ବଙ୍ଗୀୟ ସାହିତ୍ୟ ପରିଷଦ ପତ୍ରିକା
ବି.ଭା.ପ.—ବିଶ୍ୱଭାରତୀ ପତ୍ରିକା
ଚ.ଗୀ.ପ.—ଚର୍ଯାଗୀତି-ପଦାବଳୀ, ୧୯୫୬ (ପ୍ରଥମ ସଂସ୍କରଣ)
I.H.Q.—Indian Historical Quarterly.
I.L.—Indian Linguistics.
J.B.O.R.S.—Journal of the Bihar and Orissa Historical Research Society.
J.D.L.—Calcutta University Journal of the Department of letters.
Materials for etc.—Materials for a critical Study of the old Bengali Carya Padas. 1938
O.B.L.T.—Old Bengali Language and Text, 1963.
O D.B.L.—Origin and Development of the Bengali Language, 1926.

# ଚର୍ଯ୍ୟା-ଗୀତିକା

## ୧

ଚର୍ଯ୍ୟା-ଗୀତିକା କହିଲେ ସ୍ଥୂଳତଃ ବୁଝାଏ ଯେ ସରହ, ଶବର, ଲୁଇ, କାହ୍ନୁ ପ୍ରମୁଖ ସିଦ୍ଧାଚାର୍ଯ୍ୟମାନଙ୍କ ଦ୍ୱାରା ବିରଚିତ ପଚାଶଟି ଗୀତ-କବିତା । ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ ଏହି ଗୀତିକା ସମ୍ଭାରର ଆବିଷ୍କର୍ତ୍ତା । ଖ୍ରୀ ୧୯୦୭ରେ ସେ ନେପାଳରେ ପ୍ରାଚୀନ ପୋଥିପତ୍ର ସଂଗ୍ରହ କରୁଥିବାବେଳେ ଦରବାର ପୋଥିଶାଳାରୁ ଉକ୍ତ ପଚାଶଟି ଗୀତିକା ସଂଗ୍ରହର ଖଣ୍ଡିଏ ପୋଥି ପାଇଥିଲେ । ଖ୍ରୀ ୧୯୧୬ରେ ବଙ୍ଗୀୟ ସାହିତ୍ୟ ପରିଷଦ ତରଫରୁ 'ବୌଦ୍ଧଗାନ ଓ ଦୋହା' ନାମକ ଗ୍ରନ୍ଥରେ ସରହପା ଓ କାହ୍ନୁପାଙ୍କ ଦୋହାକୋଷ ଏବଂ ଡ଼ାକାର୍ଣ୍ଣବ ସହିତ ଏହି ଗୀତିକାସମୂହ ସେ ପ୍ରକାଶ କରିଥିଲେ । ପୋଥିଟିର ଚାରୋଟି ପତ୍ର ନଷ୍ଟ ହୋଇଯାଇଥିବାରୁ (ପତ୍ର ନ. ୩୫, ୩୬, ୩୭, ୩୮, ୬୬ ଓ ଶେଷପତ୍ର ଯାହା ସମ୍ଭବତଃ ୭୦) ଏଥିରେ ପଚାଶଟି ଚର୍ଯ୍ୟା-ଗୀତିକା ମଧ୍ୟରୁ ନ ୨୩ ଗୀତିକାର ପ୍ରଥମ ତିନିପଦର ପରବର୍ତ୍ତୀ ଅଂଶ, ନ. ୨୪, ନ. ୨୫ ଓ ନ. ୪୮ ଗୀତିକା ତିନୋଟି ମିଳି ନ ଥିଲା । ଯା'ହେଉ, ପରବର୍ତ୍ତୀ କାଳରେ ଡ଼ଃ ପ୍ରବୋଧ ଚନ୍ଦ୍ର ବାଗଚୀ ତିବ୍ବତୀ ଅନୁବାଦରୁ ଏହି ନଷ୍ଟ ଓ ଖଣ୍ଡିତ ଅଂଶର ଆଖ୍ୟାତ ବିଷୟ ଉଦ୍ଧାର କରିଛନ୍ତି ଏବଂ ତାକୁ ଭିତ୍ତି କରି ଡଃ ସୁକୁମାର ସେନ ମୂଳ ଗୀତିକାର ପରିକଳ୍ପିତ ପାଠ ପ୍ରକାଶ କରିଛନ୍ତି ।

ଚର୍ଯ୍ୟା-ଗୀତିକାର ସଂଖ୍ୟା କିନ୍ତୁ ପଚାଶରେ ସୀମିତ ନୁହେଁ । ଶାସ୍ତ୍ରୀଙ୍କ ପୋଥିରେ ନ. ୧୦ ଗୀତିକା ଶେଷରେ ଅଛି—"ଲଡ଼ୀ ଡୋମ୍ବୀ ପାଦାନାଂ ସୂଚନେତ୍ୟାଦି । ଚର୍ଯ୍ୟାସ୍ୟା ବ୍ୟାଖ୍ୟା ନାସ୍ତି ।" ଏଥିରୁ ଅନୁମିତ ହୁଏ ଯେ ଲଡ଼ୀ ଡୋମ୍ବିପାଦଙ୍କର ଏକ ଗୀତିକା ଥିଲା । ତା'ର ବ୍ୟାଖ୍ୟା ନ ଥିବାରୁ ପୋଥିର ଲିପିକାର ଗୀତିକାଟି ଉଦ୍ଧାର କରିନାହାନ୍ତି । ତିବ୍ବତୀ ପୋଥିପତ୍ରରୁ ଅନୂଦିତ ରୂପରେ ବହୁ ଗୀତିକାର ସନ୍ଧାନ ମିଳିଛି । ଶଚୀନାଥ ବସୁ ସହଜ-ଗୀତି ଓ ଲୁଇ-ଗୀତି ଶୀର୍ଷକ ଦୁଇଟି ଗୀତିକା ଆବିଷ୍କାର କରିଛନ୍ତି (୧) । ପଣ୍ଡିତ ରାହୁଲ ସାଂକୃତ୍ୟାୟନ ସ-କ୍ୟ ବିହାରସ୍ଥ ପୋଥିପତ୍ରରୁ ବିନୟଶ୍ରୀଙ୍କର ୧୫ଟି ଗୀତିକା, ସୁମଙ୍ଗ ଗୀତି, ଲୁଇ ଗୀତି ଓ କାହ୍ନୁପା ଗୀତି ଶୀର୍ଷକ ଆଉ ତିନୋଟି ଗୀତିକା ପ୍ରକାଶ କରିଛନ୍ତି

---

୧ । ହରପ୍ରସାଦ ସମ୍ବର୍ଦ୍ଧନା ଲେଖମାଳା, ୨ୟ ଭାଗ, ପୃଷ୍ଠା ୯୧—ତିବ୍ବତୀ ଭାଷାୟ କୟେକଟି ବୌଦ୍ଧଗାନ (ବଙ୍ଗୀୟ ସାହିତ୍ୟ ପରିଷଦ—୧୩୩୯)

(୧) । କାହ୍ନୁପାଙ୍କ ଗୀତିକାଟି ନ. ୩୬ ଗୀତିକା ସହ ସମାନ; ମାତ୍ର ଏହାର ଆରମ୍ଭରେ ଛ'ପଦ ଓ ଶେଷରେ ଏକ ପଦ ଅଧିକ ରହିଛି । ନେପାଳୀ ବୌଦ୍ଧମାନଙ୍କ ମଧ୍ୟରେ ପ୍ରଚଳିତ 'ଚର୍ଯ୍ୟେ' ନାମକ ଗ୍ରନ୍ଥରୁ ସେ ମଧ୍ୟ ଜାଳନ୍ଧରୀପାଙ୍କର ଗୋଟିଏ ଗୀତିକା ଉଦ୍ଧାର କରିଛନ୍ତି (୨) । ଟେଙ୍ଗୁର ଗ୍ରନ୍ଥତାଲିକାରେ ଦୀପଙ୍କର ଶ୍ରୀଜ୍ଞାନକୃତ ଚର୍ଯାଗୀତି ନାମକ ଗ୍ରନ୍ଥର ଉଲ୍ଲେଖ ଦେଖାଯାଏ (୩) । ଗ୍ରନ୍ଥଟି ଆବିଷ୍କୃତ ହେଲେ ଅନେକଗୁଡ଼ିଏ ଗୀତିକା ମିଳିବାର ସମ୍ଭାବନା ଅଛି । ଏହା ବ୍ୟତୀତ ଚର୍ଯାର ସଂସ୍କୃତ ଟୀକାରେ ଏବଂ ତାନ୍ତ୍ରିକ ବୌଦ୍ଧଗ୍ରନ୍ଥ-ମାନଙ୍କରେ ଏପରି ଅନେକ ଉଦ୍ଧୃତାଂଶ ଦେଖାଯାଏ ଯେ ଯାହାର ମୂଳ ବା ସମ୍ପୂର୍ଣ୍ଣ ରୂପ ଅଦ୍ୟାବଧି ଅନାବିଷ୍କୃତ । ଡଃ ସୁକୁମାର ସେନ ଏପରି କେତେକ ଉଦ୍ଧୃତାଂଶ ସଂଗ୍ରହ କରି ପ୍ରକାଶ କରିଛନ୍ତି (୪) ।

ବର୍ତ୍ତମାନ ଲିଖିତ ଆକାରରେ ଥିବା ଯେତେ ଗୀତିକାର ସନ୍ଧାନ ମିଳେ, ତା'ଠାରୁ ବହୁ ପରିମାଣରେ ବେଶି ମୌଖିକ ରୂପେ ପ୍ରଚଳିତ ଥିଲା । ଏହି ଗୀତିକାସମୂହ କଣ୍ଠାନୁକଣ୍ଠ ପ୍ରସାରିତ ହୋଇ ଏବେ ବି ବୌଦ୍ଧଭିକ୍ଷୁମାନଙ୍କ ମଧ୍ୟରେ ନେପାଳ ଓ ତିବ୍ବତରେ ବଞ୍ଚିରହିଛି । ଶ୍ରୀଯୁକ୍ତ ଶାସ୍ତ୍ରୀ ଜନୈକ ନେପାଳୀଭିକ୍ଷୁ ମୁଖରୁ ଏପରି ଏକ ଗୀତିକା ସଂଗ୍ରହ କରିଥିଲେ (୫) । ଏହି ଗୀତିକାଟିର ଲେଖକ ଦାରିକପାଦ । ଡଃ ଆରନୋଲଡ୍ ବାକେ ତାଙ୍କର ଭାରତରେ ଅବସ୍ଥିତି ସମୟରେ ନେପାଳୀ ଭିକ୍ଷୁମାନଙ୍କଠାରୁ ଅନେକଗୁଡ଼ିଏ ଗୀତିକା ସଂଗ୍ରହ କରିପାରିଥିଲେ । ଡଃ ଶଶିଭୂଷଣ ଦାସଗୁପ୍ତ ବିଲାତରେ ତାଙ୍କଠାରୁ ସେ ଗୀତଗୁଡ଼ିକର ରେକର୍ଡ ଶୁଣି ପରେ ନିଜେ ନେପାଳ ଯାଇ ଶତାଧିକ ଗୀତିକା ସଂଗ୍ରହ କରିଥିଲେ । ଏଗୁଡ଼ିକ ନେପାଳରେ 'ଚ୍ଚ ଚ୍ଚ' ଗୀତ ନାମରେ ପରିଚିତ । ଧର୍ମାନୁଷ୍ଠାନମାନଙ୍କରେ ଏସବୁ ବର୍ତ୍ତମାନ ମଧ୍ୟ ନୃତ୍ୟ ସହିତ ଗାନ କରାଯାଏ । ଡଃ ଦାସଗୁପ୍ତଙ୍କ ସଂଗୃହୀତ ଗୀତିକାଗୁଡ଼ିକର ଭାଷା ଖୁବ୍ ପ୍ରାଚୀନ ମନେହୁଏ ନାହିଁ; କିନ୍ତୁ ତତ୍ତ୍ୱଦୃଷ୍ଟିରୁ ଏହି ଗୀତିକାଗୁଡ଼ିକ ଚର୍ଯାଗୀତିକାର ସମତୁଲ୍ୟ (୬) ।

---

୧ । ଦୋହାକୋଷ, ପରିଶିଷ୍ଟ—୧ (ପାଟନା, ୧୯୫୭)

୨ । ପୁରାତତ୍ତ୍ୱ ନିବନ୍ଧାବଳୀ, ପୃ-୧୮୪ (ପ୍ରୟାଗ, ୧୯୩୭)

୩ . P Cordier—Catalogue Du Fonds Tibetain de la Bibliotheque Nationale (in 3 parts. Paris 1909-1915)

୪ . Indian Linguistics, Vol-X (Calcutta, 1948) Old Bengali Texts.

୫ . ବଙ୍ଗୀୟ ସାହିତ୍ୟ ପରିଷଦ ପତ୍ରିକା, ୨୯ ବର୍ଷ (୧୩୨୯) ପୃ-୪୫

୬ । ଚର୍ଯାପଦ— ଅଶ୍ଚିନ୍ଦ୍ର ମଜୁମଦାର-୨ୟ ସଂ. ୧୯୬୧

ସିଦ୍ଧକବିଗଣ ଗୀତିକାଗୁଡ଼ିକୁ ଚର୍ଯା ଆଖ୍ୟା ପ୍ରଦାନ କରିଛନ୍ତି । କୁକ୍କୁରୀପା ତାଙ୍କର ଏକ ଗୀତିକାର ଶେଷ ପଦରେ ଲେଖିଛନ୍ତି, "ଅଇସନ ଚର୍ଯା କୁକ୍କୁରୀପାଏ ଗାଇଉ- କୋଡ଼ିମାଝେଁ ଏକୁ ହିଅହିଁ ସମାଇଉ" (ନ. ୨) । ଚର୍ଯାର ମୂଳ ଅର୍ଥ ଆଚରଣ ବା ଆଗ୍ରହ—"Mystic practice" କାହ୍ନୁପା ନ. ୧୧ ଗୀତିକାର ଚର୍ଯାରେ ପ୍ରବେଶ କରିବା ଅର୍ଥରେ "ପଇଠ ଅଚ୍ଛରେ" ଲେଖିଛନ୍ତି । ମହାଯାନ ସାଧନ ପଦ୍ଧତିରେ ବୋଧିଚର୍ଯା କଥାଟି ମିଳେ । ସାଧକକୁ ବୋଧିଚିତ୍ତ ସମୁତ୍ପାଦ କରିବା ନିମିତ୍ତ ଦାନ, ଶୀଳ, କ୍ଷାନ୍ତି, ବୀର୍ଯ, ଧ୍ୟାନ ଓ ପ୍ରଜ୍ଞାଦି ଛ' ପାରମିତା ସାଧନା କରିବାକୁ ହୁଏ । ତା ପରେ ବୋଧିଚିତ୍ତକୁ ଊର୍ଦ୍ଧ୍ବକୁ ଉଦ୍‌ବୃଦ୍ଧ କରି ଦଶ ବୋଧିସତ୍ତ୍ୱ ଭୂମି ଉତ୍ତୀର୍ଣ୍ଣ ହୋଇଗଲେ ଅନନ୍ତ କରୁଣାର ଉଦୟ ହୁଏ ଏବଂ ତାହା ପୂର୍ଣ୍ଣ ବୋଧିସତ୍ତ୍ୱ ରୂପେ ଉପଲବ୍‌ଧ ହୁଏ । ଏହି ସମସ୍ତ ସାଧନ-ପ୍ରଣାଳୀକୁ ବୋଧିଚର୍ଯା ବା କେବଳ ଚର୍ଯା କୁହାଯାଏ । ଏହି ବୋଧିଚର୍ଯା ଅନୁଷ୍ଠାନ ସହିତ ସମ୍ପର୍କ ଥିବାରୁ ଗୀତଗୁଡ଼ିକ ଚର୍ଯା ଗୀତିକା ବା ଚର୍ଯାପଦ ରୂପେ ଆଖ୍ୟାତ ହୋଇଥିବା ସମ୍ଭବ । ପଣ୍ଡିତ ରାହୁଲ ସାଂକୃତ୍ୟାୟନ ଏହି ମତ ପରିପୋଷଣ କରି ଲେଖିଛନ୍ତି ଯେ— "ଚର୍ଯା କା ଅର୍ଥ ଆଚରଣ," ଅଭ୍ୟାସ ୟା ଅନୁଷ୍ଠାନ ହୈ । × + + ନେପାଲକେ ବୌଦ୍ଧ ଅପନୀ ଗୁପ୍ତ ପୂଜାକୋ ଚର୍ଯା ୟା ଚର୍ଯ୍ୟ କହତେ ହୈଁ, ଜସମେଁ ସ୍ତେ ପଦ ଗସ୍ତେ ଜାତେ ହୈଁ, ଇସିଲିଏ ଇନ୍‌ହେ ଚର୍ଯାପଦ କହା ଗୟା (୧) ।" ଶ୍ରୀଯୁକ୍ତ ଶାସ୍ତ୍ରୀ ଏହି ଗୀତିକାଗୁଡ଼ିକୁ କୀର୍ତ୍ତନ ସମଗ୍ରୀୟ ରଚନା ରୂପେ ଗ୍ରହଣ କରିଛନ୍ତି । ତାଙ୍କ ମତରେ କୀର୍ତ୍ତନ ଗାନଗୁଡ଼ିକୁ କେବଳ ପଦ କୁହାଯାଏ, କିନ୍ତୁ ଏହି ଗୀତଗୁଡ଼ିକୁ ଚର୍ଯାପଦ କୁହାଯାଏ । ସମ୍ଭବତଃ ମଣୀନ୍ଦ୍ରମୋହନ ବସୁ ଏଥିପାଇଁ ତାଙ୍କ ସସ୍କରଣର ନାମ ଦେଇଥିଲେ 'ଚର୍ଯାପଦ' । ମାତ୍ର ଏହି ଚର୍ଯା ରଚନାଗୁଡ଼ିକୁ 'ପଦ' ଆଖ୍ୟାଦେବାକୁ ଅନେକେ କୁଣ୍ଠାପ୍ରକାଶ କରନ୍ତି । ଡଃ ପ୍ରବୋଧ ଚନ୍ଦ୍ର ବାଗଚୀ ଲେଖିଯାଇଛନ୍ତି ଯେ ସାଧାରଣତଃ ଏହି ଗାନଗୁଡ଼ିକୁ ଚର୍ଯାପଦ କୁହାଯାଏ, କିନ୍ତୁ ଏହାକୁ ଚର୍ଯା-ଗୀତ କହିବା ପ୍ରଶସ୍ତ । କାରଣ ଏକ ଚର୍ଯାଗୀତ ମଧ୍ୟରେ ୪।୫ଟି ପଦ ଅଛି । ସେଗୁଡ଼ିକୁ ପଦ ଛଡ଼ା ଅନ୍ୟ ଆଖ୍ୟା ଦେବା ଠିକ୍ ହେବ ନାହିଁ । ସଂସ୍କୃତ ଟୀକାରେ ମଧ୍ୟ ସେଗୁଡ଼ିକୁ ପଦ କୁହାଯାଇଛି । ତେଣୁ ଏହି ପଦସମଷ୍ଟିକୁ ଗୀତ ଆଖ୍ୟା

---

୧ । ଦୋହାକୋଷ, ପୃଃ ୩୫୭

ଦେବା ବଧେୟ (୧) । ଡଃ ସୁକୁମାର ସେନ ମଧ୍ୟ ଏହା ସମର୍ଥନ କରନ୍ତି (୨) । ସେ କେବଳ ବଙ୍ଗଳା ପଦାବଳୀ ସାହିତ୍ୟ ସହିତ ଚର୍ଯାର ଅବିଚ୍ଛିନ୍ନତା ପ୍ରତିପାଦନ କରିବା ଲକ୍ଷ୍ୟରେ ତାଙ୍କ ବହିର ନାମ ରଖିଛନ୍ତି 'ଚର୍ଯାଗୀତି-ପଦାବଳୀ' ।

ଶ୍ରୀ ଅନାଥ ନାଥ ବସୁ ଲୁଇପାଦଙ୍କର ଯେଉଁ ରଚନାଟିର ତିବତୀ ଅନୁବାଦ ପାଇଥିଲେ, ତା'ର ଶୀର୍ଷକ ଥିଲା 'ତତ୍ତ୍ୱ-ସ୍ୱଭାବ ଦୃଷ୍ଟି-ଗୀତିକା' । ସେ ଦୃଷ୍ଟିରୁ ଏହି ରଚନାଗୁଡ଼ିକୁ 'ଗୀତିକା' ରୂପେ ମଧ୍ୟ ଆଖ୍ୟାତ କରାଯାଇପାରେ ।

## ୩

ନେପାଳ ଦରବାର ଲାଇବ୍ରେରୀର ଚର୍ଯାଗୀତିକା-ସଂଗ୍ରହ ପୋଥିଖଣ୍ଡିକ 'ଚର୍ଯାଚର୍ଯ ବିନିଶ୍ଚୟ' ନାମରେ ପରିଚିତ । ଶ୍ରୀଯୁକ୍ତ ଶାସ୍ତ୍ରୀ ନିର୍ବିଚାରରେ ଏହି ନାମଟି ଗ୍ରହଣ କରିଥିଲେ । କିନ୍ତୁ ପଣ୍ଡିତ ବିଧୁଶେଖର ଭଟ୍ଟାଚାର୍ଯ୍ୟ ଏହି ନାମର କୌଣସି ଯଥାର୍ଥତା ନ ଦେଖି ଏହାର ବିକଳ୍ପରେ 'ଆଶ୍ଚର୍ଯ ଚର୍ଯାଚୟ' ନାମ ନିର୍ଦ୍ଦେଶ କରିଛନ୍ତି । ତାଙ୍କର ବିଶ୍ୱାସ ଥିଲା, ସଂସ୍କୃତ ଟୀକାର ପ୍ରାରମ୍ଭିକ ଶ୍ଳୋକରେ "ଶ୍ରୀଲୁଇଚରଣାଦିସିଦ୍ଧ ରଚିତେଽପ୍ୟାଶ୍ଚର୍ଯ—ଚର୍ଯାଚୟେ" ପଙ୍କ୍ତି ମଧ୍ୟରେ ଏହି ନାମଟି ସ୍ପଷ୍ଟ ସୂଚିତ ହୋଇଛି ଏବଂ ଚର୍ଯାଗୀତିକା ସଂଗ୍ରହଟି ପ୍ରକୃତରେ "A Collection of curious Caryas" ବା ଅଦ୍ଭୁତ ଚର୍ଯାସମୂହ (୩) । ଡଃ ଶଶୀଭୂଷଣ ଦାସଗୁପ୍ତ ଏହାଦ୍ୱାରା ପ୍ରଭାବିତ ହୋଇ ତାଙ୍କ 'Budhist Mystic Songs'ରେ ମୂଳ ନାମ ଆଶ୍ଚର୍ଯ୍ୟ ଚର୍ଯାଚୟ ବୋଲି ଗ୍ରହଣ କରିଛନ୍ତି । ମାତ୍ର ମଣୀନ୍ଦ୍ର ମୋହନ ବସୁ ଓ ଡଃ ତାରାପଦ ମୁଖାର୍ଜୀ ଏହି ମତଟିର ତୀବ୍ର ସମାଲୋଚନା କରନ୍ତି । ଶ୍ରୀବସୁ ଦର୍ଶାଇଛନ୍ତି ଯେ ଶ୍ଳୋକରେ 'ଆଶ୍ଚର୍ଯ' ଶବ୍ଦଟି ଚର୍ଯାର ବିଶେଷଣ ରୂପେ ବ୍ୟବହୃତ; ଏହାର ଗ୍ରନ୍ଥର ନାମ ସହିତ ଆଦୌ ସମ୍ବନ୍ଧ ନାହିଁ । (୪) ଏବଂ ଡଃ ମୁଖାର୍ଜୀଙ୍କ ମତରେ ସେହି ଶ୍ଳୋକାନ୍ତର୍ଗତ 'ନିର୍ମଳା ଗିର ଟୀକା'କୁ ଗ୍ରନ୍ଥର ନାମ

୧ । ବିଶ୍ୱଭାରତୀ ପତ୍ରିକା, ୪ର୍ଥ ବର୍ଷ, ୨ୟ ସଂଖ୍ୟା—ପୃ. ୧୧୫

୨ । Indian Linguistics, Vol. X. P. 43 ("Caryagiti not Caryapada which indicated only a couplet.")

୩ । Indian Historical Quarterly, Vol. VI, No. 1.

୪ । ଚର୍ଯ୍ୟାପଦ, ଭୂମିକା—ପୃ. ୯ କଲିକତା ବିଶ୍ୱବିଦ୍ୟାଳୟ, ୧୯୪୩

ଷିବରେ ଗ୍ରହଣ କଲେ ତାହା ଆଶ୍ଚର୍ଯ୍ୟ ଚର୍ଯ୍ୟାଚଯ୍ୟ ଅପେକ୍ଷା ଅଧିକ ସାର୍ଥକ ହେବ (୧) । ଏ ହୁହେଁ ଏବଂ ଶାନ୍ତିଭିକ୍ଷୁ ଶାସ୍ତ୍ରୀ "ଚର୍ଯ୍ୟାଚର୍ଯ୍ୟ ବିନିଶ୍ଚୟ" ନାମର ପକ୍ଷପାତୀ (୨) । ସେମାନେ ଏହି ନାମରେ ଯଥେଷ୍ଟ ଯଥାର୍ଥତା ଉପଲବ୍ଧି କରିଛନ୍ତି । କାରଣ ଏହାର ଅର୍ଥ—ଚର୍ଯ୍ୟା କି ଆଚରଣୀୟ, ଅଚର୍ଯ୍ୟା କି ଅନାଚରଣୀୟ ବା ଧର୍ମବିଷୟକ ନାନା ବିଧି-ନିଷେଧ ଯେଉଁଥିରେ ବିନିଶ୍ଚିତ ବା ସ୍ଥିରୀକୃତ ହୋଇଛି ।

ଡଃ ବାଗଚୀ ଉପର୍ଯ୍ୟୁକ୍ତ ଦୁଇଟି ନାମ ମଧ୍ୟରେ ସମନ୍ୱୟ ରଖି ଆଉ ଏକ ତୃତୀୟ ନାମର ତର୍କଣା କରିଛନ୍ତି । ତାଙ୍କ ମତରେ ମୂଳ ନାମଟି ପ୍ରକୃତରେ 'ଚର୍ଯ୍ୟାଶ୍ଚର୍ଯ୍ୟ ବିନିଶ୍ଚୟ' ଲିପିକାର ପ୍ରମାଦ ବଶତଃ ଏହି ନାମଟି 'ଚର୍ଯ୍ୟାଶ୍ଚର୍ଯ୍ୟ ବିନିଶ୍ଚୟ' ରୂପ ଗ୍ରହଣ କରିଛି । ଏହି ସଂଶୋଧିତ ନାମଟି ସଂସ୍କୃତ ଟୀକାରେ ଉଲ୍ଲିଖିତ ନାମ ସହିତ ସାମଞ୍ଜସ୍ୟ ରକ୍ଷା କରେ । ଛନ୍ଦ ଅନୁରୋଧରେ 'ଚର୍ଯ୍ୟାଶ୍ଚର୍ଯ୍ୟ' ଟୀକାର ଶ୍ଳୋକରେ 'ଆଶ୍ଚର୍ଯ୍ୟଚର୍ଯ୍ୟା' ହୋଇଛି (୩) । ଡଃ ସେନ ଏହି ନାମଟି ସ୍ୱୀକାର କରିଛନ୍ତି । ତାଙ୍କ ମତରେ ଏହା ମୂଳ ଗୀତି-ସଂଗ୍ରହର ନାମ ନୁହେଁ, ସଂସ୍କୃତ ଟୀକାର ନାମ । ପୋଥିଟିର ଲିପିକର ବୃତ୍ତିର ନାମ ଅନୁସାରେ ପୋଥିଟି ନାମିତ କରିଛନ୍ତି ଏବଂ ଭୁଲ କରି ଏହାକୁ 'ଚର୍ଯ୍ୟାଚର୍ଯ୍ୟ ବିନିଶ୍ଚୟ' ରୂପେ ଉଲ୍ଲେଖ କରିଛନ୍ତି (୪) । କିନ୍ତୁ ଚର୍ଯ୍ୟାଶ୍ଚର୍ଯ୍ୟ ବିନିଶ୍ଚୟ ଯେ ବୃତ୍ତିର ନାମ, ଏହା ସନ୍ଦେହପୂର୍ଣ୍ଣ । ତେଙ୍ଗୁର୍‌ରେ ପ୍ରାପ୍ତ ତିବ୍ବତୀ ଅନୁବାଦରେ ଏହାର ନାମ 'ଚର୍ଯ୍ୟା ଗୀତିକୋଷ ବୃତ୍ତି' । ସେଠାରେ ଚର୍ଯ୍ୟାଶ୍ଚର୍ଯ୍ୟ ବିନିଶ୍ଚୟର ଉଲ୍ଲେଖ ଆଦୌ ମିଳେ ନାହିଁ । ସମ୍ଭବତଃ ନେପାଳୀ ପୋଥିର ଲିପିକର ଦୁଇଟି ସୂତ୍ରରୁ ଚର୍ଯ୍ୟା ଓ ବୃତ୍ତି ସଂଗ୍ରହ କରି ପୋଥିର ନାମକରଣ ନିଜେ କରିଥିଲେ (୫) । ଏହି ନାମଟି ପୋଥିରେ ଦେଖାଯାଏ ନାହିଁ—ହୁଏ ତ ପ୍ରଚ୍ଛଦପଟରେ ଲିଖିତ ହୋଇଛି ।

---

୧ । The Old Bengali Language and Text, P. 4 (Calcutta Unversity 1963.)

୨ । Cavyagiti kosha, Preface—XI (Visva Bharati, 1956)

୩ । ବ. ଭ. ପ—୪ର୍ଥ ବର୍ଷ, ୨ୟ ସଂଖ୍ୟା ଏବଂ Calcutta Oriental Journal, Vol—I, 1934.

୪ । ଚର୍ଯ୍ୟାଗୀତି-ପଦାବଳୀ, ଭୂମିକା ପୃ-୧ (ବର୍ଦ୍ଧମାନ ସାହିତ୍ୟ ସଭା, ୧୯୫୬)

୫ । ପ୍ରାଚୀନ ବଙ୍ଗଳା ସାହିତ୍ୟର ଇତିହାସ ଲେଖକ ଡଃ ତମୋନାଶ ଚନ୍ଦ୍ର ଦାସଗୁପ୍ତଙ୍କ ମତରେ ଚର୍ଯ୍ୟାଚଯ୍ୟ ବିନିଶ୍ଚୟର ସଂଗ୍ରହକର୍ତ୍ତା କାହ୍ନୁଭଟ୍ଟ; ସମୟ ୧୦ମ ଶତାବ୍ଦୀ । ପୃ-୩୯, ୪୬)

ନେପାଳ ଦରବାର ଲାଇବ୍ରେରୀ ପୋଥିର ନାମ ଯାହା ହେଉ ନା କାହିଁକି, ମୂଳ ଚର୍ଯ୍ୟା-ଗୀତିକା ସଂଗ୍ରହର ନାମ ଥିଲା 'ଚର୍ଯ୍ୟା-ଗୀତିକୋଷ।' କାରଣ ତେଙ୍ଗୁରର ତିବତୀ ଅନୁବାଦରେ ସଟୀକ ଏହି ଗୀତ-ସଂଗ୍ରହଟି 'ଚର୍ଯ୍ୟାଗୀତିକୋଷବୃତ୍ତି' ଭାବରେ ଉଲ୍ଲିଖିତ ହୋଇଛି। ଏଥିରେ 'ବୃତ୍ତି' ଶବ୍ଦ ଦ୍ୱାରା ଟୀକାକୁ ନିର୍ଦ୍ଦେଶ କରୁଥିବାରୁ ମୂଳ ଗ୍ରନ୍ଥର ନାମ ଚର୍ଯ୍ୟାଗୀତିକୋଷ ହୋଇଥିବା ସମ୍ଭାବ୍ୟ (୧)।

୪

ଶ୍ରୀଯୁକ୍ତ ଶାସ୍ତ୍ରୀଙ୍କ ଚର୍ଯ୍ୟାଚର୍ଯ୍ୟ ବିନିଶ୍ଚୟରେ ପ୍ରଦତ୍ତ ମୂଳଗୀତର ପାଠ ସହିତ ଟୀକାର ଉଦ୍ଧୃତ ଗୀତାଂଶର ପାଠ ତୁଳନା କଲେ ବହୁ ବ୍ୟତିକ୍ରମ ପରିଦୃଷ୍ଟ ହୁଏ (୨)। ଏହାର କାରଣ ସ୍ୱରୂପ ଅନୁମାନ କରାଯାଏ ଯେ ପୋଥିରେ ଲିପିକର ଦୁଇଟି ଭିନ୍ନ ଭିନ୍ନ ପୋଥିରୁ ମୂଳ ଓ ଟୀକା ନକଲ କରିଥିଲେ କିମ୍ବା କର୍ଣ୍ଣାନୁକର୍ଣ୍ଣ ପ୍ରସାରିତ ହୋଇ ଗୀତଗୁଡ଼ିକ କ୍ରମେ ପରିବର୍ତ୍ତିତ ହେଉଥିବାରୁ ପୋଥିର ଲେଖନକାଳରେ ସେଗୁଡ଼ିକ ଯେଉଁ ରୂପରେ ଥିଲା, ଲିପିକର ସେହି ଅନୁସାରେ ମୂଳଗୀତର ସଂଶୋଧନ କରିଛନ୍ତି, ମାତ୍ର ଟୀକାରେ ଅନୁରୂପ ସଂଶୋଧନ ହୋଇନାହିଁ। ଚର୍ଯ୍ୟାଗୀତିକୋଷର ଯେ ଏକାଧିକ ନକଲ ଥିଲା, ତାହା ସୁନିଶ୍ଚିତ। ଲିପିକର ଦୋଷରୁ କିମ୍ବା ଅନ୍ୟ କାରଣରୁ ପ୍ରତ୍ୟେକ ପୋଥିରେ ପାଠାନ୍ତର ସୃଷ୍ଟି ହୋଇଥିଲା। ନେପାଳ ଦରବାର ଲାଇବ୍ରେରୀ ପୋଥିର ଅନୁଲିପିକାର ନେପାଳୀ ହୋଇଥିବାରୁ ସ୍ୱଭାବତଃ 'ସ', କୁ 'ଷ', 'ଡ' କୁ 'ଡ଼', 'ତ' କୁ 'ଟ' ରୂପରେ ଲେଖିଯାଇଛନ୍ତି। ଏଣୁ ସେ ପୋଥିର ବିଶୁଦ୍ଧତା ସମ୍ବନ୍ଧରେ ସନ୍ଦେହଜାତ ହେବା ସ୍ୱାଭାବିକ। ଶ୍ରୀଯୁକ୍ତ ଶାସ୍ତ୍ରୀଙ୍କ ପ୍ରକାଶିତ ଗୀତିକାଗୁଡ଼ିକର ଏକମାତ୍ର ଭିତ୍ତି ସେହି ପୋଥି ଖଣ୍ଡିକ। ତହିଁରେ ପୁଣି ସେ ପ୍ରଥମେ ପାଠନିର୍ଣ୍ଣୟ କଲାବେଳେ କେତେକ ସ୍ଥଳରେ ଅକ୍ଷର ବିଭ୍ରାଟ କରିବାରେ ଏବଂ ପଂକ୍ତି ମଧ୍ୟସ୍ଥ ପଦଗୁଡ଼ିକ ବ୍ୟବଚ୍ଛେଦ କରିବାରେ ତ୍ରୁଟି ରହିଗଲା। ଦୃଷ୍ଟାନ୍ତ ସ୍ୱରୂପ ନଂ ୧୦ରେ (ଗୁଙ୍ଗେଡ଼ା) ସ୍ଥଳେ (ଚଙ୍ଗତା) ଓ ନଂ ୧୩ରେ (କଅ ଦେହ କରୁଣା ଶୁଣ ମେହେରୀ) ସ୍ଥଳେ (କଅଦେହ କରୁଣା ଶୁଣମେ ହେରି) ସେ ପାଠ କରିଛନ୍ତି। ଏହା ଫଳରେ ଅନେକ ସ୍ଥଳରେ ଅର୍ଥ ଆଦୌ ପରିସ୍ଫୁଟ ହୋଇପାରେ ନାହିଁ।

ଶାସ୍ତ୍ରୀଙ୍କ ସଂସ୍କରଣରେ ଉପରୋକ୍ତ ଦୋଷ-ଦୁର୍ବଳତା ଲକ୍ଷ୍ୟକରି, ବିଭିନ୍ନ ସୂତ୍ରରୁ ପାଠ ସଂଗ୍ରହ କରି ଏବଂ ସେ ସବୁର ତୁଳନାତ୍ମକ ଅଧ୍ୟୟନ ଦ୍ୱାରା ଶୁଦ୍ଧପାଠ ନିର୍ଣ୍ଣୟ କରିବାର

---

୧। Materials for etc. P. VI (Cal. Univ. 1938)

(୨) ଚ. ଗୀ-ଚ, ଭୂମିକା—ପୃ. ୬

ଆବଶ୍ୟକତା ଏକାନ୍ତ ଅନୁଭୂତ ହେଲା । ଏଥିପାଇଁ ପ୍ରମୁଖ ବିଷୟ ହେଲା 'ତିବତୀ' ଅନୁବାଦ ଅନୁସନ୍ଧାନ । ପ୍ରଥମେ ଡଃ ସୁନୀତି କୁମାର ଚଟ୍ଟାର୍ଜୀ, Prof. Zean Przyluski ଓ ଡଃ ଶହୀଦୁଲ୍ଲାହ୍ ବହୁ ଉଦ୍ୟମ କରି ମଧ୍ୟ ସଫଳକାମ ହୋଇ ପାରିଲେ ନାହିଁ (୧) । ସେତେବେଳେ କେବଳ ଶ୍ରୀ ଅନାଥନାଥ ବସୁ ତେଙ୍ଗୁର୍‌ର Rgyud Hgrelର Tshi ବିଭାଗରୁ ଲୁଇପାଙ୍କର ୨୯ ନମ୍ବର ଗୀତିକାଟିର ଅନୁବାଦ ଆବିଷ୍କାର କରିଥିଲେ (୨) । କିନ୍ତୁ ଶେଷରେ ଡ. ବାଗ୍‌ଚୀ ତେଙ୍ଗୁର୍‌ରେ Narthang Edition, Rgyd-grel XLVII.35ରେ ୧୩ ନମ୍ବର ଗୀତିକାଟି ବ୍ୟତୀତ ସମସ୍ତ ଚର୍ଯ୍ୟା-ଗୀତିକୋଷ ଏବଂ ବୃତ୍ତିର ଅନୁବାଦ ଆବିଷ୍କାର କଲେ । ସେ ଏହା ଖ୍ରୀ. ୧୯୩୮ରେ କଲିକତା ବିଶ୍ୱବିଦ୍ୟାଳୟର Journal of the Department of Lettersରେ ପ୍ରକାଶ କଲେ (୩) । ଏହି ସ୍ଥଳରେ ମହାପଣ୍ଡିତ ରାହୁଲ ସାଂକୃତ୍ୟାୟନଙ୍କର ରୋମାଞ୍ଚକର ତିବତ ଅଭିଯାନ ଓ ପୋଥି ଅନୁସନ୍ଧାନ ସ୍ମରଣୀୟ । ସେ ମଧ୍ୟ ଶକ୍ୟବିହାରର ପୋଥିଶାଳାରୁ କେତୋଟି ଗୀତିକାର ଅନୁବାଦ ସନ୍ଧାନ କରିଥିଲେ ।

ଏହାପରେ ସିଦ୍ଧାଚାର୍ଯ୍ୟମାନଙ୍କର ଦୋହାକୋଷ ଓ ଆଉ କେତେକ ଗୀତିକା ଆବିଷ୍କୃତ ହେଲା । ତାନ୍ତ୍ରିକ ବୌଦ୍ଧ ସହଜିୟାମାନଙ୍କର ବହୁ ଗ୍ରନ୍ଥ ପ୍ରକାଶିତ ହେଲା । ପରବର୍ତ୍ତୀ କାଳରେ ଏସବୁ ଉପାଦାନ ସହିତ ଚର୍ଯ୍ୟାଗୀତିକାର ସଂସ୍କୃତ ବୃତ୍ତି ଓ ତିବତୀ ଅନୁବାଦକୁ ଭିତ୍ତି କରି ଏବଂ ପ୍ରାସଙ୍ଗିକ ଅର୍ଥସଙ୍ଗତି ପ୍ରତି ଦୃଷ୍ଟି ଦେଇ ଚର୍ଯ୍ୟାଗୀତିକାର ଶୁଦ୍ଧପାଠ କର୍ଣ୍ଣୟ କରିବା ଦିଗରେ ପ୍ରୟାସ କରାଗଲା । ଏହି ଦିଗରେ ଡ ସୁନୀତିକୁମାର ଚଟ୍ଟର୍ଜୀ, ଡ. ପ୍ରବୋଧଚନ୍ଦ୍ର ବାଗ୍‌ଚୀ, ଡ. ମହମ୍ମଦ ଶହୀଦୁଲ୍ଲାହ୍, ଶ୍ରୀ ମଣୀନ୍ଦ୍ରମୋହନ ବସୁ ଓ ଡ. ସୁକୁମାର ସେନଙ୍କ ଉଦ୍ୟମ ଅବିସ୍ମରଣୀୟ । ଏମାନେ ଶାସ୍ତ୍ରୀଙ୍କ ସଂସ୍କରଣର ବହୁ ତ୍ରୁଟି ନିରାକରଣ କରିବାକୁ ସମର୍ଥ ହୋଇଥିଲେ ମଧ୍ୟ ଏଥିରେ ପୂର୍ଣ୍ଣତା ଆସି ନାହିଁ । ତଥାପି ବହୁସ୍ଥଳରେ ଅନେକ ବ୍ୟାସକୂଟ ରହିଯାଇଛି । ଡ. ତାରାପଦ ମୁଖୋପାଧ୍ୟାୟ ଯଥାର୍ଥରେ କହିଛନ୍ତି ଯେ :—

'It must, however, be admitted that these readings are tentative and open for further improvement in

---

(୧) Origin and Development of Bengali language. Vol-1, P. 119. (Cal. Univ. 1926) ଏବଂ Materials for etc. V—VI.

(୨) I. H. Q. Vol-III, No-4. P. 677.

(୩) Vol. XXX, 1938.

the light of new discovery and interpretation. Because of the paucity of facts both external and internal, no editor can possibly be certain with regard to the texts they have sought to establish". (୧) ।

୫

ଚର୍ଯାଗୀତକୋଷରେ ସଂକଳିତ ପଚାଶଟି ଗୀତକାର ରଚୟିତା ଭାବରେ ତେଇଶ ଜଣ ସିଦ୍ଧ କବିଙ୍କ ନାମ ମିଳେ । ନିମ୍ନରେ ସେମାନଙ୍କର ନାମ ଓ ରଚନା ବିବରଣୀ ପ୍ରଦତ୍ତ ହେଲ ।

| | | | |
|---|---|---|---|
| (୧) ଆର୍ଯଦେବ | ୩୧ | (୧୨) ତାଡ଼କପା | ୩୭ |
| (୨) କଙ୍କଣପାଦ | ୪୪ | (୧୩) ଦାରିକପା | ୩୪ |
| (୩) କମ୍ବଳାମ୍ବର | ୮ | (୧୪) ଧାମପା | ୪୭ |
| (୪) କାହ୍ନୁପାଦ | ୭, ୯, ୧୦, ୧୧, ୧୨, ୧୩, ୧୮, ୧୯, ୨୪, ୩୬, ୪୦, ୪୨, ୪୫ | (୧୫) ବିରୁବାପାଦ | ୩ |
| | | (୧୬) ବୀଣାପା | ୧୭ |
| | | (୧୭) ଭାଦେପା | ୩୫ |
| | | (୧୮) ଭୁସୁକୁପା | ୬, ୨୧, ୨୩, ୨୭, ୩୦, ୪୧, ୪୩, ୪୯ |
| (୫) କୁକ୍କୁରୀପା | ୨, ୨୦, ୪୮ | | |
| (୬) ଗୁଣ୍ଡୁରୀପା | ୪ | | |
| (୭) ଚାଟିଲପା | ୫ | (୧୯) ମହୀଧରପା | ୧୬ |
| (୮) ଜୟନନ୍ଦୀ | ୪୬ | (୨୦) ଲୁଇପା | ୧, ୨୯ |
| (୯) ଡୋମ୍ବୀପା | ୧୪ | (୨୧) ଶବରପା | ୨୮, ୫୦ |
| (୧୦) ଢେଣ୍ଢଣପା | ୩୩ | (୨୨) ଶାନ୍ତିପା | ୧୫, ୨୬ |
| (୧୧) ତନ୍ତୀପା | ୨୫ | (୨୩) ସରହପା | ୨୨, ୩୨, ୩୮, ୩୯ |

ଡ: ସୁକୁମାର ସେନଙ୍କ ମତରେ ଏମାନଙ୍କ ମଧ୍ୟରୁ ଶବର, ବୀଣାପା, କୁକ୍କୁରୀ, ଢେଣ୍ଢଣ, ଚାଟିଲ ଓ ବିରୂପ ପ୍ରକୃତରେ ଚର୍ଯାଗୀତକାର ରଚୟିତା ନୁହନ୍ତି । ତାଙ୍କର ଆପତ୍ତି

(୧) O. B. L. T , P-20

କରିବାର କାରଣ— ଗୀତିକା ମଧ୍ୟରେ 'ଶବର' ଓ 'ବୀଣା' ଶବ୍ଦ ଦୁଇଟି ଯେଉଁ ଭାବରେ ଅଛି, ତହିଁରୁ ତାହା ଭଣିତା ବୋଲି ମନେହୁଏ ନାହିଁ । କୁକ୍କୁରୀ ଓ ତେଣ୍ଟଣ ନାମ ଦୁଇଟିରେ ଗୌରବସୂଚକ 'ପା'ଥିବାରୁ ଏହି ନାମାଙ୍କିତ ଚର୍ଯ୍ୟାଗୁଡ଼ିକ ତାଙ୍କର ଭକ୍ତମାନଙ୍କର ରଚନାରୂପେ ଗ୍ରହଣୀୟ । ଗୁଣ୍ଡରୀପା ନିଜକୁ 'ଅନୁତ୍ତର ସାମୀ' କହିବା ଅସ୍ୱାଭାବିକ; ତେଣୁ ଏହା ମଧ୍ୟ ତାଙ୍କର ଶିଷ୍ୟବିଶେଷ, ସମ୍ଭବତଃ ଧାମପାଦଙ୍କର ରଚନା । ବିରୂପାଙ୍କ ନାମାଙ୍କିତ ଚର୍ଯ୍ୟାରେ 'ଭଣଥି' ଗୌରବ ସୂଚକ କ୍ରିୟାପଦ ଥିବାରୁ ଏହା ମଧ୍ୟ ତାଙ୍କ ଶିଷ୍ୟଙ୍କ ରଚନା । ସେ ପୁଣି କହନ୍ତି ଯେ ତାଡ଼କ କଙ୍କଣାଦି ନାମ ଛଦ୍ମନାମ ବା ଉପାଧି ଏବଂ ଡୋମ୍ବୀ ଓ ତାନ୍ତ୍ରୀ ଜାତିବାଚକ ନାମ । ଏମାନେ ଚର୍ଯ୍ୟାଗୀତିକାର ରଚୟିତା ହେଲେ ମଧ୍ୟ ପ୍ରକୃତ ନାମ ପ୍ରକାଶ କରିନାହାନ୍ତି (୧) ।

ଡ. ତାରାପଦ ମୁଖାର୍ଜି ଏହି ଆଲୋଚନାର ସୂତ୍ର ଧରି ସିଦ୍ଧାନ୍ତ କରନ୍ତି ଯେ ପ୍ରକୃତରେ ୧୪ଥିରୁ ଏଗାର ଜଣ କବି ଓ ତେଇଶଟି ଗୀତିକା ସମ୍ପର୍କରେ କ୍ଲିଷ୍ଟିତତା ଅଛି । (ଲୁଇ-୨, ତାଡ଼କ-୧, କୁକ୍କୁରୀ-୨, ଗୁଡ଼ରୀ-୧, ଭୁସୁକୁ-୫, କାହ୍ନୁ-୫, ସରହ-୫, ଭାଦେ-୧, କଙ୍କଣ-୧, ଜୟନନ୍ଦୀ-୧, ଧାମ-୧ ) । କାରଣ ତାଙ୍କ ମତରେ ଶାସ୍ତ୍ରୀଙ୍କ ସଂସ୍କରଣରେ ଥିବା ୪୬ଟି ଗୀତିକା ମଧ୍ୟରୁ ଅଠରଟି ଗୀତରେ ଯେପରି ଭାବେ ନାମର ଉଲ୍ଲେଖ ହୋଇଛି, ତାହା ଭଣିତା ଭାବେ ଗ୍ରହଣୀୟ ହେବା ଅନୁଚିତ । ଅବଶିଷ୍ଟ ୨୮ଟି ଗୀତିକାରୁ ୭ଟିରେ ଭଣିତା ମାନ୍ୟାର୍ଥକ ଭାବେ ଲେଖାଯାଇଥିବାରୁ ସେଗୁଡ଼ିକ ନିଶ୍ଚିତ ରୂପେ ଶିଷ୍ୟମାନଙ୍କ ରଚନା (୨) ।

କିନ୍ତୁ ଚର୍ଯ୍ୟାର ବୃତ୍ତିକାର ପ୍ରତ୍ୟେକ ଗୀତିକାର ରଚୟିତାଙ୍କ ନାମ ସ୍ପଷ୍ଟ ଉଲ୍ଲେଖ କରିଥିବାରୁ ଏବଂ ଏମାନେ ଚଉରାଶି ସିଦ୍ଧ ପରଂପରା ଅନ୍ତର୍ଗତ ହୋଇଥିବାରୁ ଏମାନଙ୍କର କବିତ୍ୱ ସମ୍ପର୍କରେ ଆପତ୍ତି କରିବାରେ ବିଶେଷ ଯଥାର୍ଥତା ପରିଦୃଷ୍ଟ ହୁଏନାହିଁ ।

ଚର୍ଯ୍ୟାର ସିଦ୍ଧକବିମାନଙ୍କର ପରିଚୟ ବର୍ତ୍ତମାନ ସୁଦ୍ଧା ସଠିକ ରୂପେ ନିରୂପଣ କରାଯାଇ ପାରିନାହିଁ । ପଣ୍ଡିତ ହରପ୍ରସାଦ ଶାସ୍ତ୍ରୀଙ୍କ ପରେ ଏ ଦିଗରେ ଉଲ୍ଲେଖଯୋଗ୍ୟ ସିଦ୍ଧାନ୍ତମାନ ପ୍ରଦାନ କରି ଯାଇଛନ୍ତି ଡ: ସୁନୀତିକୁମାର ଚାଟାର୍ଜି, ବିନୟତୋଷ ଭଟ୍ଟାଚାର୍ଯ୍ୟ ମହମ୍ମଦ ଶହୀଦୁଲ୍ଲାହ, ସୁଶୀଲ କୁମାର ଦେ, ପ୍ରବୋଧ ଚନ୍ଦ୍ର ବାଗ୍‌ଚୀ, ରାହୁଲ ସାଙ୍କୃତ୍ୟାୟନ, ସୁକୁମାର ସେନ ଏବଂ ଧର୍ମବୀର ଭାରତୀ । ଏମାନଙ୍କ ଆଲୋଚନାର ଭିତ୍ତିସ୍ୱରୂପ ଗୃହୀତ ହୋଇଛି—ଲାମା ତାରନାଥଙ୍କ ବିବରଣୀ ( ରଚନାକାଳ ୧୬୦୭ ) କର୍ଡିଅର ସାହେବଙ୍କ

(୧) ଚ. ଗୀ. ପ., ଭୂମିକା—ପୃ..୫, I L., Vol. X, P-39.
(୨) O. B. L. T., P-10 .

ତେଙ୍ଗୁର ଗ୍ରନ୍ଥ ତାଲିକା, ଚତୁରଶୀତି ସିଦ୍ଧପ୍ରବୃତ୍ତି । ସୁମ୍ପା ମଖନ-ପୋଙ୍କର ପାଗ୍‌ସମ ଜୋନ୍‌ଜାଙ୍ଗ୍ (ରଚନାକାଳ ୧୭୪୮), Athur Gruenwedelଙ୍କ Geschichte d Mahasidhas (1914,) ସ-କ୍ୟ-ବକ୍-ବ୍ରମ-ଙ (ତିବ୍ବତ ସକ୍ୟ ବିହାରର ପାଞ୍ଚ ପ୍ରଧାନ ଗୁରୁଙ୍କ ରଚନା ବଳୀ, ରଚନାକାଳ ୧୦୯୧—୧୨୭୯ ), Buston Rin Po Che ( ରଚନା କାଳ ୧୩୨୨ ), କେତେକ ତାନ୍ତ୍ରିକ ଗ୍ରନ୍ଥବିଶେଷ ଏବଂ ନାଥ ସିଦ୍ଧମାନଙ୍କ ସମ୍ପର୍କରେ ଲିଖିତ ସାହିତ୍ୟ ଓ ବିଭିନ୍ନ କିମ୍ବଦନ୍ତୀ । ଏମାନଙ୍କ ଆଲୋଚନାରେ ସିଦ୍ଧାଚାର୍ଯ୍ୟମାନଙ୍କର ସମସ୍ତ ସ୍ଥୂଳତଃ ଖ୍ରୀ:୭ମ ଶତାବ୍ଦୀରୁ ୧୨ଶ ଶତାବ୍ଦୀ ମଧ୍ୟବର୍ତ୍ତୀକାଳ-ପରିଧି ମଧ୍ୟରେ ନିରୂପିତ କରାଯାଇଛି । କିନ୍ତୁ ବର୍ପ୍ରୋକ୍ତୋକ୍ତ ଓ ଆଦିସିଦ୍ଧ କିଏ, ଲୁଇ ନା ସରହ, ତାହାର ଉପଯୁକ୍ତ ମୀମାଂସା ସମ୍ଭବ ହୋଇପାରି ନାହିଁ । ସିଦ୍ଧାଚାର୍ଯ୍ୟମାନଙ୍କର ସମସ୍ତ, ଜନ୍ମସ୍ଥାନ ଓ ଜୀବନ ଇତିହାସ ନିରୂପଣ କରିବା ଦିଗରେ ପ୍ରଧାନ ଅନ୍ତରାୟ ହୋଇଛି— ଏକ ନାମରେ ଏକାଧିକ ସିଦ୍ଧ ଭିନ୍ନ ଭିନ୍ନ ସମୟରେ ପ୍ରତିଷ୍ଠିତ ହୋଇଥିଲେ ଏବଂ ଭିନ୍ନ ଭିନ୍ନ ଗ୍ରନ୍ଥରେ ପ୍ରଦତ୍ତ ନାମତାଲିକା, ଗୁରୁପରମ୍ପରା ଓ ଜୀବନଚରିତରେ ବହୁ ବିରୋଧ ଓ ବ୍ୟତିକ୍ରମ ପରିଲକ୍ଷିତ ହୁଏ । ପରବର୍ତ୍ତୀକାଳୀନ ବିଭିନ୍ନ ସଂପ୍ରଦାୟର ସାଧକଗଣ ନିଜ ନିଜ ଧର୍ମ-ପରମ୍ପରାରେ ଏହି ସିଦ୍ଧ କବିମାନଙ୍କୁ ଏପରି ଗ୍ରଥିତ କରି ଦେଇଛନ୍ତି ଯେ ସେମାନଙ୍କର ମୌଳିକ ରୂପ ନିର୍ଣ୍ଣୟ କରିବା ଅତ୍ୟନ୍ତ ସମସ୍ୟାପୂର୍ଣ୍ଣ ହୋଇପଡ଼ିଛି । ପୁଣି ଏ କ୍ଷେତ୍ରରେ ଯଥାର୍ଥ ସତ୍ୟ ପ୍ରକାଶର ପରିପନ୍ଥୀ ହୋଇଛି ଆଲୋଚକମାନଙ୍କର ସଙ୍କୀର୍ଣ୍ଣ ପ୍ରାଦେଶିକ ମନୋଭାବ । ଫଳରେ ମିଳୁଥିବା ଉପାଦାନଗୁଡ଼ିକର କେବଳ ମନୋମୁଖୀ ଉପଯୋଗୀ କରି ସିଦ୍ଧାନ୍ତ ଗ୍ରହଣ କରାଯାଇଥିବାରୁ ଆଲୋଚକମାନଙ୍କର ଶେଷ ସିଦ୍ଧାନ୍ତରେ କୌଣସି ସାମଞ୍ଜସ୍ୟ ଦେଖାଯାଏ ନାହିଁ । ହଜାର ବର୍ଷ ତଳେ ଆଧୁନିକ ଭୌଗୋଳିକ ସୀମାରେଖାର ଯେ ଚିହ୍ନ ନ ଥିଲି ଏବଂ ଏକ ବୃହତ୍ତର ଭାବ-ଭୂମିରେ ବଙ୍ଗାଳୀ, ବିହାରୀ, ଆସାମୀ ଓ ଓଡ଼ିଆମାନେ ଏକ ଅନ୍ତରଙ୍ଗ ଜୀବନ-ଯାପନ କରୁଥିଲେ, ତାହା ଆଜିର ଅଭିମାନଗ୍ରସ୍ତ ଗବେଷକ-ମନ ମାନିନେବାକୁ ଭୁଲିଯାଉଛି ।

## ୭

ଚର୍ଯ୍ୟାଗୀତିକାର ତେଇଶ ଜଣ କବି ଯେ ସମସାମୟିକ ନୁହନ୍ତି, ଏହା ସୁନିଶ୍ଚିତ । ଏମାନଙ୍କ ମଧ୍ୟରେ ଗୁରୁଶିଷ୍ୟକ୍ରମରେ ବହୁ ପୁରୁଷର ବ୍ୟବଧାନ ଖୁବ୍ ସ୍ପଷ୍ଟ । ଦୃଷ୍ଟାନ୍ତ ସ୍ୱରୂପ ନିମ୍ନଲିଖିତ କେତେକ ଗୁରୁପରମ୍ପରା ଦ୍ରଷ୍ଟବ୍ୟ :—

(୧) ତେଙ୍ଗୁର୍ :—ପଦ୍ମବଜ> ଅନଙ୍ଗବଜ୍ର> ଇନ୍ଦ୍ରଭୂତ> ଭଗବତୀ> ଲକ୍ଷ୍ମୀ> ଲୀଳାବଜ୍ର> ଦାରିକପା> ସହଜଯୋଗିନୀ> ଡମ୍ବୀ> ଡୋମ୍ବୀ> ହେରୁକ ।

(୨) ତାରନାଥ ବିବରଣୀ:—ରାହୁଲଭଦ୍ର> ନାଗାର୍ଜୁନ> ଶବରୀ> ଲୁଇ>ଡୋମ୍ବୀ> ତିଲ୍ଲୀ> ନାରୋପା> ଶିଶୁଡୋମ୍ବୀ>କୁଶାଳୀଭଦ୍ର ।

(୩) ପାଗ୍ ସମ୍ ଜୋନ୍ କାଙ୍ :—ସରହ>ନାଗାର୍ଜୁନ>ଶବରୀ>ଲୁଇ>ବଜ୍ରଘଣ୍ଟ> କଚ୍ଛପା>ଜାଲନ୍ଧରୀ>କାହ୍ନୁପା>ଗୁହ୍ୟପା>ବିଜୟପା>ତିଲ୍ଲୀପା> ନାରୋପା ।

(୪) Deb-ther-Snon-Po :— ବଜ୍ରଧର>ବଜ୍ରପାଣି>ସରହ>ଶବର>ଲୁଇ >ଦାରିକ>ଡେଙ୍ଗୀ>ବଜ୍ରଘଣ୍ଟ>କୁର୍ମପାଦ>ଜାଲନ୍ଧର>କୃଷ୍ଣାଚାର୍ଯ୍ୟ >ବିଜୟପା>ତିଲ୍ଲୀପା>ନାରୋପା>ଶାନ୍ତିପା>ଅତୀଶ ।

(୫) ସ-ସ୍କ୍ୟ-ବ୍କାମ-ବ୍ରୁମ୍ପ :—ମହାବ୍ରାହ୍ମଣ> ସରହ> ନାଗାର୍ଜୁନ ଶବର> ଲୁଇ> ଦାରିକ>ବଜ୍ରଘଣ୍ଟ>କୁର୍ମ ପାଦ> ଜାଲନ୍ଧର>କଣ୍ହ ଚର୍ଯାପା> ଗୁହ୍ୟପା> ବିଜୟପା> ତଲୋପା> ନାରୋପା ।

(୬) ଚକ୍ରସମ୍ଭାର ତନ୍ତ୍ର :—ବଜ୍ରଧର> ବଜ୍ରପାଣି> ସରହ>ନାଗାର୍ଜୁନ> ଶବରୀ> ଲୁଇ> ବଜ୍ରଘଣ୍ଟ> କଚ୍ଛପା> ଜାଲନ୍ଧର> କୃଷ୍ଣ> ଗୁହ୍ୟ> ବିଜୟପା> ତଲେପା> ନାରୋପା···

---

(୧) (୨)—Budhism in Orissa Dr. N K. Sahu, Ch. X. P. 158 (Utkal University, 1958)

(୩) Dpag-bsam-Ijon-bzan-Sumpa Mkhan. Po. Ed· Sarat Chandra Das (Calcutta, 1908)

(୪) ରଚନା କାଳ ଖ୍ରୀ: ୧୪୭୬-୭୮, "Blue Annals" ନାମରେ Dr. George Boric ଦ୍ୱାରା ଅନୂଦିତ ଓ Asiatic Socity ଦ୍ୱାରା ପ୍ରକାଶିତ ।

(୫) ପାଣ୍ଡୁଲିପି ଚୀନ ସୀମାନ୍ତବର୍ତ୍ତୀ ଡେରଙ୍ଗୀ ମଠରେ ସଂରକ୍ଷିତ । ଏଥିରେ ମହାନ୍ତରାଜ ଫଂଗ-ସପ (ଖ୍ରୀ: ୨୩୩-୭୯)ଙ୍କର କୃତୀରେ ଗୁରୁ-ପରମ୍ପରା ପ୍ରଦତ୍ତ ହୋଇଛି । (ଦ୍ରଷ୍ଟବ୍ୟ—ପୁରାତତ୍ତ୍ୱ ନିବନ୍ଧାବଳୀ, ପୃ· ୧୧୯)

(୬) Shri Chakra Sambhar Tantra-Kazi Dawa-Samdup ( Calcutta, 1919 ) P·XXXV. ଏହି ଗୁରୁପଙ୍କ୍ତି ପାଗ-ସମ-

(୭) ଜ୍ଞାନେଶ୍ୱର :—ଆଦିନାଥ> ମତ୍ସ୍ୟେନ୍ଦ୍ର> ଗୋରଖ> ଗହିନୀ> ନିବୃତ୍ତିନାଥ> ଜ୍ଞାନଦେବ ।

ଏହି ସମସ୍ତ ଗୁରୁ-ପରମ୍ପରାକୁ ଭିତ୍ତିକରି ଆଲୋଚକମାନେ ଉପରି ଭିନ୍ନ ଭିନ୍ନ ଆନୁଷଙ୍ଗିକ ତଥ୍ୟ ବଳରେ ସିଦ୍ଧାଚାର୍ଯ୍ୟମାନଙ୍କର କାଳ ନିରୂପଣ କରିଛନ୍ତି, ତା'ର କେତୋଟି ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା ।

(କ) ଗୁରୁ ପଦ୍ମସମ୍ଭବ ଖ୍ରୀ: ୭୪୭ରେ ତିବ୍ବତ ଯାଇ ସେଠାରେ ତାଙ୍କର ଶାଳକ ଶାନ୍ତରକ୍ଷିତଙ୍କ ସହଯୋଗରେ ଖ୍ରୀ: ୭୪୯ରେ ବ୍-ସମ୍-ୟେ ମଠ ସ୍ଥାପନ କରିଥିଲେ । ଯଦି ଧରାଯାଏ, ପଦ୍ମ-ସମ୍ଭବ ୩୦ ବର୍ଷ ବୟସରେ ତିବ୍ବତ ଯାତ୍ରା କରିଥିଲେ ଏବଂ ତାଙ୍କର ପିତା ଇନ୍ଦ୍ର-ଭୂତିଙ୍କର ବୟସ ତାଙ୍କ ଜନ୍ମବେଳକୁ ୩୦ ବର୍ଷ ହୋଇଥାଏ, ତେବେ ଇନ୍ଦ୍ରଭୂତିଙ୍କର ସମୟ ଖ୍ରୀ: ୬୮୭—୭୧୭ ମଧ୍ୟରେ ନିର୍ଦ୍ଧାରଣ କରାଯାଇପାରେ । ଯଦି ଗୁରୁଶିଷ୍ୟ ପରମ୍ପରାରେ ୧୨ ବର୍ଷ ବ୍ୟବଧାନ ରଖି ବିଚାର କରାଯାଏ, ତେବେ ତାଙ୍କ ଗୁରୁ ଅନଙ୍ଗବଜ୍ରଙ୍କ ସମୟ ହେବ ଖ୍ରୀ: ୭୦୫ । ଏପରି ହିସାବରେ ତେଙ୍ଗୁର ଓ ଚକ୍ରସମ୍ଭାର ତନ୍ତ୍ରର ଗୁରୁପରମ୍ପରାର ଅନୁକ୍ରମରେ ଆଦିସିଦ୍ଧ ସରହଙ୍କର ସମୟ ହେବ ଖ୍ରୀ: ୬୩୩, ଶବରୀ—୬୫୭, ଲୁଇ—୬୬୯, ଜାଳନ୍ଧରୀ—୭୦୫ ଓ କାହ୍ନୁପା—୭୧୭ ।

(ଖ) ହରିଭଦ୍ରଙ୍କ ଶିଷ୍ୟ ବୁଦ୍ଧଜ୍ଞାନ ସରହପାଙ୍କ ସହପାଠୀ ଥିଲେ । ହରିଭଦ୍ରଙ୍କ ଗୁରୁ ହେଉଛନ୍ତି ଶାନ୍ତରକ୍ଷିତ, ଯାହାଙ୍କର ଜୀବନକାଳ ଖ୍ରୀ: ୭୪୦—୮୪୦ । ପୁଣି ହରିଭଦ୍ର ହେଉଛନ୍ତି ରାଜା ଧର୍ମପାଳଙ୍କ (ଖ୍ରୀ: ୭୬୯—୮୦୯) ସମସାମୟିକ । ଏସବୁ ତଥ୍ୟ ଅନୁସାରେ ଆଦିସିଦ୍ଧ ସରହପା ଅଷ୍ଟମ ଶତାବ୍ଦୀର ଅନ୍ତର୍ଭାଗରେ ଆବିର୍ଭୂତ ହୋଇ-ଥିଲେ ବୋଲି ସ୍ଥିର କରାଯାଇପାରେ । ଅନ୍ୟ ପକ୍ଷରେ ଅନ୍ତିମ ସିଦ୍ଧ କାଳପଦ ମୈତ୍ରୀପାଙ୍କ ଶିଷ୍ୟ ଥିଲେ । ଏହି ମୈତ୍ରୀପା ଦୀପଙ୍କର ଶ୍ରୀଜ୍ଞାନଙ୍କ ବିଦ୍ୟାଗୁରୁ ଥିଲେ । ଦୀପଙ୍କର ଏକାଦଶ ଶତାବ୍ଦୀର ଅଦ୍ୟଭାଗରେ ବର୍ତ୍ତମାନ ଥିଲେ । ସୁତରାଂ ଅନ୍ତିମ ସିଦ୍ଧ କାଳପଦ ମଧ୍ୟ ମୋଟାମୋଟି ସେହି ସମୟର ବ୍ୟକ୍ତି । ଅତଏବ ଚୌରାଅଶୀ ସିଦ୍ଧଙ୍କ ଯୁଗ ଖ୍ରୀ: ୭୫୦, ୧୧୭୫ ଗ୍ରହଣ କରିବା ଉଚିତ ।

---

ଜୋନ-ଜାଙ୍ଗ୍ରୁ ଗୃହୀତ । "ଏଥିରେ ନାଗେଶଙ୍କ ପରେ ଆଉ ପାଞ୍ଚ ଜଣ ଗୁରୁଙ୍କର ଉଲ୍ଲେଖ ଅଛି । ସର୍ବଶେଷ ଗୁରୁଙ୍କର ଜନ୍ମକାଳ ଖ୍ରୀ: ୧୨୩୩ ।

(୭) ମହାରାଷ୍ଟ୍ରୀ ସନ୍ଥ ଜ୍ଞାନଦେବଙ୍କ ଜ୍ଞାନେଶ୍ୱରୀର ରଚନାକାଳ ଖ୍ରୀ: ୧୨୯୦ ।

(କ) Dr. B. Bhattacharya, J. B. O. R. S. Vol-14, No. 2;
ବ. ସା. ପ., ପତ୍ରିକା, ୩୫ ବର୍ଷ, ୩ୟ ସଂଖ୍ୟା ।

(ଖ) ରାହୁଲ ସାଂକୃତ୍ୟାୟନ—ପୁରାତତ୍ତ୍ୱ ନିବନ୍ଧାବଳୀ ପୃ-୧୫୫ ।

(ଗ) 'କୌଳଜ୍ଞାନ ନିର୍ଣ୍ଣୟତନ୍ତ୍ର' ପ୍ରଣେତା ମତ୍ସ୍ୟେନ୍ଦ୍ରନାଥ ଓ ଲୁଇପା ଅଭିନ୍ନ । ଗୋପୀଚନ୍ଦ୍ର ଉପାଖ୍ୟାନ ଅନୁସାରେ ଜାଳନ୍ଧରି ଓ ଲୁଇପା ଦୁହେଁ ସମସାମୟିକ । ଚକ୍ରସମ୍ବରତନ୍ତ୍ର ଗୁରୁପରମ୍ପରାରେ କାଳନ୍ଧରି > କୃଷ୍ଣ > ଗୁହ୍ୟ > ବିଜୟ > ତିଲୋପା > ନାରୋପା । ଏହି ନାରୋପାଙ୍କର ଶିଷ୍ୟ ଦୀପଙ୍କର, ଯେ କି ଖ୍ରୀ: ୧୦୩୫ରେ ତିବ୍ବତ ଯାତ୍ରା କରି-ଥିଲେ । ତେଣୁ ନାରୋପାଙ୍କ ସମୟ ଏକାଦଶ ଶତାବ୍ଦୀର ଆଦ୍ୟଭାଗ । ଜାଳନ୍ଧର ନାରୋପାଙ୍କଠାରୁ ୫୦ ବର୍ଷ ପ୍ରାଚୀନ ଧରାଗଲେ ତାଙ୍କର ସମୟ ହେବ ଦଶମ ଶତାବ୍ଦୀର ଶେଷ ଭାଗ । ଅତଏବ ମତ୍ସ୍ୟେନ୍ଦ୍ର ଓରଫ ଲୁଇଙ୍କର ସମୟ ମଧ୍ୟ ଦଶମ ଶତାବ୍ଦୀର ଶେଷ ଭାଗ ।

(ଘ) ଜାଳନ୍ଧରିପା ଇନ୍ଦ୍ରଭୂତିଙ୍କ ଶିଷ୍ୟ । ଇନ୍ଦ୍ରଭୂତିଙ୍କ ପାଳିତ ପୁତ୍ର ପଦ୍ମସମ୍ଭବ । ଏହାଙ୍କ ଜନ୍ମକାଳ ଖ୍ରୀ: ୭୨୯-୨୨ । ତେଣୁ ଜାଳନ୍ଧରିଙ୍କ ସମୟ ସପ୍ତମ ଶତକର ଦ୍ୱିତୀୟାର୍ଦ୍ଧ । ଏହି ଦୃଷ୍ଟିରୁ ଚକ୍ରସମ୍ବାର ତନ୍ତ୍ରର ଗୁରୁପରମ୍ପରା ଅନ୍ତର୍ଗତ ଅନ୍ୟାନଙ୍କର କାଳ ନିର୍ଣ୍ଣୟ କରାଯାଇ ପାରିବ ।

(ଙ) Blue Annels ଅନୁସାରେ ଅତୀଶଙ୍କର ଜନ୍ମକାଳ ଖ୍ରୀ: ୯୮୨ । ସେ ଖ୍ରୀ: ୧୦୪୦ରେ ୫୭ ବର୍ଷ ବୟସରେ ଭାରତ ପରିତ୍ୟାଗ କରି ତିବ୍ବତ ଯାତ୍ରା କରିଥିଲେ । ଏହି ଗ୍ରନ୍ଥର ଗୁରୁପରମ୍ପରା ଅନୁସାରେ ସରହ ଏହାଙ୍କର ଊର୍ଦ୍ଧ୍ୱତନ ଦ୍ୱାଦଶ ଗୁରୁ । ଗୁରୁ ଶିଷ୍ୟ ମଧ୍ୟରେ ୨୦ ବର୍ଷ ବ୍ୟବଧାନ ରଖିଲେ ସରହଙ୍କର ସମୟ ଅଷ୍ଟମ ଶତାବ୍ଦୀର ଶେଷାର୍ଦ୍ଧରେ ଓ ଶାନ୍ତିପାଙ୍କର ସମୟ ଏକାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ନିରୂପିତ ହେବ ।

(ଚ) ଓଡ଼ିଶା ମ୍ୟୁଜିୟମ୍‌ର ସୁରକ୍ଷିତ ପଦ୍ମପାଣି ଅବଲୋକିତେଶ୍ୱର ମୂର୍ତ୍ତିର ପାଦପୀଠିକାରେ ଗୋଟିଏ ଅଭିଲେଖ ଅଛି । ଏଥିରୁ ଜଣାଯାଏ ଯେ ମହାମଣ୍ଡଳାଚାର୍ଯ୍ୟ ପରମଗୁରୁ

---

(ଗ) Dr. P. C. Bagchi—Kaula Jnan Nirnaya, Culcutta Sanskrit Series, 1934)

(ଘ) ଡ଼. ମହମ୍ମଦ ଶହୀଦୁଲ୍ଲାହ୍—ଢାକା ବିଶ୍ୱବିଦ୍ୟାଳୟ ସାହିତ୍ୟ ପତ୍ରିକା ୧ମ ବର୍ଷ, ୨ୟ ସଂଖ୍ୟା ।

(ଙ) ସୁଖମୟ ମୁଖୋପାଧ୍ୟାୟ—ପ୍ରାଚୀନ ବାଂଲା ସାହିତ୍ୟେର କାଳକ୍ରମ (କଲିକାତା, ୧୯୫୮)

(ଚ) ଡ. ନବୀନକୁମାର ସାହୁ—Budhism in Orissa-P. 159, (Utkal University, 1958.)

ରାହୁଲସୁତ ଏହି ମୂର୍ତ୍ତିଟି ଶୁଭଙ୍କରଦେବଙ୍କ ରାଜତ୍ୱକାଳରେ ପ୍ରତିଷ୍ଠା କରିଥିଲେ । ଏହି ରାହୁଲସୁତ ହେଉଛନ୍ତି ସିଦ୍ଧ ସରହପା । ଶୁଭଙ୍କରଦେବଙ୍କ ସମୟ ଖ୍ରୀ: ୭୯୦—୮୩୯ ମଧ୍ୟରେ ନିରୂପିତ ହେଉଥିବାରୁ ସହରପାଙ୍କ ସମୟ ୮ମ ଶତକର ଶେଷଭାଗ ବା ୯ମ ଶତକର ଆଦ୍ୟଭାଗ ବୋଲି ଧରାଯାଇପାରେ ।

ଅଧିକ ଦୃଷ୍ଟାନ୍ତ ଅନାବଶ୍ୟକ । ଏହି କେତୋଟି ଆଲୋଚନାରେ ସିଦ୍ଧ କବିମାନଙ୍କର ଆବିର୍ଭାବ କାଳ ପ୍ରତି ଦୃଷ୍ଟିଦେଲେ ଜଣାଯାଏ ଯେ ଏମାନଙ୍କ ମଧ୍ୟରେ ବୟୋଜ୍ୟେଷ୍ଠ ସହରପାଦ ଏବଂ ତାଙ୍କର ସମୟ ପ୍ରାୟ ସପ୍ତମ-ଅଷ୍ଟମ ଶତାବ୍ଦୀ ମଧ୍ୟରେ ନିରୂପଣ କରାଯାଇଛି । ତେଣୁ ଚର୍ଯ୍ୟା-ଗୀତିକା ରଚନାର ଊର୍ଦ୍ଧ୍ୱତମ ସମ୍ଭାବ୍ୟ ସୀମା ରୂପେ ଏହା ହିଁ ଗ୍ରହଣୀୟ, ଯଦିଓ ଡ. ସୁନୀତକୁମାର ଚଟ୍ଟୋପାଧ୍ୟାୟଙ୍କ ଏହି ସୀମାକୁ କଥିତ ସଙ୍କୁଚିତ କରି ଖ୍ରୀ: ୯୫୦ରେ ନିରୂପିତ କରିବାକୁ ଯୁକ୍ତିସଙ୍ଗତ ମନେ କରନ୍ତି (୧) ।

ଅନ୍ୟ ପକ୍ଷରେ ଚର୍ଯ୍ୟାଗୀତିକା ରଚନାର ନିମ୍ନତମ ସମ୍ଭାବ୍ୟ ସୀମା କେତେଗୁଡ଼ିଏ ପ୍ରାଚୀନ ପୋଥିର ଲିପିକାଳ ଅବଲମ୍ବନରେ ନିର୍ଦ୍ଧାରଣ କରାଯାଇପାରେ—

୧ । ଏସିଆଟିକ୍ ସୋସାଇଟିର ଭୂସୁକୁ ବିରଚିତ 'ଚତୁରାଭରଣ' ପୋଥିର ଲିପିକାଳ ନେପାଳ ସମ୍ବତ୍ ୪୧୫=ଖ୍ରୀ: ୧୨୯୫ ।

୨ । କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର କାହ୍ନପା କୃତ 'ହେବଜ୍ରତନ୍ତ୍ର ଯୋଗ ରତ୍ନମାଳା' ପୋଥିର ଲିପିକାଳ ଗୋବିନ୍ଦପାଳଙ୍କ ରାଜ୍ୟାଙ୍କ ୩୯=ଖ୍ରୀ: ୧୧୯୯-୧୨୦୦ ।

୩ । କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର ଏକ 'ସାଧନା-ସଂଗ୍ରହ' ପୋଥିର ଲିପିକାଳ ଖ୍ରୀ: ୧୧୬୫ । ଏଥିରେ ଅନ୍ୟତମ ସିଦ୍ଧକବି କଙ୍କଣ ପାଦଙ୍କର ଏକ ସାଧନା ଅନ୍ତର୍ଭୁକ୍ତ ।

୪ । ନେପାଳ ଦରବାରର ସରହଙ୍କ ଦୋହାକୋଷ ପୋଥିର ଲିପିକାଳ ନେପାଳ ସମ୍ବତ୍ ୨୨୧=ଖ୍ରୀ: ୧୧୦୧ ।

ଏହି ପୋଥିଗୁଡ଼ିକ ତ ରଚୟିତାମାନଙ୍କର ସ୍ୱହସ୍ତ ଲିଖିତ ପୋଥି ନୁହେଁ; ସୁତରାଂ ପୋଥିର ପ୍ରଦତ୍ତ ଲିପିକାଳର ଅନ୍ତତଃ ଶହେ ବର୍ଷ ପୂର୍ବରୁ ମୂଳଲେଖା ପ୍ରକାଶିତ ହୋଇଥିବ, ଏପରି ଅନୁମାନ ଅପରିହାର୍ଯ୍ୟ । ବିଶେଷତଃ ସରହଙ୍କ ଦୋହାକୋଷ ପୋଥିରୁ ପ୍ରମାଣ ମିଳେ ଯେ ଦୋହାକୋଷର ସଙ୍କଳୟିତା ଦିବାକର ଚନ୍ଦ୍ର ଦୋହାଗୁଡ଼ିକ ବିନଷ୍ଟ ପ୍ରନଷ୍ଟ ହୋଇଯାଉଥିବା ଲକ୍ଷ୍ୟ କରି ସେଗୁଡ଼ିକ ସଙ୍କଳନ କରିଥିଲେ (୨) । ଏଥିରୁ ସ୍ୱଭାବତଃ ପ୍ରତିପନ୍ନ ହୁଏ ଯେ ଏହି ଦୋହାଗୁଡ଼ିକ ଯଥେଷ୍ଟ ପ୍ରାଚୀନ ରଚନା ଏବଂ ଦୋହାକାର ସରହପାଦ ଖ୍ରୀ: ୧୧୦୧ର ଅନେକ ପୂର୍ବବର୍ତ୍ତୀ । ଅତଏବ ଚର୍ଯ୍ୟାଗୀତିକା ରଚନାର ନିମ୍ନତମ ସମ୍ଭାବ୍ୟ ସୀମା ୧୧ଶ ଶତାବ୍ଦୀ ଧରିବା ସମୀଚୀନ ହେବ ।

---

(୧) O. D. B. L. Vol. I, P. 123

(୨) O. D. L. Vol I-XXVIL. 1935. ଚ.ଗୀ ପ.ଭୂମିକା-ପୃ.୧୫ ।

କିନ୍ତୁ ଚର୍ଯାଗୀତିକାରେ ଭାଷାର ସମତା ଲକ୍ଷ୍ୟକଲେ ଏଗୁଡ଼ିକ ୩୦୦।୪୦୦ ବର୍ଷର ବ୍ୟବଧାନ ମଧ୍ୟରେ ରଚିତ ହୋଇଥିବା ଭଳି ଆଦୌ ମନେହୁଏ ନାହିଁ । ଡ. ସୁକୁମାର ସେନ ଯଥାର୍ଥରେ କହିଛନ୍ତି – "ଚର୍ଯାଗୀତିଗୁଡ଼ିକର ଭାଷାସ୍ତ୍ୱ ଓ ରଚନା ଭିତରେ କାଳଗତ ବୈଷମ୍ୟ ଅଲକ୍ଷ୍ୟ" ଏବଂ "ଭାଷା, ଧରସ୍ଥା ବିଗ୍ଭର କରିଲେ ମୋଟାମୋଟି ବଲାଯାସ୍ତ୍ୱ ଏକାଦଶ-ଦ୍ୱାଦଶ ଶତାବ୍ଦୀ ।" (୧) ଡ. ସୁନୀତିକୁମାର ଚଟ୍ଟୋପାଧ୍ୟାୟ ମଧ୍ୟ ତାଙ୍କ ପୂର୍ବରୁ ଅନୁରୂପ ମନ୍ତବ୍ୟ କରିଯାଇଛନ୍ତି – "Judging from the language one would be inclined to place them at least 150 years before the Srikrishna Kirtana which belongs to the last quarter of the 14th Century" (୨) । ମାତ୍ର ଏ ସ୍ଥଳରେ ସ୍ମରଣ ରଖିବା ଉଚିତ ଯେ, ଏହି ଗୀତିକାଗୁଡ଼ିକ ମୌଖିକ ଭାବରେ ପ୍ରଚଳିତ ଥିବାରୁ କାଳକ୍ରମେ ଏହାର ରୂପରେ ନାନା ପରିବର୍ତ୍ତନ ସଙ୍ଘଟିତ ହେଉଥିଲା । ବିଭିନ୍ନ ଅଞ୍ଚଳରେ ବିଭିନ୍ନ ସମୟରେ ଲିପିବଦ୍ଧ ହୋଇଥିବା ଗୀତିକା ମଧ୍ୟରେ ସୁଦ୍ଧା ଏହି ପରିବର୍ତ୍ତନର ପ୍ରମାଣ ପରିଦୃଷ୍ଟ ହୁଏ । ଦୃଷ୍ଟାନ୍ତ ସ୍ୱରୂପ ନିମ୍ନଲିଖିତ କେତୋଟି ତଥ୍ୟ ବିଗ୍ଭର୍ଯ୍ୟ । (କ) ସଂସ୍କୃତ ବୃତ୍ତିରେ ଉଦ୍ଧୃତ ଗୀତାଂଶ ଓ ଶାସ୍ତ୍ରୀଙ୍କ ପୋଥିର ଗୀତିକା ମଧ୍ୟରେ ବ୍ୟତିକ୍ରମ ଦେଖାଯାଏ । (ଖ) ଅନାଥନାଥ ବସୁଙ୍କ ଦ୍ୱାରା ଆବିଷ୍କୃତ ୨୧ ନମ୍ବର ଗୀତିକାର ତିବ୍ବତୀ ଅନୁବାଦ ଓ ଶାସ୍ତ୍ରୀଙ୍କ ପୋଥିର ସେହି ଗୀତିକା ମଧ୍ୟରେ ରୂପଗତ ବୈଷମ୍ୟ ଦେଖାଯାଏ । (ଗ) କାହ୍ନୁପାଙ୍କର ୩୬ ନମ୍ବର ଗୀତିକାର ଯେଉଁ ରୂପଟି ପ୍ରବୋଧ ସାଙ୍କୃତ୍ୟାୟନ ତିବ୍ବତରୁ ଲାଭ କରିଥିଲେ, ତାହା ଅଧିକ ସାତ ପଦଯୁକ୍ତ । (ଘ) ଡ. ବାଗଚୀଙ୍କ ଆବିଷ୍କୃତ ତିବ୍ବତୀ ଅନୁବାଦ ଓ ଶାସ୍ତ୍ରୀଙ୍କ ପୋଥି ମଧ୍ୟରେ ବହୁ ସ୍ଥଳରେ ବ୍ୟତିକ୍ରମ ଲକ୍ଷିତ ହୁଏ । (ଙ) ଡ. ଶଶିଭୂଷଣ ଦାସଗୁପ୍ତ ସଦ୍ୟତି ନେପାଳରୁ ସଂଗ୍ରହ କରିଥିବା ଗୀତିକାଗୁଡ଼ିକରେ ଆଧୁନିକତାର ଛାପ ସୁସ୍ପଷ୍ଟ । ଅତଏବ ମନେହୁଏ, ଏକ ନିର୍ଦ୍ଦିଷ୍ଟ ଅଞ୍ଚଳରେ କୌଣସି ନିର୍ଦ୍ଦିଷ୍ଟ ସମୟରେ ପ୍ରଚଳିତ ଥିବା ମୌଖିକ ରୂପର ଆଦର୍ଶରେ ସଙ୍କଳୟିତା ତଥା ଅନୁଲିପିକାରମାନେ ମୂଳଗୀତିକାରେ ଯଥାସମ୍ଭବ ପରିବର୍ତ୍ତନ କରିଛନ୍ତି । ସୁତରାଂ ଚର୍ଯାଗୀତିକୋଷର ସେ ଅଜ୍ଞାତ ସଙ୍କଳୟିତା ସଙ୍କଳନ ସମୟରେ ତାଙ୍କ ଅଞ୍ଚଳରେ ପ୍ରଚଳିତ ଥିବା ରୂପ ଲିପିବଦ୍ଧ କରିଯାଇଛନ୍ତି କହିଲେ ଅସଙ୍ଗତ ହେବ ନାହିଁ । ତେଣୁ ଚର୍ଯାଗୀତିକାର ଭାଷାରେ କାଳଗତ ବୈଷମ୍ୟ ନ ଥିଲେ ମଧ୍ୟ ଏବଂ ଏହି ଭାଷା ୧୧ଶ-୧୨ଶ ଶତାବ୍ଦୀର ଭାଷାପରି ପ୍ରତୀତ ହେଉଥିଲେ ମଧ୍ୟ, ବିଭିନ୍ନ ଗୀତିକା

---

(୧) ଚ.ଗୀ ପ.ଭୂମିକା-ପୃ.୬ ।
(୨) O.D.B.L. VOL-I-118.

ରଚନା ମଧ୍ୟରେ କାଳଗତ ବ୍ୟବଧାନ ଅବଶ୍ୟ ସ୍ୱୀକାର୍ଯ୍ୟ । ଡ଼· ସୁନୀତିକୁମାର ଚଟ୍ଟୋପାଧ୍ୟାୟଙ୍କ, ଯେ କି ପ୍ରଥମେ ଏହି ପ୍ରଶ୍ନ ଉତ୍ତୋଳନ କରିଥିଲେ, ସେ ମଧ୍ୟ ଶେଷରେ ସିଦ୍ଧାନ୍ତ କରିଛନ୍ତି ଯେ, ଚର୍ଯ୍ୟାଗୀତିକାଗୁଡ଼ିକ ଏକ ସମୟର ଲେଖା ନୁହେଁ –

"The period 950-1256 A. C would thus seem to be a reasonable date to give to these poems" (୧)

ଚର୍ଯ୍ୟାଗୀତିକୋଷର ଏହି ଗୀତିକାସମୂହ କେବେ ଓ କାହାଦ୍ୱାରା ସଙ୍କଳିତ ହୋଇଥିଲା, ତା'ର ଆଭାସ କେଉଁଠି ମିଳେ ନାହିଁ । ତିବ୍ବତୀ ଅନୁବାଦରୁ ଜଣାଯାଏ– ମୁନିଦତ୍ତ ସଂସ୍କୃତ ବୃତ୍ତିଟି ରଚନା କରିଥିଲେ । କିନ୍ତୁ ତାଙ୍କର ସମୟ ମଧ୍ୟ ଅଜ୍ଞାତ । ତିବ୍ବତୀ ଅନୁବାଦର ସମୟ ସମ୍ପର୍କରେ ତା'ର ଆବିଷ୍କର୍ତ୍ତା ଡ. ବାଗ୍‌ଚୀ କହନ୍ତି –"The date of the translation can not be definitely ascertained. It belongs probably to the 13th Century which was the period of greast activities, so far as the translation of the Tantrik texts is concerned," (୨) ପଣ୍ଡିତ ରାହୁଲ ସାଂକୃତ୍ୟାୟନ ଯେଉଁସବୁ ତିବ୍ବତୀ ପୋଥିପତ୍ରରୁ ସିଦ୍ଧାଚାର୍ଯ୍ୟମାନଙ୍କର ରଚନା ସଂଗ୍ରହ କରିଥିଲେ, ତାହା ମଧ୍ୟ ଖ୍ରୀ ୧୧୪୧ ୧୩୬୪ ମଧ୍ୟବର୍ତ୍ତିକାଳୀନ । ଯଦି ଚର୍ଯ୍ୟାଗୀତିକୋଷର ତିବ୍ବତୀ ଅନୁବାଦର ସମୟ ୧୩ଶ ଶତାବ୍ଦୀ ଧରାଯାଏ, ସଂସ୍କୃତ ବୃତ୍ତି ତା'ର କିଛିକାଳ ପୂର୍ବରୁ, ଅନ୍ତତଃ ୫୦ ବର୍ଷ ପୂର୍ବରୁ ଲେଖାଯାଇଥିବା ଅନୁମେୟ । ଏହା ଖୁବ୍ ସ୍ୱାଭାବିକ ଯେ, ଚର୍ଯ୍ୟାଗୀତିକୋଷ ସଙ୍କଳିତ ହେବା ପରେ ତାହା କାଳକ୍ରମେ ଯଥେଷ୍ଟ ଗୁରୁତ୍ୱ ଓ ଲୋକପ୍ରିୟତା ଅର୍ଜନ କରିଥିବାରୁ ତ'ଉପରେ ଏକ ସଂସ୍କୃତ ଟୀକା ଲେଖିବାକୁ ପଣ୍ଡିତ ମୁନିଦତ୍ତ ଉଦ୍‌ବୁଦ୍ଧ ହୋଇଥିବେ । ଅନ୍ୟଥା ଅପଭ୍ରଂଶ ଭାଷାରେ ଲିଖିତ, ସାମାଜିକ ନିମ୍ନବର୍ଗର ଜୀବନଚର୍ଯ୍ୟାସମ୍ବଳିତ, ସାହିତ୍ୟିକ କଳାହୀନ କେତେକ ଦୁର୍ବୋଧ ରହସ୍ୟାତ୍ମକ ଗୀତିକା ଉପରେ ଅନ୍ତତଃ ସଂସ୍କୃତ ଭାଷାରେ ଗୋଟିଏ ଟୀକା ରଚିତ ହୋଇ ନ ଥାନ୍ତା । ସୁତରାଂ ସଂସ୍କୃତବୃତ୍ତି ଲେଖା ହେବାର ଅନ୍ୟୂନ ୧୦୦—୧୫୦ ବର୍ଷ ପୂର୍ବରୁ ଅର୍ଥାତ୍ ଏକାଦଶ ଶତକର ଶେଷପ୍ରାନ୍ତରେ ଚର୍ଯ୍ୟାଗୀତିକୋଷ ସଙ୍କଳିତ ହୋଇଥିବା ସମ୍ଭବ । ପ୍ରସଙ୍ଗତଃ ଏଠାରେ ସ୍ମରଣୀୟ ଯେ ଦୀପଙ୍କର ଚନ୍ଦ୍ର ଖ୍ରୀ. ୧୧୦୧ ପୂର୍ବା "କୋହି ବଣିଷ୍ଠ ପଣିଷ୍ଠପଇ ଯୋହିଅ ଅକ୍କୁଥ ବୁଦ୍ଧି । ସରହପାଅ-କଅ

(୧) O D.B.L. vol-I—ପୃ. ୧୨୩ ।

(୨) Materials for efc, Introduction-P. VI

ଦୋହତତ୍ତ୍ୱ ସୋ ସଙ୍ଗହତ୍ତ୍ୱ ଏକ୍ତଥ ।।" (୧) ଭାବ-ପ୍ରଣୋଦିତ ହୋଇ ସରହଙ୍କ ଦୋହା-କୋଷ ସଙ୍କଳିତ କରିଥିଲେ । ଯଦି ମନେକରାଯାଏ—ଏହି ପ୍ରବୃତ୍ତି ଏକ ନିର୍ଦ୍ଦିଷ୍ଟ ସମୟରେ ନେପାଳୀ ପଣ୍ଡିତ ସମାଜରେ ଦେଖାଯାଇଥିଲା, ତେବେ ଚର୍ଯ୍ୟାଗୀତିକୋଷ ମଧ୍ୟ ସେହି ସମୟରେ ଅର୍ଥାତ୍ ଖ୍ରୀ. ୧୧୦୦ର କିଛି ପୂର୍ବରୁ ବା ପରେ ସଙ୍କଳିତ ହୋଇଥିବ ।

ନେପାଳ ଦରବାର ଲାଇବ୍ରେରୀର ଚର୍ଯାଚର୍ଯ ବିନିଶ୍ଚୟ ପୋଥିରେ ଲିପିକାଳ ସୂଚିତ ହୋଇନାହିଁ । ତିବତୀ ଅନୁବାଦ ସହିତ ଏହାର କିଛି ସମ୍ପର୍କ ନାହିଁ । କାରଣ ସ୍ୱରୂପ ଦୁଇଟି ପ୍ରମାଣ ଉଲ୍ଲେଖ କଲେ ହେବ ଯେ, ତିବତୀ ଅନୁବାଦରେ ୧୩ ନମ୍ବର ଗୀତିକା ନାହିଁ କିମ୍ବା ତାହା "ଚର୍ଯ୍ୟାଚର୍ଯ ବିନିଶ୍ଚୟ" ନୁହେଁ । ତେଣୁ ତାକୁ ଭିତ୍ତି କରି ଏହାର କାଳ ନିରୂପଣ କରାଯାଇ ପାରିବ ନାହିଁ । ତେବେ ଏହା ହସ୍ତଲିଖିତ ବୃତ୍ତି ଲେଖାହେବାର ବେଶ୍ କିଛି କାଳ ପରେ ଲିଖିତ । କାରଣ, ଦୁଇଟିରେ ବହୁ ପରିମାଣରେ ପାଠ ବ୍ୟତିକ୍ରମ ପରିଲକ୍ଷିତ ହୁଏ । ପୋଥିଟିର ଆବିଷ୍କର୍ତ୍ତା ଶ୍ରୀଯୁକ୍ତ ଶାସ୍ତ୍ରୀଙ୍କ ମତରେ ଏହାର ସମୟ ୧୨ଶ ଶତାବ୍ଦୀ, (୨) କିନ୍ତୁ ଡ. ରାଖାଲଦାସ ବାନାର୍ଜି ଶ୍ରୀକୃଷ୍ଣକୀର୍ତ୍ତନ ପୋଥି ଆଲୋଚନା ପ୍ରସଙ୍ଗରେ ଏହାର ଲିପିକାଳ ୧୪ଶ ଶତାବ୍ଦୀର ଶେଷାର୍ଦ୍ଧରେ ନିରୂପଣ କରିଛନ୍ତି (୩) ଏବଂ ଡ ସୁନୀତିକୁମାର ଚାଟାର୍ଜିଙ୍କ ମତରେ ଏ ପୋଥିଟି "Post-14th Century M.S". ସମ୍ପ୍ରତି ଡ. ତାରାପଦ ମୁଖାର୍ଜି ଲିପି ତାତ୍ତ୍ୱିକ ଆଲୋଚନା ଭିତ୍ତିରେ ଅନୁମାନ କରନ୍ତି "ଚର୍ଯ୍ୟାର ପୁଥିର ଲିପିକାଳ ଦ୍ୱାଦଶ ଶତକର ଶେଷାର୍ଦ୍ଧ ।" (୪) ସେ କାଳଚକ୍ର ତନ୍ତ୍ର (୧୪୪୬), ବୋଧିଚର୍ଯାବତାର (୧୪୩୫), ଧର୍ମ ରତ୍ନ (୧୪୮୧), ମିତାକ୍ଷରା (୧୫୦୬) ଏବଂ ବିଶେଷତଃ ୧୧୯୧ରେ ଅନୁଲିଖିତ ପଞ୍ଚାକାର ପୋଥି ସମୂହର ଲିପି ସହିତ ଚର୍ଯ୍ୟା ପୋଥିର ଲିପି ତୁଳନାତ୍ମକ ଭାବରେ ବିଚାର କରି ଏହି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି । ପ୍ରସଙ୍ଗତଃ ଉଲ୍ଲେଖନୀୟ, ତାଙ୍କ ମତରେ ଚର୍ଯ୍ୟାର ଲିପି ନେୱାରୀ ନୁହେଁ, ବଙ୍ଗଳା, ଚର୍ଯ୍ୟା ପୋଥିର ଲିପିକାଳ ସମ୍ବନ୍ଧରେ ଏହି ଆଲୋଚନା ଭିତ୍ତିରେ ଚର୍ଯ୍ୟା ରଚନାର ନିମ୍ନତମ ସମ୍ଭାବ୍ୟ ସୀମା ଦ୍ୱାଦଶ ଶତାବ୍ଦୀ ବୋଲି ପ୍ରତିପନ୍ନ ହୁଏ ।

---

(୧) ଚ. ଗୀ. ପ. ଭୂମିକା—ପୃ: ୧୫ ।

(୨) ବୌଦ୍ଧଗାନ ଓ ଦୋହା, ୧୩୨୩, ପୃ: ୨୫; ହରପ୍ରସାଦ ରଚନାବଳୀ-୧, ପୃ ୨୪୧ ।

(୩) ବସନ୍ତ ରଞ୍ଜନ ରାୟ ସଂପାଦିତ, ୧୩୨୩ ।

(୪) ଚର୍ଯ୍ୟାଗୀତି, ବିଶ୍ୱଭାରତୀ, ୧୯୬୫ ।

"ବୌଦ୍ଧଗାନ ଓ ଦୋହା"ରେ ଚର୍ଯାଗୀତିକାସମୂହ ପ୍ରଥମେ ପ୍ରକାଶିତ ହେଲାବେଳେ ତାର ଶୀର୍ଷକ ଥିଲା "ହାଜାର ବଛରେର୍ ପୁରାନୋ ବାଙ୍ଗାଲା ଭାଷାୟ ବୌଦ୍ଧଗାନ ଓ ଦୋହା" ଏବଂ "ବୌଦ୍ଧ ସହଜିୟା ମତେର ଅତି ପୁରାନୋ ବାଙ୍ଗାଲା ଗାନା"—ଶ୍ରୀଯୁକ୍ତ ଶାସ୍ତ୍ରୀ ଏହି ରଚନାବଳୀର ପ୍ରଥମ ପାଠକ। କେତେକ ପରିଚିତ ଶବ୍ଦ ଓ ବାକ୍ୟରୂପ ଦେଖିବାମାତ୍ରେ ହିଁ ସେ ବିଶ୍ବାସ କରିନେଇଥିଲେ ଯେ ଏହା ବଙ୍ଗଳା। "ଯଦିଓ ଅନେକେର୍ ଭାଷାୟ ଏକ୍ଟୁ ଏକ୍ଟୁ ବ୍ୟାକରଣେର ପ୍ରଭେଦ ଆଛେ" ଏହା ଅନୁଭବକରିବା ସତ୍ତ୍ୱେ ସେ କହିପାରିଥିଲେ—'ତଥାପି ସମସ୍ତ ଇ ବାଙ୍ଗାଲା ବଲିୟା ବୋଧହୟ।' ତାଙ୍କ ପୂର୍ବରୁ ପ୍ରାୟ ଏହି ଭାଷାରେ ଲିଖିତ ୨୮ଟି ଦୋହା ପ୍ରକାଶ କରିଥିଲେ ପଣ୍ଡିତ ସିସିଲ୍ ବେଣ୍ଡଲ୍ ତାଙ୍କର 'ସୁଭାଷିତ ସଂଗ୍ରହ' ଗ୍ରନ୍ଥ (ବ୍ରୁସେଲ୍ସ, ୧୯୦୫) ପରିଶିଷ୍ଟରେ ଏବଂ ସେଠାରେ ସେ ଟିପ୍ପଣୀ ଦେଇଯାଇଥିଲେ ଯେ ଏହା ଅପଭ୍ରଂଶ କିମ୍ବା ପ୍ରାକୃତଭାଷା ("Difficult Apabhramsa Prakrit")। କିନ୍ତୁ ଶ୍ରୀଯୁକ୍ତ ଶାସ୍ତ୍ରୀ ଯଥେଷ୍ଟ ଯୁକ୍ତିର ଅଭାବ ସତ୍ତ୍ୱେ ଅଧ୍ୟାପକ ବେଣ୍ଡଲ୍‌ଙ୍କ ମତକୁ ଅସ୍ୱୀକାର କରି ସେହି ଅପଭ୍ରଂଶ ଭାଷାକୁ ପ୍ରାଚୀନ ବଙ୍ଗଳା ଭାଷାରୂପେ ଗ୍ରହଣ କଲେ । ଫଳରେ ଡ. ସୁନୀତିକୁମାର ଚାଟାର୍ଜି ବଙ୍ଗଳାଭାଷାର ଜନ୍ମ ଓ ବିକାଶକ୍ରମ ଆଲୋଚନା ପ୍ରସଙ୍ଗରେ ଚର୍ଯାଗୀତିକା ମଧ୍ୟରେ ବଙ୍ଗଳା ଭାଷାର ଆଦିମ ରୂପର ସନ୍ଧାନ କଲେ। ତାଙ୍କର ବିଶେଷଜ୍ଞ ଦୃଷ୍ଟିରେ ଚର୍ଯାର ଭାଷାରେ ଶୌରସେନୀ ଅପଭ୍ରଂଶର ପ୍ରଭାବ ଓ ପ୍ରତିବେଶୀ ପ୍ରାଦେଶିକ ଭାଷାମାନଙ୍କର ସଙ୍କେତ ଧରା ପଡ଼ିଥିଲେ ମଧ୍ୟ ସେ ସିଦ୍ଧାନ୍ତ କଲେ ଯେ, ଚର୍ଯାର ଭାଷା ପ୍ରାଚୀନ ବଙ୍ଗଳା। କିନ୍ତୁ ଯେଉଁ ଆଲୋଚନାର ଆଦର୍ଶ ଓ ଯୁକ୍ତିର ପରମ୍ପରା ଅନୁସାରେ ସେ ଏହି ମତର ପ୍ରତିଷ୍ଠା କରିଗଲେ, ତାକୁ ହିଁ ଅନୁସରଣ କରି ପରବର୍ତ୍ତୀ କାଳରେ ଓଡ଼ିଆ, ଆସାମୀ, ମୈଥିଳୀ, ମାଗଧୀ ପ୍ରଭୃତି ପ୍ରତ୍ୟେକ ପୂର୍ବାଞ୍ଚଳୀୟ ଭାଷାଭାଷୀ ପଣ୍ଡିତଗଣ ଚର୍ଯାଗୀତିକାରେ ସନ୍ଧାନ କରି ବସିଲେ ନିଜ ନିଜର ଭାଷାର ଆଦିମ ସ୍ୱରୂପ। ଓଡ଼ିଶାରୁ ବିନାୟକ ମିଶ୍ର, ଗୋପାଳଚନ୍ଦ୍ର ପ୍ରହରାଜ, ଆର୍ତ୍ତବଲ୍ଲଭ ମହାନ୍ତି, କରୁଣାକର କର, ଆସାମରୁ ବିରିଞ୍ଚିକୁମାର ଭୂୟାଁ, ବାଣୀକାନ୍ତ କାକତି, ବିହାରରୁ ସାଂକୃତ୍ୟାୟନ, ଜୟସ୍ୱାଲ୍, ପର୍ଶୁରାମ ଚତୁର୍ବେଦୀ, ଉଦୟନାରାୟଣ ତେଓ୍ୱାରୀ, ଜୟକାନ୍ତ ମିଶ୍ର ପ୍ରମୁଖ ପଣ୍ଡିତଗଣ କହି ଚାଲିଲେ ଏହା ଓଡ଼ିଆ, ଏହା ଆସାମୀ, ଏହା ମାଗଧୀ, ଏହା ମୈଥିଳୀ, ଏହା ଭୋଜପୁରୀ । କିନ୍ତୁ ଏହା ସତ୍ତ୍ୱେ ମଧ୍ୟ ଅନ୍ୟ ପକ୍ଷରେ ବିନୟତୋଷ ଭଟ୍ଟାଚାର୍ଯ୍ୟ, ପ୍ରବୋଧଚନ୍ଦ୍ର ବାଗ୍‌ଚୀ, ସୁଶୀଲକୁମାର ଦେ, ମନୀନ୍ଦ୍ରମୋହନ ବସୁ

ପ୍ରମୁଖ ବଙ୍ଗୀୟ ଆଲୋଚକଗଣ ନବକାର ଭାବରେ ବଙ୍ଗଳାର ପକ୍ଷ ସମର୍ଥନ କରିବାରେ ଲାଗିଲେ । ଡ. ସୁନୀତିକୁମାରଙ୍କ କଣ୍ଠରୁ ଦୃଢ଼ତର ସ୍ୱରରେ ପୁଣି ଉଦ୍‌ଘୋଷିତ ହେଲା— "It is old Bengali and not old Magadhi, old Maithili, old Bhojpuriya or old Oriya." (୧)

ଚର୍ଯ୍ୟାଗୀତିକାର ରଚନାକାଳରେ ପୂର୍ବଭାରତର ପ୍ରାଦେଶିକ ଭାଷାସମୂହର ଜନ୍ମ ହୋଇ ନଥିଲା । ସେତେବେଳେ ଏହି ଭୂଖଣ୍ଡରେ କେତେକ ଆଞ୍ଚଳିକ ସ୍ୱତନ୍ତ୍ରତା ସତ୍ତ୍ୱେ ଏକ ସାଧାରଣ ଭାଷା ଚଳୁଥିଲା । ଏହାକୁ ପ୍ରାଚ୍ୟ ଅପଭ୍ରଂଶ କୁହାଯାଇପାରେ । ଚର୍ଯ୍ୟା-ଗୀତିକାର ସିଦ୍ଧଗଣ, କେହି ଓଡ଼ିଆ, କେହି ବଙ୍ଗାଳୀ, କେହି ବିହାରୀ ହେଲେ ମଧ୍ୟ ପୂର୍ବାଞ୍ଚଳରେ ସେହି ସାଧାରଣ ଭାଷାରେ ହିଁ ଗୀତିକାମାନ ରଚନା କରିଯାଇଛନ୍ତି । ଟୀକାକାର ମୁନିଦତ୍ତ ଏହାକୁ ପ୍ରାକୃତ ଭାଷା ଆଖ୍ୟା ଦେଇଛନ୍ତି । ("କାଅ ତରୁ ବ୍ୟାଜେନ ଶୁଦ୍ଧଧର୍ମିତା ସୀଠିକାଂ ପ୍ରାକୃତ ଭାଷୟା ରଚୟିତୁ ମାହ କାଯେତ୍ୟାଦ—ଚର୍ଯ୍ୟା ନ. (୧) । ଏହି ଭାଷାରୁ ପରେ ସ୍ୱତନ୍ତ୍ରରୂପେ ବିକଶିତ ହୋଇଛୁ ଓଡ଼ିଆ, ବଙ୍ଗଳା, ଆସାମୀ, ମୈଥିଳୀ ମାଗଧୀ ଓ ଭୋଜପୁରୀ । ତେଣୁ ଏବେ ଏହି ପ୍ରତ୍ୟେକ ଭାଷାର ଆଦିମ ରୂପ ଚର୍ଯ୍ୟାର ଭାଷାରେ ଭାସି ଉଠୁଛି ଏବଂ ସେହି ସବୁ ଆଭାସକୁ ଭିତ୍ତିକରି ପ୍ରତ୍ୟେକ ଭାଷାଭାଷୀ ଚର୍ଯ୍ୟାଗୀତିକାକୁ ତାଙ୍କ ଭାଷାର ସମ୍ପତ୍ତି ବୋଲି ଦାବୀ କରୁଛନ୍ତି । ଅଧ୍ୟାପକ ବେଣ୍ଡଲ୍ ନିଃସ୍ୱାର୍ଥପର ଓ ନିରପେକ୍ଷ ଭାବରେ ବହୁଦିନ ତଳେ ଯେଉଁ ମତ ପ୍ରଦାନ କରିଯାଇଥିଲେ, ତାହା ଆଜିର ଏହି ବାଦବିସମ୍ବାଦ ମଧ୍ୟରେ ସତ୍ୟରୂପେ ସ୍ୱତଃ ପ୍ରମାଣିତ ହୋଇଛି । ପଣ୍ଡିତ ସାଂକୃତ୍ୟାୟନ ତାଙ୍କର ମାଗଧୀ ମତ ପରେ ପ୍ରତ୍ୟାହାର କରିନେଇ ଅପଭ୍ରଂଶର ପକ୍ଷ ସମର୍ଥନ କରିଛନ୍ତି ଏବଂ ବହୁ ପଣ୍ଡିତଙ୍କ ନିକଟରେ ଆଜି ଏହି ମତ ଗ୍ରହଣୀୟ ହୋଇଛି । କିନ୍ତୁ ବଙ୍ଗୀୟ ଆଲୋଚକମାନଙ୍କ ମଧ୍ୟରୁ କେହି କେହି ଏବେ ମଧ୍ୟ କହନ୍ତି, ପୂର୍ବେ ବଙ୍ଗ କହିଲେ ଆସାମ, ବିହାର, ଓଡ଼ିଶା ସବୁ ତା'ର ଅନ୍ତର୍ଭୁକ୍ତ ହେଉଥିଲା ଓ ସେହି ବୃହତ୍ତର ଗୌଡ଼ର ଭାଷା ଚର୍ଯ୍ୟାର ଭାଷା (୨), ଏବଂ ଚର୍ଯ୍ୟାର ଲେଖକମାନଙ୍କ ମଧ୍ୟରୁ ଅନେକେ ଅବଙ୍ଗାଳୀ ଥିବାରୁ ସେ ଭାଷାରେ ଅନେକ ବ୍ୟତିକ୍ରମ ଦେଖାଯାଏ, ମାତ୍ର ମୂଳତଃ ଏ ଭାଷା ହେଉଛି ବଙ୍ଗଳା (୩) ।

(୧) History of Bengal. Ch.xii (Dacca University. 1943)

(୨) ବୌଦ୍ଧଧର୍ମ ଓ ଚର୍ଯ୍ୟାଗୀତି-ଡ଼ ଶଶିଭୂଷଣ ଦାସଗୁପ୍ତ, ପୃ ୧୦୭ (କଲିକତା, ୧୩୬୨)

(୩) History of Bengali Literature. Dr. Sukumar Sen, P.27.36. (Sahitya Akademi 1960)

ଚର୍ଯାଭାଷାର କୌଣସି ଆଧୁନିକ ଭାଷା ବିଶେଷ ସହିତ ଯୋଗସୂତ୍ର ନିରୂପଣ କରିବା ପ୍ରସଙ୍ଗରେ ଦୁଇଟି ବିଷୟ ଅବଶ୍ୟ ସ୍ମରଣୀୟ—(କ) ମାଗଧୀ ପରିବାରଭୁକ୍ତ ଆଧୁନିକ ଭାଷା ସମୂହ ସଂପୂର୍ଣ୍ଣ ଭାବେ ସ୍ୱତନ୍ତ୍ର ଓ ବିଚ୍ଛିନ୍ନ ରୂପ ଗ୍ରହଣ କରିବାର ଅବ୍ୟବହିତ ପୂର୍ବବର୍ତ୍ତୀ ସ୍ତରର ଭାଷା ହେଉଛି ଚର୍ଯା ଭାଷାର ଭିତ୍ତି, ଏବଂ (ଖ) ଏହି ଭାଷା ଭିନ୍ନଭିନ୍ନ ସ୍ଥାନ ଓ ସମୟ ଅନୁସାରେ ଔପଭାଷିକ ବିଭିନ୍ନତା ସମନ୍ୱିତ । ଚର୍ଯା ଭାଷାର ବ୍ୟାକରଣରେ ଏତେ ବିଭିନ୍ନ ଓ ବିକଳ୍ପ ପ୍ରୟୋଗ ପରିଲକ୍ଷିତ ହୁଏ ଯେ ମନେହୁଏ ଏହା ଏକ କୃତ୍ରିମ ସାହିତ୍ୟିକ ଭାଷା କିମ୍ବା ଏହା ଏପରି ଏକ ସନ୍ଧି ସମୟର ଭାଷା ଯେତେବେଳେ କି ମୂଳ ଭାଷାରୁ କ୍ରମଶଃ ବିବିଧ ଔପଭାଷିକ ରୂପ ବିକାଶ ଲାଭ କରୁଥିଲା । ବଙ୍ଗଳା ଓ ଅସମୀୟା ତୁଳନାରେ ମୂଳ ଧାରାରୁ ଓଡ଼ିଆ ପ୍ରଥମେ ବିଚ୍ଛିନ୍ନ ହୋଇଥିଲା (୧) । ପ୍ରତ୍ନ—ଓଡ଼ିଆ ଭାଷାର ସମ୍ଭାବିତ ସ୍ୱରୂପ ଚର୍ଯା ଭାଷାରେ ଯେଉଁ ପରିମାଣରେ ବିଧୃତ ସେଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଆଧୁନିକ ବଙ୍ଗଳା, ଅସମୀୟା ଇତ୍ୟାଦି ଠାରୁ ଆଧୁନିକ ଓଡ଼ିଆ ଚର୍ଯା-ଭାଷାର ଖୁବ ନିକଟବର୍ତ୍ତୀ । ଓଡ଼ିଆ ଧ୍ୱନି-ପ୍ରକ୍ରିୟାର ଐତିହାସିକ ଆଲୋଚନା କ୍ରମରେ ଡଃ ପରେଶଚନ୍ଦ୍ର ମଜୁମଦାର (୨) ଏକ ଯଥାର୍ଥ ପ୍ରଶ୍ନ ଉତ୍ଥାପନ କରିଛନ୍ତି । ସେ କହନ୍ତି ୧୧ଶ-୧୨ଶ ଶତାବ୍ଦୀର ଚର୍ଯା ଗୀତକାର ଭାଷାରେ ପ୍ରାଚ୍ୟ-ଭାଷାର ସାଧାରଣ ଲକ୍ଷଣମାନ ତଥା ଅପଭ୍ରଂଶର ପ୍ରାଚୀନ ଚରିତ୍ର ନିହିତ ଥିବା ସତ୍ତ୍ୱେ ଏହାକୁ ନବ୍ୟ-ମାଗଧୀର (Neo-Magadhan) ଏକ କଥିତ ଉପଭାଷାର ସାହିତ୍ୟିକ ରୂପ ବୋଲି ଗ୍ରହଣ ନକରି ପ୍ରାଚୀନ-ବଙ୍ଗଳା ବୋଲି ଆଖ୍ୟାତ କରିବାର ଯଥାର୍ଥତା କଣ ? ତାଙ୍କର ଭାଷାରେ କହିବାକୁ ଗଲେ ଚର୍ଯାର ଭାଷା ସେହି ନବ୍ୟ-ମାଗଧୀର ନିଦର୍ଶନ, ଯାହାର କି ଏକ ରକ୍ଷଣଶୀଳ ଓ ନିର୍ଭର ଯୋଗ୍ୟ ଦାୟାଦ ହେଉଛି ଓଡ଼ିଆ ।

## ୮

ଚର୍ଯାଗୀତକାର ରଚୟିତା ସିଦ୍ଧାଚାର୍ଯ୍ୟଗଣ ୮୪ ସିଦ୍ଧ ପରମ୍ପରାର ଅନ୍ତର୍ଭୁକ୍ତ । ଏମାନେ ଥିଲେ ତାନ୍ତ୍ରିକ ବୌଦ୍ଧ-ସହଜିଆ ସାଧକ । କେହି କେହି ଏମାନଙ୍କୁ ଶୂନ୍ୟବାଦୀ କାୟାସାଧକ ମଧ୍ୟମପନ୍ଥୀ, କୌଳମାର୍ଗୀ ଇତ୍ୟାଦି ଭାବେ ପରିଚିତ କରାଇଛନ୍ତି । ନାଥଧର୍ମ

(୧) D: P: Pattanayak A Controlled historical reconstruction of Oriya, Assamese, Bengali and Hindi, The Hague, 1966.

(୨) A Historical Phonology of Oriya, Calcutta, 1970

ପରମ୍ପରାରେ ଏହି ଲବମାନଙ୍କ ମଧ୍ୟରୁ କେତେଜଣଙ୍କର ଉଲ୍ଲେଖ ମଧ୍ୟ ପଣ୍ଡିତ ହଜାରୀ ପ୍ରସାଦ ଦ୍ୱିବେଦୀ ପ୍ରମୁଖ ଲକ୍ଷ୍ୟ କରିଛନ୍ତି । ଚର୍ଯାଗୀତିକା ଓ ଦୋହା ବ୍ୟତୀତ କେତେକ ତାନ୍ତ୍ରିକ ଗ୍ରନ୍ଥ ଏବଂ ସାଧନମାଳା ଭିତ୍ତିରେ ଡ. ଶହୀଦୁଲ୍ଲାହ୍, ଡ. ବିନୟତୋଷ ଭଟ୍ଟାଚାର୍ଯ୍ୟ, ଡ. ପ୍ରବୋଧଚନ୍ଦ୍ର ବାଗ୍‌ଚୀ, ପଣ୍ଡିତ ରାହୁଲ ସାଂକୃତ୍ୟାୟନ, ଡ. ଶଶିଭୂଷଣ ଦାସଗୁପ୍ତ, ଡ. ଧର୍ମବୀର ଭାରତୀ ପ୍ରମୁଖ ପଣ୍ଡିତଗଣ ଏମାନଙ୍କର ଧର୍ମଗତ ଓ ଦାର୍ଶନିକ ଦୃଷ୍ଟିକୋଣ ସମ୍ପର୍କରେ ସବିଶେଷ ଆଲୋଚନା କରିଛନ୍ତି । ସଂକ୍ଷେପରେ ଏମାନଙ୍କର ସାଧ ଓ ସାଧନାର କଥା ଏଠାରେ ପ୍ରଦତ୍ତ ହେଲା ।

ମହାଯାନ ବୌଦ୍ଧଧର୍ମରେ କାଳକ୍ରମେ ଦୁଇଟି ମତ ଦେଖା ଦେଇଥିଲା— ପାରମିତାନୟ ଓ ମନ୍ତ୍ରନୟ । ପାରମିତାନୟ ସାଧକଗଣ ଛଅ ପାରମିତାର ଅନୁଶୀଳନ ଦ୍ୱାରା ଦଶବୋଧିସତ୍ତ୍ୱ ଭୂମି ଅତିକ୍ରମ କରି ବୋଧିଚିତ୍ତ ଉତ୍ପାଦନ ପୂର୍ବକ ସୁଖ ଓ ନିର୍ବାଣ ଲାଭ କଲେ । କିନ୍ତୁ ମନ୍ତ୍ରନୟରେ ତାନ୍ତ୍ରିକ ସାଧନାର ବିକାଶ ଘଟିଲା । ବିବିଧ ମନ୍ତ୍ର ସହିତ ମୁଦ୍ରା ମଣ୍ଡଳ ଆଦି ଦେଖାଦେଲା ଏବଂ ଏହା ଏକ ପୁରାପୂରି ତାନ୍ତ୍ରିକ ଧର୍ମରେ ପରିଣତ ହେଲା । ମହାଯାନ-ସିଦ୍ଧାନ୍ତସମ୍ମତ ବୁଦ୍ଧକାୟାର ତିନୋଟି ସ୍ତର ଧର୍ମକାୟା, ସମ୍ଭୋଗକାୟା ଓ ନିର୍ମାଣକାୟା ସହିତ ବଜ୍ରକାୟା ସଂଯୁକ୍ତ ହେଲା ଏବଂ ଶୂନ୍ୟତା ଓ ବିଜ୍ଞାନ ସଙ୍ଗେ ମହାସୁଖ ସିଦ୍ଧାନ୍ତ ବିକଶିତ ହେଲା । ଶୂନ୍ୟର ରୂପାନ୍ତର ହେଲା, ବଜ୍ର ଓ ବୋଧିସତ୍ତ୍ୱ ହେଲେ ବଜ୍ରସତ୍ତ୍ୱ; ଶୂନ୍ୟତା ଓ କରୁଣା ହେଲା ପ୍ରଜ୍ଞା ଓ ଉପାୟ । ଏଇଠୁ ବଜ୍ରଯାନର ଭିତ୍ତି ପତ୍ତନ ହେଲା । ମନ୍ତ୍ର, ମୁଦ୍ରାମଣ୍ଡଳ ବ୍ୟତୀତ କେତେକ ଦେବଦେବୀ ପୂଜା, ଧ୍ୟାନଧାରଣା ଓ ଗୁହ୍ୟ-ଯୋଗ ସାଧନାର ପ୍ରବର୍ତ୍ତନ ହେଲା । ଏଥିରୁ ପୁଣି ପରବର୍ତ୍ତୀ କାଳରେ ବିକଶିତ ହେଲା କାଳଚକ୍ରଯାନ, ସହଜଯାନ । କାଳଚକ୍ରଯାନୀମାନେ ଶ୍ୱାସପ୍ରଶ୍ୱାସର ପ୍ରବାହକୁ କାଳ-ପ୍ରବାହର ବାହନ ରୂପେ ଗ୍ରହଣକଲେ ଏବଂ ଶ୍ୱାସପ୍ରଶ୍ୱାସ ପ୍ରଭାବକୁ ନାନା ଭାବରେ ନିରୁଦ୍ଧକରି କାଳଚକ୍ରକୁ ଅତିକ୍ରମ କରିବା ପାଇଁ ସାଧନାକଲେ । ସହଜଯାନୀମାନେ ସିଦ୍ଧାନ୍ତକଲେ ଯେ, ପ୍ରତ୍ୟେକ ବ୍ୟକ୍ତି ଓ ବସ୍ତୁମଧ୍ୟରେ ସମସ୍ତ ପରିବର୍ତ୍ତନ ମଧ୍ୟରେ ଏକ ଅପରିବର୍ତ୍ତନୀୟ ସହଜସ୍ୱରୂପ ବିଦ୍ୟମାନ । ଏହି ସହଜ ସ୍ୱରୂପକୁ ଉପଲବ୍ଧି କରି ସହଜାନନ୍ଦ ବା ମହାସୁଖ ଲାଭ କରିବା ହେଲା ସେମାନଙ୍କର ଲକ୍ଷ୍ୟ । ଏହି ମହାସୁଖ ନିର୍ବାଣଠାରୁ ଉତ୍କୃଷ୍ଟ । ନିର୍ବାଣ ନଞର୍ଥକ ବା ନେତିବାଚକ, କିନ୍ତୁ ମହାସୁଖ ଅସ୍ତ୍ୟର୍ଥକ ବା ଇତିବାଚକ । ମହାସୁଖ ଲାଭ ପାଇଁ ଦେବଦେବୀ ପୂଜା, ବର୍ଣ୍ଣାବାଦ, ପ୍ରଚୁର ପାଣ୍ଡିତ୍ୟ ଅନାବଶ୍ୟକ । ମନୁଷ୍ୟ ତାର ସହଜ ସ୍ୱାଭାବିକ ବୃତ୍ତିସମୂହ କଷ୍ଟପୂର୍ବକ ଅବଦମିତ ବା ଧ୍ୱଂସ ନ କରି ସେ ସବୁର ରୂପାନ୍ତର ଓ ଉଦ୍‌ଗତି ଦ୍ୱାରା ସତ୍ୟ ଉପଲବ୍‌ଧି କରିପାରେ । ଏମାନଙ୍କ ସାଧ୍ୟ ଯେପରି ସହଜ, ସାଧନ ସେପରି ସହଜ । ତେଣୁ ଏମାନଙ୍କର ପଦ୍ଧତିକୁ ସହଜଯାନ ବୋଲି ପରବର୍ତ୍ତୀ କାଳରେ ନାମିତ କରାଯାଇଛି ।

ସହଜସାଧନାର ମୂଳତତ୍ତ୍ୱ ବୋଧିଚିତ୍ତ ସମୁତ୍ପାଦ । ବୋଧିଚିତ୍ତ ଅର୍ଥ ଜ୍ଞାନମୟ ବା ଜ୍ଞାନରେ ପ୍ରତିଷ୍ଠିତ ଚିତ୍ତ । ଏହା ଚିତ୍ତର ଦୃଢ଼ ଓ ଚିତ୍ତ ଅଚଳ ଅବସ୍ଥା । ଏହା ବଜ୍ରସ୍ୱରୂପ (ବୋଧିଚିତ୍ତଂ ଭବେତ୍ ବଜ୍ରମ୍) । ଜ୍ଞାନ ବ୍ୟତୀତ ଏହାର ଅନ୍ୟ ଏକ ଉପାଦାନ ସାର୍ବଜନୀନ କରୁଣା । ତେଣୁ ବୋଧିଚିତ୍ତ ହେଉଛି ଶୂନ୍ୟତା ଓ କରୁଣାଯୁକ୍ତ ଚିତ୍ତ (ଶୂନ୍ୟତା କରୁଣା-ଭିନ୍ନଂ ବୋଧିଚିତ୍ତମ୍) । ଏହି ଶୂନ୍ୟତା ଓ କରୁଣାକୁ ଏମାନେ ପ୍ରଜ୍ଞା ଉପାୟ, ଗ୍ରାହ୍ୟଗ୍ରାହକ, ଭବନିର୍ବାଣ, ବାମନାଡ଼ୀ, ଦକ୍ଷିଣନାଡ଼ୀ ଇତ୍ୟାଦି ନାନା ଭାବରେ ବର୍ଣ୍ଣନା କରିଛନ୍ତି । ସ୍ଥୂଳବିଶେଷରେ ଏହା ନାରୀ ଓ ପୁରୁଷ ରୂପେ ମଧ୍ୟ ପରିକଳ୍ପିତ । ଏହି ଦୁହିଁଙ୍କର ମିଳନ ଏକ ମଧ୍ୟମାର୍ଗ ଅବଧୂତିମାର୍ଗରେ ସଙ୍ଘଟିତ ହୁଏ । ଏହା ହିଁ ଯୁଗନଦ୍ଧ, ସମରସ ବା ଅଦ୍ୱୟ ଅବସ୍ଥା । କାୟାସାଧନା ଦ୍ୱାରା ଏହି ମିଳିତ ଧାରାକୁ ଅବଧୂତି ମାର୍ଗରେ ଊର୍ଦ୍ଧ୍ୱକୁ ଉଦ୍ବେଳିତ କରି ସାଧକ ମହାସୁଖ ଲାଭ କରେ । ଏହି ସାଧନାର ସାରକଥା ହେଲା ସହଜିୟାମାନେ ଦେହରେ ବୌଦ୍ଧ ତ୍ରିକାୟା ସହିତ ସହଜକାୟ ଯୁକ୍ତକରି ଚାରିକାୟା ନିର୍ଣ୍ଣୟ କରିଛନ୍ତି ଏବଂ ହିନ୍ଦୁତନ୍ତ୍ରର ଷଡ଼ଚକ୍ର ଅନୁରୂପରେ ଶରୀରରେ ଏହାର ଅବସ୍ଥିତି ପରିକଳ୍ପନା କରିଛନ୍ତି । ଇଡ଼ା, ପିଙ୍ଗଳା ଏମାନଙ୍କର ପରିଭାଷାରେ ଲଲନା, ରସନା, ଆଲିକାଲି, ଧମଣ ଚମଣ ଓ ସୁଷୁମ୍ନା ଅବଧୂତିକା । ବାମଦକ୍ଷିଣ ନାଡ଼ୀଦ୍ୱୟର ସ୍ୱାଭାବିକ ନିମ୍ନଗତିକୁ ରୁଦ୍ଧକରି ମଧ୍ୟମ ମାର୍ଗରେ ଏକୀକରଣ କରିବା ଏବଂ ସମ୍ବୃତ୍ତ ବୋଧିଚିତ୍ତକୁ ଜାଗ୍ରତ କରି ସେହି ମାର୍ଗରେ ଊର୍ଦ୍ଧ୍ୱକୁ ଉଦ୍ବେଳନ କରିବା ବିଧେୟ । ଏହାଦ୍ୱାରା ଏକ ଏକ କାୟା ବା ଶୂନ୍ୟମଣ୍ଡଳ ଅତିକ୍ରମ କରିବା ସଙ୍ଗେ ଏକ ଏକ ଆନନ୍ଦ ଓ ଅନୁଭୂତି ଲାଭ ହୁଏ ଏବଂ ସର୍ବଶେଷରେ ମିଳେ ମହାସୁଖ । ସମ୍ବୃତ୍ତ ବୋଧିଚିତ୍ତ 'ପରମାର୍ଥ'ରେ ରୂପାନ୍ତରିତ ହୁଏ । ଏମାନଙ୍କର ଯୋଗସାଧନାରେ ରୂପକାତ୍ମକ ଭାବରେ ନାରୀ-ଚର୍ଯ୍ୟା ପରିଦୃଷ୍ଟ ହୁଏ । ମହାସୁଖ ବା ସହଜାନନ୍ଦକୁ ଏମାନେ ନାରୀ ସହିତ ରୂପକ କରିଛନ୍ତି । ତାହା ଡୋମ୍ବୀ, ଶବରୀ, ଚଣ୍ଡାଳୀ ଇତ୍ୟାଦି ଭାବରେ ରୂପାୟିତ ହୋଇଛି ।

ଚର୍ଯ୍ୟାଗୀତିକାରେ ପ୍ରଦତ୍ତ ଦର୍ଶନତତ୍ତ୍ୱ ମହାଯାନ ଶାଖା ଅନ୍ତର୍ବର୍ତ୍ତୀ ବିଭିନ୍ନ ସମ୍ପ୍ରଦାୟର ସିଦ୍ଧାନ୍ତ ଦ୍ୱାରା ଗଠିତ । ଉଭୟ ମାଧ୍ୟମିକ ଓ ଯୋଗାଚାର ଦର୍ଶନର ପ୍ରଭାବ ଏଥିରେ ପରିଲକ୍ଷିତ ହୁଏ । ବୌଦ୍ଧଧର୍ମର କେତେକ ବିଶିଷ୍ଟ ତଥ୍ୟ ଓ ସଂଜ୍ଞା, ଯଥା— ବୁଦ୍ଧ, ତଥତା, ସ୍କନ୍ଧ, ନିର୍ବାଣ, ଶୂନ୍ୟ, କରୁଣା, ଗଗନ, ବଜ୍ର, ନୈରାତ୍ମା ଆଦି ସିଦ୍ଧାଚାର୍ଯ୍ୟଗଣ ପ୍ରୟୋଗ କରିଯାଇଛନ୍ତି । ଅନ୍ୟ ପକ୍ଷରେ ନାଥପନ୍ଥୀ ସହିତ ଏମାନଙ୍କର ସାଦୃଶ୍ୟ ଅନେକ କ୍ଷେତ୍ରରେ ପରିଦୃଷ୍ଟ ହୁଏ । ଏମାନେ ନିଜକୁ କେବଳ ଯୋଗୀ, କାପାଳିକ ରୂପେ ପରିଚିତ କରାଇ ନାହାନ୍ତି; ହଠ ନାଥଧର୍ମର 'ନାଥ' ଶବ୍ଦ, ପିଣ୍ଡବ୍ରହ୍ମାଣ୍ଡତତ୍ତ୍ୱ, ଯୋଗ ଆଦି ମଧ୍ୟ ଗ୍ରହଣ କରିଛନ୍ତି । ପୁନଶ୍ଚ ନାଥପରମ୍ପରାରେ ଏମାନଙ୍କର ଉଲ୍ଲେଖ ନାଥଧର୍ମ ସହିତ ଏମାନଙ୍କ ସମ୍ପର୍କ ପ୍ରମାଣିତ କରେ ।

ଚର୍ଯ୍ୟାଗୀତିକାରୁ ସହଜ ସାଧନା ସମ୍ପର୍କୀୟ କେତେକ ପଦ ନିମ୍ନରେ ଉଦ୍ଧୃତ କରାଗଲା ।

ଏକ ସେ ଶୁଣ୍ଡିନୀ ଦୁଇ ଘରେ ସାନ୍ଧଅ ।
ଚୀଅଣ ବାକଲଅ ବାରୁଣୀ ବାନ୍ଧଅ ॥
ସହଜେ ଥିର କରି ବାରୁଣୀ ସାନ୍ଧେ ।
ଜେଁ ଅଜରାମର ହୋଇ ଦିଢ଼ କାନ୍ଧେ ॥ (ନ-୩)

—ଶୁଣ୍ଡିନୀ ରୂପ ଅବଧୂତିକା ଚିକ୍କଣ ବଲ୍କଲ ଦ୍ୱାରା ପ୍ରସ୍ତୁତ ମଦ୍ୟରୂପ ଅବିଦ୍ୟା-ମଳ ରହିତ ପରିଶୁଦ୍ଧ ବୋଧିଚିତ୍ତକୁ ଲଲନା ରସନା ରୂପ ଦୁଇ ଘର ସନ୍ଧିରେ ବାନ୍ଧିରଖେ । ସହଜସାଧନାରେ ଚିତ୍ତ ସ୍ଥିର କରି ସେଇ ମଦ୍ୟରୂପ ବୋଧିଚିତ୍ତକୁ ପ୍ରସ୍ତୁତ କର, ତେବେ ପଞ୍ଚସ୍କନ୍ଧ ଦୃଢ଼ ଓ ଜରା ମୃତ୍ୟୁହୀନ ହେବ ।

ଉଜୁ ରେ ଉଜୁ ଛାଡ଼ି ମା ଲେହୁ ରେ ବାଙ୍କ ।
ନିଅଡ଼ି ବୋହି ମା ଜାହୁରେ ଲାଙ୍କ ॥
ହାଥେର କାଙ୍କଣ ମା ଲେଉ ଦାପଣ ।
ଅପଣେ ଅପା ବୁଝତୁ ନିଅ ମଣ ॥ (ନଂ-୩୨)

ସିଧାସଳଖ ପଥ ଛାଡ଼ି ବଙ୍କା ରାସ୍ତା ଧରନାହିଁ । ତୋ ନିକଟରେ ହିଁ ତତ୍ତ୍ୱ ରହିଛି , ସେଥିପାଇଁ ଲଙ୍କାକୁ ଯା'ଅ ନାହିଁ । ନିଜ ହାତରେ କଙ୍କଣ ଥାଉଁ ଥାଉଁ ଦର୍ପଣରେ କଣ ଲୋଡ଼ା ? ଆପଣା ମନକୁ ଆପେ ବୁଝ ।

ଅପଣୋହିଁ ମୋ କାହେର ଶଙ୍କା ।
ତା ମହାମୁଦେରୀ ଟୁଟି ଗେଲି କଂଖା ॥
ଅନୁଭବ ସହଜ ମା ଭୋଲରେ ଜୋଇ ।
ଚୌକୋଟି ବିମୁକା ଜଇସୋ ତଇସୋ ହୋଇ ॥ (ନଂ-୩୭)

—ଜଗତ ଯେତେବେଳେ ଶୂନ୍ୟ ଓ ଅଚିନ୍ତ୍ୟ, ମୁଁ ମଧ୍ୟ ଅଚିନ୍ତ୍ୟ; ତେଣୁ ମୋର କୌଣସି ଭୟ ନାହିଁ । ହେ ଯୋଗି ! ସହଜକୁ ଅନୁଭବ କର, ତାକୁ ବୁଝିବାକୁ ଭୁଲ କରନାହିଁ । ଅଛି ନାହିଁ, ପୁଣି ଉଭୟର ଭାବ ଓ ଅଭାବ—ଏହି ଚତୁଷ୍ପ୍ରକାର ବିକଳ୍ପମୁକ୍ତ ଶୂନ୍ୟ ବା ସହଜ । ତୁମେ ମଧ୍ୟ ସେହିପରି ବିକଳ୍ପ ମୁକ୍ତ ହୁଅ ।

କାଅଣାବଣ୍ଡି ଖାଣ୍ଟି ମଣ କେଡୁଆଲ ।
ସଦ୍‌ଗୁରୁ ବଅଣେ ଧର ପତବାଲ ॥
ଚୀଅ ଥିର କଈ ଧର ହୁରେ ନାଇ ।
ଆନ ଉପାୟେ ପାର ଣ ଜାଇ ॥
ନୌବାହୀ ନୌକା ଟାଣଅ ଗୁଣେ ।
ମେଲ ମେଲ ସହଜେ ଯାଉଣ ଆଣେଁ ॥ (ନଂ-୩୮)

ଖାଣ୍ଟି ମନରୂପ ଆହୁଲ ଦ୍ୱାରା ଦେହରୂପ ନୌକାକୁ ବାହୁନଥ । ସଦ୍‌ଗୁରୁବଚନ ଅନୁସାରେ ମଙ୍ଗ ମାଡ଼ିଧର । ରେ ନାବିକ ! ଚିତ୍ତ ସ୍ଥିର କରି ନାଆ ବାହି ନେ । ଏ ଭବ-ଜଳଧି ପାର ହେବାକୁ ଆଉ ଅନ୍ୟ ଉପାୟ ନାହିଁ । ଗୁଣ ଧରି ନୌକା ଟାଣି ନେ ନାବିକ ! କୂଳ ଧରି ଧରି ସହଜ ବାଟରେ ଚାଲି ଯା; ଏଣେ ତେଣେ ହୁଅ ନାହିଁ ।

ସହଜ ମହାତରୁ ଫରିଅଏ ତେଲୋଏ ।
ଖସମ ସଭାବେ ବାଣଚ ମୁକା କୋଏ ॥
ଜିମ ଜଲେ ପାଣିଆ ଟଲିଆ ଭେଉ ନ ଯାଅ ।
ତିମ ମଣରଅଣା ସମରସେ ଗଅଣ ସମାଅ ॥ (ନଂ-୪୩)

—ସହଜ ମହାତରୁ ତ୍ରିଭୁବନରେ ବିସ୍ତୃତ ହୋଇଛି । ଶୂନ୍ୟତା ସ୍ୱଭାବ ଜାତ ହେଲେ କିଏ ମୁକ୍ତ ନ ହୁଏ ? ଜଳରେ ଜଳ ମିଶିଲେ ଯେପରି ତାହା ବାରିହୁଏ ନାହିଁ, ସେହିପରି ମନ-ରତ୍ନ ସମରସରେ ଶୂନ୍ୟ ସହିତ ମିଶିଯାଏ ।

## ୯

ଚର୍ଯ୍ୟାଗୀତିକାଗୁଡ଼ିକ ମୂଳତଃ ଆଧ୍ୟାତ୍ମିକ ରଚନା ହେଲେ ମଧ୍ୟ ଏଥିରେ ସାହିତ୍ୟିକ ମୂଲ୍ୟ ଯଥେଷ୍ଟ ରହିଛି । ଏହାର ସନ୍ଧ୍ୟାଭାଷା ଓ ଶୈଳୀ ସବୁଠାରୁ ଆକର୍ଷଣୀୟ । ନାନା ଉପମା, ଉତ୍ପ୍ରେକ୍ଷା, ରୂପକ ଓ ଦୃଷ୍ଟାନ୍ତର ସଂସ୍ଥାନ ଏବଂ ଶ୍ଳେଷାତ୍ମକ ଶବ୍ଦର ପ୍ରୟୋଗ ଦ୍ୱାରା ଏକ ଅଦ୍ଭୁତ ରସ-ମାଧୁରୀ ଏଥିରେ ପ୍ରସ୍ଫୁଟିତ । ଏକ ଏକ ଚର୍ଯ୍ୟା ଅତି ମନୋଜ୍ଞ ଓ ରସାଳ ଗୀତିକବିତା ରୂପେ ଗ୍ରହଣୀୟ ହୋଇପାରେ । ଚର୍ଯ୍ୟାର ଅନ୍ତର୍ନିହିତ ଭାବ ଯେତେ ଗହ୍ୱ୍ୟ ଓ ଗୂଢ଼ ହେଉନା କାହିଁକି, ତା'ର ବାହ୍ୟରୂପ ଓ ରଙ୍ଗ ସରସ ଏବଂ ଉପଭୋଗ୍ୟ ।

ଚର୍ଯ୍ୟା ନ. ୨୮, ୫୦, ୨୦, ୧୦, ୪ ପ୍ରଭୃତି ପାଠ କଲେ ଏହି ଉକ୍ତିର ସାର୍ଥକତା ସହଜରେ ଉପଲବ୍‌ଧି କରିହୁଏ । ଦୃଷ୍ଟାନ୍ତ ସ୍ୱରୂପ ଦୁଇଟି ଗୀତିକାର କଥା ଏଠାରେ ଉଦ୍ଧାର କରାଯାଉଛି ।

—ପ୍ରିୟେ ଯୋଗିନି, ତୁମ୍ଭେ ତୁମର ଜଘନ ମେଖଳା ପୀଡ଼ିତ କରି ମତେ ଗାଢ଼ ଆଲିଙ୍ଗନରେ ଆବଦ୍ଧ କର । ପଦ୍ମ ଓ ବଜ୍ର ର ସେହି ମିଳନରେ ଆଜିର ଏ ସନ୍ଧ୍ୟାକାଳ ସ୍ଥାନ ହେଉ । ଯୋଗିନି ଗୋ, ତୁମ ବିରହରେ ମୁଁ କ୍ଷଣମାତ୍ର ବଞ୍ଚିପାରିବି ନାହିଁ । ତୁମର ମୁଖ ଚୁମ୍ବନକରି ପଦ୍ମ-ମଧୁ ପାନ କରିବା ପାଇଁ ମୋର ପ୍ରାଣ ତୃଷାର୍ତ୍ତ । ମୋର ପ୍ରିୟା ଯୋଗିନୀ ବଡ଼ ଅଭିମାନିନୀ । ବିରାଗ ହେଲେ ଅଉ ଧରି ହୁଏ ନା । ମୁହୂର୍ତ୍ତିକରେ ଶାଶୁଘର ଗାଁଆ ମଣିକୁଳକୁ ପଛରେ ପକାଇ ଦେଇ ବାପଘର ଗାଁ ଓଡ୍ରିଆଣକୁ ପଳାଇଯାଏ । ଶାଶୁଘରେ ତାଲି ପଡ଼େ । ଚନ୍ଦ୍ର ସୂର୍ଯ୍ୟ ସାକ୍ଷୀ କରି ଯେଉଁ ଦାମ୍ପତ୍ୟ-ବନ୍ଧନ ଗଢ଼ି ଉଠିଥାଏ—ତାହା ଛିନ୍ନ ହୋଇଯାଏ । ପ୍ରେମତତ୍ତ୍ୱ ପ୍ରବୀଣ ଗୁଣ୍ଡରୀ ଏ କଥା କହନ୍ତି । ତାଙ୍କର ଜୟପତାକା ଆଜି ନିଖିଳ ନରନାରୀଙ୍କ ମଧ୍ୟରେ ଉଡ୍‌ଡ୍ଡୀୟମାନ (ଚର୍ଯ୍ୟା ନ-୪) ।

—ମୁଁ ବଡ଼ ନିରାଶୀ, ବଡ଼ ହତଭାଗିନୀ । ସ୍ୱାମୀ ମୋର ଶ୍ରମଣ ହୋଇ ଘର ଛାଡ଼ିଲେ । ମୋର ଦାମ୍ପତ୍ୟଜୀବନର ଦୁଃଖକାହାଣୀ କହିଲେ ସରିବ ନାହିଁ । ମା'ଲୋ, ସେହି ଜୀବନର ଏକମାତ୍ର ଫଳ ଆଜି ପାଉଛି । ମୁଁ ଆଜି ମାତୃତ୍ୱର ଅଧିକାରିଣୀ । ହେଲେ, ଅନୁଭବ କରିବାକୁ ଆଉ ଟିକିଏ ନାହିଁ କି ତେଲ ହଳଦୀ ଟିକେ ନାହିଁ । ଏଇ ମୋର ପ୍ରଥମ ସନ୍ତାନ, ଏଇ ମୋର ସକଳ କାମନାର ଗଣ୍ଠିଧନ । ମାତ କ'ଣ କହିବି ମା ! ନାଡ଼ କାଟିବାକୁ ଯାଇ ଦେଖେ ଛିଲଟିର ପ୍ରାଣ ନାହିଁ ! ମୋର ନବଯୌବନ ଆଜି ପୂର୍ଣ୍ଣ ହେଲା । ଉପୁଡ଼ି ପଡ଼ିଥିବା ମୂଳପରି ମୁଁ ପଡ଼ିରହିଛି । ବାପ ତୋ'ର ବୈରାଗୀ ହେଲେ । କୁକୁରୀପା କହନ୍ତି—ଏ ସଂସାର ଏହିପରି । ଏହା ଯେ ବୁଝିଛି, ସେ ହିଁ ବୀର । (ଚର୍ଯ୍ୟା ନ-୨୦)

ଚର୍ଯ୍ୟାଗୀତିକାରେ ତତ୍କାଳୀନ ସାମାଜିକ ଜୀବନର ଏକ ନିରାଟ ବାସ୍ତବ ଚିତ୍ର ପ୍ରତିବିମ୍ବିତହୋଇଛି । ସୁଜନମୋହନମୁଗ୍ଧ କାବ୍ୟକଳାନିପୁଣକବି ବା ଶିଳ୍ପୀ ନଥିଲେ ଏହି ସିଦ୍ଧ କବିଗଣ । ତେଣୁ ଏମାନଙ୍କର ରଚନାରେ ସମସ୍ତ ପ୍ରକାର କୃତ୍ରିମତା ଓ କାବ୍ୟକୌଶଳ ବିନିର୍ମୁକ୍ତ ସ୍ୱାଭାବିକ ଜୀବନର ପ୍ରତିଛବି ଫୁଟିଉଠିଛି । ତତ୍କାଳୀନ ଗାର୍ହସ୍ଥ୍ୟଜୀବନ, ବେଶଭୂଷା, ଖାଦ୍ୟପେୟ, ବିବାହ ଆଦି ଅନୁଷ୍ଠାନ ସମ୍ପର୍କରେ କେତେକ ମୂଲ୍ୟବାନ ସୂଚନା ଏଥିରୁ ମିଳିଥାଏ । ନୀଚଶ୍ରେଣୀସ୍ଥ, ବିଶେଷତଃ, ଡୋମ, ଶବର ଜାତୀୟ ଲୋକମାନଙ୍କର

ଜୀବନଚିତ୍ର ଏଥିରେ ସୁନ୍ଦର ଭାବରେ ଚତ୍ରିତ ହୋଇଛି । ବୃକ୍ଷବଲ୍‌କଲରୁ ମଦ ବାନ୍ଧିବା, ଚୂଲା ଧୂଣି ଧୂଣି ସୂତା କାଟିବା, ଶିକାର କରିବା, ନଦୀ ପାରିହେବା ଇତ୍ୟାଦି ବସ୍ତୁ ଘଟଣାର ପ୍ରାଚୀନ ବ୍ୟବସ୍ଥା ସମ୍ପର୍କରେ କେତେକ ତଥ୍ୟ ମଧ୍ୟ ଏଥିରୁ ମିଳିଥାଏ । କେତେକ ଚର୍ଯ୍ୟାରେ ଶୃଙ୍ଗାର ଓ ମିଳନର ରସଘନ ବର୍ଣ୍ଣନା ପ୍ରଦତ୍ତ ହୋଇଛି । ଏ ସମ୍ପର୍କରେ ସ୍ଥୂଳତଃ ଗୋଟିଏ କଥା କହିଲେ ଯଥେଷ୍ଟ ହେବ ଯେ, ଗୀତଗୁଡ଼ିକର ରଚନାକାଳରେ ତା'ର ଅନ୍ତର୍ନିହିତ ଅର୍ଥ ଥିଲା ସବୁଠାରୁ ଆକର୍ଷଣୀୟ । କିନ୍ତୁ ଆଜି ସେ ସମସ୍ତ ସାଧନା ଓ ସିଦ୍ଧିର ମର୍ମ ବୁଝିବାକୁ କାହାର ଶକ୍ତି ଓ ପ୍ରବୃତ୍ତି ନ ଥିଲେ ହେଁ ତା'ର ବାହ୍ୟ ଅର୍ଥ ପାଇଁ ସେଗୁଡ଼ିକ ଆମ ନିକଟରେ ଏବେ ବି ଆଦରଣୀୟ ହୋଇପାରେ । ଚର୍ଯ୍ୟାର ସହଜତତ୍ତ୍ୱ ଅପେକ୍ଷା ତା'ର ସହଜ ରସ ଆଜି ଅଧିକ ଉପଯୋଗୀ ।

ଆଙ୍ଗିକ ଦୃଷ୍ଟିରୁ ଚର୍ଯ୍ୟାଗୀତିକାଗୁଡ଼ିକର ଆକାର ପ୍ରକାର ପ୍ରାୟ ସମାନ । ନ. ୧୦, ୨୮ ଓ ୫୦ର ପଦସଂଖ୍ୟା ସାତ, ନ. ୨୧ର ପଦ ସଂଖ୍ୟା ଛ ଏବଂ ନ. ୪୩ର ପଦସଂଖ୍ୟା ଚାରି; କିନ୍ତୁ ଅନ୍ୟସବୁ ଗୀତିକାର ପଦସଂଖ୍ୟା ପାଞ୍ଚ । ସାଧାରଣତଃ ଦ୍ୱିତୀୟ ପଦଟି ଧ୍ରୁବପଦ । ପ୍ରତ୍ୟେକ ପଦ ଶେଷରେ "ଧ୍ରୁ" ଲେଖାଥିବାରୁ ପ୍ରତ୍ୟେକ ପଦ ପରେ ଧ୍ରୁବ ପଦଟି ଗାନ ହେଉଥିବା ଅନୁମେୟ । ପ୍ରତ୍ୟେକ ଚର୍ଯ୍ୟାରେ ଭଣିତା ଅଛି । କେତେକ ସ୍ଥଳରେ କେବଳ ଧ୍ରୁବପଦରେ ଏବଂ କେତେକ ସ୍ଥଳେ ଉଭୟ ଧ୍ରୁବପଦ ଓ ଶେଷପଦରେ ଭଣିତା ଅଛି ।

ଚର୍ଯ୍ୟାଗୀତିକାଗୁଡ଼ିକ ସଙ୍ଗୀତଧର୍ମୀ । ଏହା ଧର୍ମ ଅନୁଷ୍ଠାନରେ ଗାନ କରାଯାଉଥିଲା । ପ୍ରତ୍ୟେକ ଚର୍ଯ୍ୟାର ରାଗ ସେଥିପାଇଁ ସୁନିର୍ଦ୍ଦିଷ୍ଟ ଅଛି । ଏଥିରେ ନିମ୍ନଲିଖିତ ଛନ୍ଦସବୁ ପ୍ରୟୋଗ ହୋଇଥିବାର ଦେଖାଯାଏ···ପଟମଞ୍ଜରୀ ଗଉଡ଼ା, ମାଳସୀ ଗଉଡ଼ା, ମାଳସୀ, ମଲ୍ଲାରୀ, ଗୁଞ୍ଜରୀ, ବରାଡ଼ି, ରାମକ୍ରୀ, ଦେଶାଖ, ଭୈରବୀ, କାମୋଦ, ବରାଡ଼ି, ଶବରୀ, ଅରୁ, ଦେବକ୍ରୀ, ଧନସୀ, ବଙ୍ଗାଲ ଓ ଇନ୍ଦ୍ରତାଳ । ଶାର୍ଙ୍ଗଦେବଙ୍କ ସଙ୍ଗୀତ ରତ୍ନାକରରୁ ଜଣାଯାଏ, ଏକ ନିର୍ଦ୍ଦିଷ୍ଟ ସଙ୍ଗୀତ ରୂପେ ଚର୍ଯ୍ୟାଗୀତିଗୁଡ଼ିକ ଗୃହୀତ ହେଉଥିଲା । ଚର୍ଯ୍ୟାସଙ୍ଗୀତର ବୈଶିଷ୍ଟ୍ୟ ବର୍ଣ୍ଣନା କରି ସେ ଲେଖିଛନ୍ତି—

"ପଦ୍ଧତି ପ୍ରକୃତି ଛନ୍ଦାଃ ପାଦାନ୍ତପ୍ରାସ ଶୋଭିତାଃ
ଆଧ୍ୟାତ୍ମଗୋଚରା ଚର୍ଯ୍ୟାସ୍ୟାଦ୍ ଦ୍ୱିତୀୟାଦି ତାଳତଃ ।" (୧)

---

(୧) ଦ୍ରଷ୍ଟବ୍ୟ—ବାଂଲାର ସଂଗୀତ (ପ୍ରାଚୀନ ଯୁଗ) ରାଜେଶ୍ୱର ମିତ୍ର (କଲିକତା, ୧୯୫୩)।

ଚର୍ଯାର ସଂସ୍କୃତଟୀକାରେ କେତେକ ସ୍ଥଳରେ ତାନ୍ତ୍ରିକ ଅର୍ଥବ୍ୟାଖ୍ୟା ପ୍ରସଙ୍ଗରେ ସନ୍ଧ୍ୟା ଭାଷା ବା ସନ୍ଧ୍ୟା ବଚନର ଉଲ୍ଲେଖ ଦେଖାଯାଏ । ଯଥା:— ବାରୁଣୀତ ସନ୍ଧ୍ୟା-ବଚନେନ ତଦେବ ସବୃତ୍ତି ବୋଧିଚତ୍ତଂ ବୋଦ୍ଧବ୍ୟଂ (ନ. ୩), ଶବ୍ଦଗଜେନ୍ଦ୍ର ସନ୍ଧ୍ୟାସ୍ଥା ତମେବାର୍ଥଂ ପ୍ରତିପାଦୟତି (ନ. ୧୬), ପୁଲିନ୍ଦଂ ସନ୍ଧ୍ୟାଭାଷୟା ନପୁଂସକମ୍ (ନ. ୧୪), ଗଙ୍ଗା ଯମୁନେତି ସନ୍ଧ୍ୟୟା ଚନ୍ଦ୍ରାଭାସ ସୂର୍ଯ୍ୟାଭାସୌ । (ନ. ୧୪) । "ବୌଦ୍ଧଗାନ ଓ ଦୋହା" ସମ୍ପାଦକୀୟ ମୁଖବନ୍ଧରେ ପଣ୍ଡିତ ହରପ୍ରସାଦ ସନ୍ଧ୍ୟା ଭାଷାର ଏକ ଭାଷ୍ୟ ପ୍ରଦାନ କରିଛନ୍ତି । ସେ କହନ୍ତି—"ସନ୍ଧ୍ୟା ଭାଷାର ମାନେ ଆଲୋଆଁଧାର ଭାଷା, କତକ ଆଲୋ, କତକ ଅନ୍ଧକାର, ଖାନିକ ବୁଝା ଯାୟ, ଖାନିକ ବୁଝା ଯାୟ ନା ଅର୍ଥାତ୍ ଏଇ ସକଲ ଉଚ୍ଚ ଅଙ୍ଗେର ଧର୍ମକଥାର ଭିତରେ ଏକଟା ଅନ୍ୟ ଭାବେର କଥାଓ ଆଛେ ।" (୧) ତାଙ୍କର ସୁଯୋଗ୍ୟପୁତ୍ର ବିନୟତୋଷ ଭଟ୍ଟାଚାର୍ଯ୍ୟ ମଧ୍ୟ ଏହି ମତ ପରିପୋଷଣ କରିଯାଇଛନ୍ତି । ସେ ପିତାଙ୍କ ଉକ୍ତିର ଅବିକଳ ଅନୁବାଦ କଲାପରି ଲେଖିଛନ୍ତି ଯେ—"They wrote in a language which was designated by them as the Sandhya bhasa, or the twilight language, meaning thereby that the contents may be explained either by the light of the day or by the darkness of night" (୨)

ପ୍ରଥମେ ଶ୍ରୀଯୁକ୍ତ ପାଞ୍ଚକଡ଼ି ବାନାର୍ଜି, ଶାସ୍ତ୍ରୀଙ୍କ ମତ ଖଣ୍ଡନ କରି ସିଦ୍ଧାନ୍ତ ପ୍ରଦାନ କରିଥିଲେ ଯେ, "The Word Sandhya means borderland" । ତାଙ୍କ ମତରେ,ବୀରଭୂମି ଓ ସାନ୍ତାଲପ୍ରଗଣାର ପଶ୍ଚିମଭାଗ ସମେତ ଭାଗଲପୁରର ଦକ୍ଷିଣ-ପୂର୍ବ ଅଞ୍ଚଳ ହେଉଛି ପ୍ରାଚୀନ ଆର୍ଯ୍ୟାବର୍ତ୍ତ ଓ ବଙ୍ଗଦେଶର ମଧ୍ୟବର୍ତ୍ତୀ ସୀମାନ୍ତଭୂମି ଏବଂ ଏହାହିଁ ପୂର୍ବେ ସନ୍ଧ୍ୟାଦେଶ ନାମରେ ଅଭିହିତ ଥିଲା । ଏହି ଅଞ୍ଚଳରେ ପ୍ରଚଳିତ ପରମ୍ପର ସମ୍ପୃକ୍ତାନ୍ବିତ ଉପଭାଷାଗୁଡ଼ିକ-ସହିତ ପରିଚିତ ଯେ କେହି ବ୍ୟକ୍ତି ଏହି ଉପଭାଷା ସମୂହ ଚର୍ଯାଭାଷାର ଅତ୍ୟନ୍ତ ନିକଟବର୍ତ୍ତୀ ବୋଲି କହିବାକୁ ଆଦୌ କୁଣ୍ଠିତ ହେବେ ନାହିଁ । ଏହି ଅଞ୍ଚଳରେ ଏବେ ସୁଦ୍ଧା ଶାସ୍ତ୍ରୀଙ୍କ ସଂଗୃହୀତ ଚର୍ଯାଗୀତଗୁଡ଼ିକ ଲୋକମୁଖରେ ପ୍ରଚଳିତ ଅଛି । (୩)

---

(୧) ବୌଦ୍ଧ ଗାନ ଓ ଦୋହା, ମୁଖବନ୍ଧ—ପୃ. ୮ (ନୂତନ ସଂସ୍କରଣ, ୧୯୬୭)

(୨) An Intrroduction to Budhist Esoterism. P. 35. London 1932)

(୩) Viswa-Bharati Quarterly, Vol. II, No 3-P 265.

ପରବର୍ତ୍ତୀ କାଳରେ ପଣ୍ଡିତ ବିଧୁଶେଖର ଶାସ୍ତ୍ରୀ ଏ ସଂପର୍କରେ ଆଲୋଚନା କରି ସ୍ଥିର କରିଛନ୍ତି ଯେ, ଚର୍ଯ୍ୟାର ବୃତ୍ତିରେ ବ୍ୟବହୃତ ଶବ୍ଦଟି-'ସନ୍ଧା', 'ସନ୍ଧ୍ୟା' ନୁହେ । 'It is quite possible that the scribes not knowing the true significance of Sandhaya (ସଂଧାୟ) or its shortened from Sandha (ସଂଧା) changed it into Sandhya (ସନ୍ଧ୍ୟା) with which they are familiar." ଏହି ସଂଧାୟ ବା ସନ୍ଧ୍ୟା ଶବ୍ଦର ଅର୍ଥ ସନ୍ଧ୍ୟାକାଳ ନୁହେଁ । ଏହାର ଅର୍ଥ ଅଭିସନ୍ଧାୟ, ଅଭିପ୍ରେତ୍ୟ ଉଦ୍ଦେଶ୍ୟ । ଶବ୍ଦଟି ସମ୍ + √ ଧା ରୁ ନିଷ୍ପନ୍ନ । ସେ ସନ୍ଧ୍ୟାଭାଷାର ପ୍ରୟୋଗରେ ଇତିବୃତ୍ତ ଆଲୋଚନା କରି ଏହା ବହୁ ପୂର୍ବରୁ ଆମର ଧର୍ମ ଓ ଦର୍ଶନରେ ପ୍ରୟୋଗ ହେଉଥିବା ପ୍ରମାଣ ଉପସ୍ଥାପନ କରିଛନ୍ତି । "ସଂଦ୍ଧର୍ମ ପୁଣ୍ଡରୀକ"ରେ ଉଲ୍ଲେଖ ଅଛି—ଦୁର୍ବିଜ୍ଞେୟଂ ସାରିପୁତ୍ର ସନ୍ଧ୍ୟାଭାଷ୍ୟଂ ତଥାଗତାନାମ୍ । ଏଥିରେ' ପ୍ରଯୁକ୍ତ ସନ୍ଧାଭାଷା ଶବ୍ଦର ଅନୁବାଦ କରି Burnouf ଲେଖିଛନ୍ତି, "Enigmatcial"। Kern ଲେଖିଛନ୍ତି, 'Mysterious' ଓ Maxmuller ଲେଖିଛନ୍ତି—'Hidden saying' । ଲଙ୍କାବତାର ଗ୍ରନ୍ଥରେ ମଧ୍ୟ ସନ୍ଧାଭାଷାର ବ୍ୟବହାର ହୋଇଛି । ଏପରି କି ବୁଦ୍ଧଦେବଙ୍କ ଉପଦେଶର ଦ୍ୱିବିଧ ଅର୍ଥ ନିହିତ ଥିଲା—ନୀତାର୍ଥ ଓ ନେୟାର୍ଥ; ଅର୍ଥାତ୍ ସାଧାରଣ ବା ଆକ୍ଷରିକ ଅର୍ଥ ଓ ଅଭିପ୍ରାୟିକ ବା ଅନ୍ତର୍ନିହିତ ଅର୍ଥ । ସେହି ପରମ୍ପରାରେ ବହୁକାଳରୁ ବୌଦ୍ଧସାହିତ୍ୟରେ ସନ୍ଧାଭାଷାର ପ୍ରୟୋଗ ଚାଲିଆସିଛି ଏବଂ ତାହା ହିଁ ସିଦ୍ଧାଚାର୍ଯ୍ୟଗଣ ଅନୁସରଣ କରିଛନ୍ତି । (୧)

ପଣ୍ଡିତ ବିଧୁଶେଖରଙ୍କ ଏହି ମତ ପ୍ରକାଶିତ ହେବା ସଙ୍ଗେ ସଙ୍ଗେ ତତ୍କାଳୀନ ବହୁ ଗବେଷକଙ୍କର ସମର୍ଥନ ଲାଭ କରିଥିଲା । ଡଃ ବାଗ୍‌ଚୀ ହେବଜ୍ରତନ୍ତ୍ରର ପ୍ରମାଣ ଦେଇ ଦର୍ଶାଇଦେଲେ ଯେ, ପ୍ରକୃତ ଶବ୍ଦ ସନ୍ଧାଭାଷା ଓ ତା'ର ଅର୍ଥ ଅଭିପ୍ରାୟିକଭାଷା । ହେବଜ୍ରତନ୍ତ୍ରର ଯେଉଁ ଚୀନା ଅନୁବାଦ ତାଙ୍କୁ ମିଳିଥିଲା, ତା'ର ଷଡ଼ୋଦଶ ଅଧ୍ୟାୟରେ ସନ୍ଧାଭାଷା ବିଷୟରେ ଆଲୋଚନା ଅଛି । ଏହି ଅଧ୍ୟାୟଟିର ଶୀର୍ଷକ ହେଉଛି—ହେବଜ୍ର ସର୍ବତନ୍ତ୍ର ନିଦାନ ସନ୍ଧାଭାଷାନାମ ପଟଲଃ । ଏଥିରେ ସନ୍ଧାଭାଷାକୁ 'ମହାଭାଷଂ ସମୟସଙ୍କେତ ବିସ୍ତରମ୍' ରୂପେ ବର୍ଣ୍ଣନା କରାଯାଇଛି । ଏହି ଅଧ୍ୟାୟରେ ତଥା ପରବର୍ତ୍ତୀ ଅଧ୍ୟାୟରେ ସନ୍ଧାଭାଷାର ବହୁ ଶବ୍ଦର ଅର୍ଥ ପ୍ରଦତ୍ତ ହୋଇଛି । ଏହି ଚୀନା ଅନୁବାଦ ଗ୍ରନ୍ଥରେ ସନ୍ଧା ଶବ୍ଦର ଅର୍ଥ ହେଉଛି ଔପାୟିକ ଓ ଔପଚାରିକ ଭାଷା । (୨) ପୁଣି ଅନ୍ୟତ୍ର ସେ ଲେଖିଛନ୍ତି

---

(୧) I. H. Q. Vol-IV, No, 2. P-287. 1928
(୨) I. H. Q. Vol-VI, No-2: P: 388, 1930

ଯେ, ଚର୍ଯାପଦର ତିବ୍ବତୀ ଅନୁବାଦ ଅନୁସାରେ ପ୍ରକୃତ ଶବ୍ଦ ସନ୍ଧା; କାରଣ ସେଠାରେ ଯେଉଁ ପ୍ରତିଶବ୍ଦ ବ୍ୟବହୃତ ହୋଇଛି, ତା'ରଅର୍ଥ 'Intentional language'ବା ଆଭିପ୍ରାୟିକ ଭାଷା (୧) ଉଇଣ୍ଟରନିତ୍ଜ ପ୍ରମୁଖ ପଣ୍ଡିତଗଣ ମଧ୍ୟ ଏହି ମତଟି ସ୍ୱୀକାର କରି ଶ୍ରୀଯୁକ୍ତ ଶାସ୍ତ୍ରୀଙ୍କ ମତ ପରିହାର କରିଛନ୍ତି । (୨)

ଅନ୍ୟ ପକ୍ଷରେ ଅଧ୍ୟାପକ ମମୀନ୍ଦ୍ର ମୋହନ ବସୁ ଓ ଡଃ ଶଶିଭୂଷଣ ଦାଶଗୁପ୍ତ ପ୍ରମୁଖ ସନ୍ଧ୍ୟା ଶବ୍ଦଟି ଅଶୁଦ୍ଧ ବୋଲି ସ୍ୱୀକାର କରନ୍ତି ନାହିଁ । ଶ୍ରୀ ବସୁଙ୍କ ମତରେ "ସମ୍— ପୂର୍ବକ ଧ୍ୟୈ (ଧ୍ୟାନ କରି)+ଅ+ଆପ୍ (ସ୍ତ୍ରୀ) = ସନ୍ଧ୍ୟା । ସନ୍ଧ୍ୟାଭାଷା ଅର୍ଥେ ବୁଝେ ଚିନ୍ତାକରିୟା ଯେ ଭାଷାର (ପ୍ରଚ୍ଛନ୍ନ) ଅର୍ଥ ସ୍ଥିର କରିତେ ହୟ ।' (୩) ଏବଂ ଡ଼ଃ ଦାଶଗୁପ୍ତଙ୍କ ମତରେ "ମହାମହୋପାଧ୍ୟାୟ ବିଧୁଶେଖର ଶାସ୍ତ୍ରୀ ମହାଶୟ ମନେ କରିୟାଛେନ୍, ଅଶିକ୍ଷିତ ଲିପିକରଗଣେର ପ୍ରମାଦବଶତଃ-ଇ ସନ୍ଧାଭାଷା ପରବର୍ତ୍ତୀକାଲେ ସନ୍ଧ୍ୟାଭାଷାୟ ରୂପାନ୍ତରିତ ହଇୟାଛେ । କିନ୍ତୁ ଏ ବିଷୟେ ଏକଟି ତଥ୍ୟ ଲକ୍ଷ୍ୟ କରିତେ ହଇବେ, ବୌଦ୍ଧତନ୍ତ୍ରେର ଏବଂ ତାହାଦେର ଉପରେ ଟୀକା-ଟିପ୍ପଣୀର ଯେ ସବ ପ୍ରାଚୀନ ପୁଁଥି ଦେଖିୟାଛି, ତାହାର ସର୍ବତ୍ର-ଇ ସନ୍ଧାଭାଷା ଶବ୍ଦଟିକେ ସନ୍ଧ୍ୟାଭାଷା ରୂପେଇ ପାଇୟାଛି । ଆମାର ମନେ ହୟ, ସନ୍ଧାଭାଷା' କଥଟା-ଇ ପରବର୍ତ୍ତୀକାଲେ ଆଭିପ୍ରାୟିକ ଅର୍ଥ ହଇତେ ଅସ୍ପଷ୍ଟ ଆଲୋଆଁଧାରି ଭାଷାର ଏକଟା ଅର୍ଥଇ ଗ୍ରହଣ କରିୟାଛିଲ ଏବଂ ଏଇ ଭାବେଇ ସନ୍ଧାଭାଷା ସନ୍ଧ୍ୟାଭାଷାତେ ରୂପାନ୍ତରିତ ହଇୟା ଗିୟାଛିଲ (୪) । ମାତ୍ର ଡ଼.ଧର୍ମବୀର ଭାରତୀ ଏଥିରେ ଏକମତ ନୁହନ୍ତି । ସେ କହନ୍ତି ଯେ ତାନ୍ତ୍ରିକମାନେ ସଜ୍ଞାନରେ ତାଙ୍କର ରଚନାକୁ ବ୍ୟାକରଣ ଦୋଷଯୁକ୍ତ କରୁଥିଲେ । କାଳଚକ୍ରତନ୍ତ୍ରର ବିମଳପ୍ରଭା ଟୀକାରେ ଉଦ୍ଧୃତ ଅଂଶରୁ ଉଦାହରଣ ଦେଇ ସେ ଲେଖିଛନ୍ତି ଯେ, ଅପଶବ୍ଦ, ବୃତ୍ତିଭଙ୍ଗ, ବର୍ଣ୍ଣସ୍ୱର ଲୋପ, ହ୍ରସ୍ୱକୁ ଦୀର୍ଘ ଓ ଦୀର୍ଘକୁ ହ୍ରସ୍ୱ କରିବା ଆଦି ତନ୍ତ୍ର ପାଇଁ ବୈଧ । ଏଣୁ 'ସନ୍ଧା' ଶବ୍ଦକୁ ସେମାନେ "ସନ୍ଧ୍ୟା" ଲେଖିଥିବା ସମୀଚୀନ । (୫)

ପଣ୍ଡିତ ଶାନ୍ତିଭିକ୍ଷୁ ଶାସ୍ତ୍ରୀ 'ସନ୍ଧା' ଶବ୍ଦର ଆଉ ଏକ ନୂତନ ବ୍ୟାଖ୍ୟା ପ୍ରଦାନ କରିଛନ୍ତି । ତାଙ୍କ ମତରେ 'ସନ୍ଧା' ଶବ୍ଦର ଅର୍ଥ ସନ୍ଧି (union) ହୋଇପାରେ । ବସ୍ତୁତଃ

---

(୧) Calcutta Oriental Journal, Vol-I, 1934.
(୨) I. H. Q. Vol-IX No-I.P.1.
(୩) ଚର୍ଯାପଦ, ଭୂମିକା—ପୃ· ୳ (କଲିକତା ବିଶ୍ୱବିଦ୍ୟାଳୟ, ୧୯୩୪)
(୪) ବୌଦ୍ଧଧର୍ମ ଓ ଚର୍ଯାଗୀତି, ପୃ: ୧୩୨ (କଲିକତା, ୧୩୬୪) । ଦ୍ରଷ୍ଟବ୍ୟ— Obscure Religious Cults, Appendix-E.
(୫) ସିଦ୍ଧସାହିତ୍ୟ, ପୃ ୨୬ (ଏଲାହାବାଦ, ୧୯୫୫)

ଏହି ସ୍ୱପାରେ ବାହ୍ୟ ଓ ଗୁହ୍ୟ ଦୁଇଟି ଅର୍ଥର ସନ୍ଧି ହୋଇଥାଏ । (୧) । ଡଃ ସୁକୁମାର ସେନ ସନ୍ଧାଭାଷାର ବ୍ୟାଖ୍ୟା ଏହିପରି ପ୍ରଦାନ କରିଛନ୍ତି—"ଯେ ଭାଷାସ୍ଥ ବା ଶବ୍ଦେ ଅଭୀଷ୍ଟ ଅର୍ଥ ଅନୁଧାନ କରିସ୍ଥା ଅର୍ଥାତ୍ ମର୍ମଜ୍ଞ ହଇସ୍ଥା ବୁଝିତେ ହୟ ଅଥବା ଯେ ଭାଷାୟ ଶବ୍ଦେର ଅର୍ଥ ବିଶେଷ ଭାବେ ନିର୍ଦ୍ଦିଷ୍ଟ, ତାହା-ଇ ସନ୍ଧ୍ୟା- (ସନ୍ଧା) ଭାଷା ।" (୨) ଶବ୍ଦଟି ସନ୍ଧ୍ୟା ହେଉ ବା ସନ୍ଧା ହେଉ, ଏହାହିଁ ବୋଧହୁଏ ପ୍ରକୃତ ଅର୍ଥ ।

ସନ୍ଧ୍ୟାଭାଷା ପ୍ରୟୋଗର ପରମ୍ପରା ବହୁ ପ୍ରାଚୀନ । ବୈଦିକ ସାହିତ୍ୟରେ, ଋଗ୍‌ବେଦ, ଅଥର୍ବବେଦ ଓ ବ୍ରାହ୍ମଣ ଗ୍ରନ୍ଥମାନଙ୍କରେ ଦ୍ୱୈତଅର୍ଥମୂଳ୍ୟ ରଚନା ପରିଦୃଷ୍ଟ ହୁଏ । ସରହପାଙ୍କ ଦୋହାକୋଷର ଟୀକାକାର ଅଦ୍ୱୟବଜ୍ରଙ୍କର ଉକ୍ତିରୁ—"ତସ୍ୟ ଶ୍ରେତଚ୍ଛାଗ ନିପାତନସ୍ୟା ନରକାଦିଦୁଃଖମନୁଭବନ୍ତି । ସନ୍ଧ୍ୟାଭାଷାମଜାନାନତ୍ୱାତ୍ ଚ" (୩) ଏହାର ପ୍ରମାଣ ମିଳେ । ସେହିପରି ବୌଦ୍ଧ ସାହିତ୍ୟରେ, ସଦ୍ଧର୍ମପୁଣ୍ଡରୀକ ଓ ଲଙ୍କାବତାରାଦି ଗ୍ରନ୍ଥରେ ଏହି ଭାଷାର ପ୍ରୟୋଗ ପରିଦୃଷ୍ଟ ହୁଏ । କିନ୍ତୁ ତନ୍ତ୍ରସାହିତ୍ୟରେ ହିଁ ସନ୍ଧାଭାଷାର ବ୍ୟାପକ ବ୍ୟବହାର ହୋଇଛି ଏବଂ ତନ୍ତ୍ରର ତତ୍ତ୍ୱ ମୁଖ୍ୟତଃ ଗୁହ୍ୟ ଓ ଗୂଢ଼ ହୋଇଥିବାରୁ ଏହା ତହିଁରେ ସାର୍ଥକତା ଲାଭ କରିଛି । ହେବଜ୍ର ତନ୍ତ୍ର ଓ ଗୁହ୍ୟ ସମାଜତନ୍ତ୍ରରେ ଏକ ଏକ ଅଧ୍ୟାୟ କେବଳ ସନ୍ଧାଭାଷାର ବ୍ୟାଖ୍ୟା ପ୍ରଦାନ ନିମିତ୍ତ ଲେଖାଯାଇଛି । (୪)

ଚର୍ଯ୍ୟାଗୀତିକାରେ ବ୍ୟବହୃତ ସନ୍ଧାଭାଷା ତାନ୍ତ୍ରିକ-ବୌଦ୍ଧ-ସାହିତ୍ୟର ପରମ୍ପରାଶ୍ରିତ । ଏହାର ରଚୟିତାମାନେ ତାନ୍ତ୍ରିକବୌଦ୍ଧ ସହଜିୟା ଥିଲେ ଓ ସେମାନଙ୍କ ସାଧନା ଗୁହ୍ୟସାଧନାର ଅନ୍ତର୍ଗତ । ସେମାନେ ଯେ ଏକ ଗହନ, ଗୁହ୍ୟ ଭାଷାରେ ଲେଖୁଥିଲେ, ତାହା ସରହପାଦ ସ୍ୱୀକାର କରିଯାଇଛନ୍ତି । "ସରହେ ଗହଣ ଗୁହିର ଭାସ କହିଅ" (ଦୋହା) । ସିଦ୍ଧସାହିତ୍ୟରେ ସାଧକମାନଙ୍କୁ ଗୁରୁ ଉପଦେଶ ଗ୍ରହଣ ପୂର୍ବକ ଧର୍ମର ନିଗୂଢ଼ ତତ୍ତ୍ୱ ଉପଲବ୍‌ଧି କରିବାକୁ ବାରମ୍ବାର ନିର୍ଦ୍ଦେଶ ଦିଆଯାଇଛି । ସିଦ୍ଧକବିଗଣ ସାଧାରଣ ଶବ୍ଦରେ ଏକ ଏକ ବିଶିଷ୍ଟ ଅର୍ଥର ଆରୋପ କରିଛନ୍ତି । ଫଳତଃ ତାଙ୍କର ରଚନାରେ ଶବ୍ଦର ସାଧାରଣ ବା ଇତିବୃତ୍ତ୍ୟାତ୍ମକ ଅର୍ଥର ଅନ୍ତରାଳରେ ଆଉ ଏକ ଅର୍ଥ ପ୍ରଚ୍ଛନ୍ନ ଭାବରେ ନିହିତ ଥାଏ । ସାଧକ ଗୁରୁ ସାହାଯ୍ୟରେ ସେହି "ପ୍ରାଇଭେଟ କୋଡ୍‌" ବୁଝିବାକୁ ସମର୍ଥ ହୁଏ । ଦୃଷ୍ଟାନ୍ତ ସ୍ୱରୂପ ଏହି ପଦଟିର ଅର୍ଥ ପ୍ରତି ଦୃଷ୍ଟି ଦିଆଯାଉ—ମାରିଆ ସାସୁ ନଣନ୍ଦ

(୧) Carya Giti-Kosa, Preface. P XII

(୨) ଚ ଗୀତ, ଭୂମିକା-ପୃ- ୨୩

(୩) ବୌଦ୍ଧଗାନ ଓ ଦୋହା ପୃ ୮୫

(୪) ଦ୍ରଷ୍ଟବ୍ୟ : Journal of the American Oriental Society. Vol 81, 1961-"Intentional Language in the Trantras' by A. Bharati,

ଘରେ ଶାଳୀ । ମାଆ ମାରଆ କାହ୍ନ ଭଇଲ କବାଲୀ (ନଂ ୧୧) । ଏହାର ଆକ୍ଷରିକ ଅର୍ଥ ହେଲା—ଘରେ ଶାଶୁ, ନଣନ୍ଦ, ଶାଳୀ ଓ ମାଆକୁ ମାର (ଅଥବା ସମ୍ଭୋଗ କର) କାହ୍ନୁ କପାଳୀ ହୋଇଲା । କିନ୍ତୁ ଏହାର ମର୍ମାର୍ଥ ହେଲା—ଶାଶୁ କ ଶ୍ୱାସ, ନଣନ୍ଦ କ ଆନନ୍ଦଦାୟୀ ଇନ୍ଦ୍ରିୟାଦ, ଶାଳୀ କ ନିଃଶେଷ କରି ଏବଂ ମାଆ କ ମାୟାକୁ ଛିନ୍ନ କରି କାହ୍ନୁ କାପାଳିକ ହୋଇଲା ।

ଚର୍ଯ୍ୟାର ସନ୍ଧାଭାଷାରେ କେତେକ ବିଶିଷ୍ଟ ଲକ୍ଷଣ ପରିଦୃଷ୍ଟ ହୁଏ । ଡ. ଦାଶଗୁପ୍ତ ଏଥିପାଇଁ କହିଛନ୍ତି ଯେ—"The nature of the Sandha-bhasa of the old Bengali Budhist songs is not however exactly the same as that of the Sandha-bhasa of the Tantric literature, while the Tantras are full of technicalities, the songs are full of enigmas in addition to the technicalities" ( ) । ଡ. ଧର୍ମବୀର ଭାରତୀ ତାଙ୍କର ସିଦ୍ଧ-ସାହିତ୍ୟ' ଗ୍ରନ୍ଥରେ ଏ ସମ୍ପର୍କରେ ବ୍ୟାପକ ଆଲୋଚନା କରିଛନ୍ତି । ଚର୍ଯାର ବ୍ୟବହୃତ ପ୍ରତୀକ ରୂପକ ଓ ସମୂହକୁ ସେ ନାନା ଭାବରେ ବର୍ଗୀକରଣକରିଛନ୍ତି । ଯଥା—ଅର୍ଥ ଓ ଶବ୍ଦ ସାମ୍ୟମୂଳକ ପ୍ରତୀକ (କୁମ୍ଭୀର=କୁମ୍ଭକ, ଶାଶୁ=ଶ୍ୱାସ, ବଧୂ =ଅବଧୂତ), ସାଧର୍ମ୍ୟମୂଳକ ପ୍ରତୀକ (ମୂଷା, ହରିଣ, ଗଜ=ଚିତ୍ତ), ମୌଳିକ ପ୍ରତୀକ (ବୀଣାବାଦନ, ତୁଳାଧୂଣିବା), ସାମାଜିକ ପ୍ରତୀକ (ପଶାଖେଳ, ବିବାହ, ନଦୀପାରି), ଔପମ୍ୟ ମୂଳକ ପ୍ରତୀକ (ଉଚ୍ଚପର୍ବତ=ମେରୁଦଣ୍ଡର ଶୀର୍ଷଦେଶ, ପଟ୍ଟଲମାଦଳ =ଭବନିର୍ବାଣ), ସାଙ୍ଗ ରୂପକ [ଚର୍ଯା-୨୮ ୫୦,୧୪) ସାଧାରଣ ରୂପକ (ଗଛ, ମେଘ, ସୁନା, କର୍ପୂର, ବେଙ୍ଗ, ସାପ, ଶୃଗାଳ ଇତ୍ୟାଦି)ବିରୋଧମୂଳକ ପ୍ରତୀକ (ଚର୍ଯା-୨,୩୩) । ଡ. ବାଗଚୀ ମଧ୍ୟ ଚର୍ଯାର କେତେକ ପ୍ରତୀକ ରୂପକ ବିଶ୍ଳେଷଣ କରି ଏବଂ କେତେକ ପାରିଭାଷିକ ଶବ୍ଦର ଅର୍ଥ ବ୍ୟାଖ୍ୟା କରି ଚର୍ଯାରେ ବ୍ୟବହୃତ ସନ୍ଧାଭାଷାର ସ୍ୱରୂପ ପ୍ରକାଶ କରିଛନ୍ତି (୨) ।

ଡ. ତାରାପଦ ମୁଖାର୍ଜି ଚର୍ଯାର ସନ୍ଧାଭାଷାରେ ଦୁଇଟି ବିଶେଷ ଧରଣର ରଚନା-ରୀତି ଲକ୍ଷ୍ୟ କରିଛନ୍ତି—(କ) ସଙ୍ଗତ ଆକ୍ଷରିକ ଅର୍ଥ ସହିତ ଗୂଢ଼ାର୍ଥ ନିହିତ ପଦ । ଯଥା : ଗଙ୍ଗା ଯମୁନା ମାଝେଁରେ ବହଇ ନାଇ (ନ ୧୪) । ଏଥିରେ ଗଙ୍ଗା, ଯମୁନା, ନାଇ ତିନୋଟି ଶବ୍ଦର ଗୂଢ଼ାର୍ଥ ଥିବାରୁ ଏଥିରେ ଦୁଇଟି ଅର୍ଥ ସ୍ପଷ୍ଟ । (ଖ) ଅସଙ୍ଗତ ଆକ୍ଷରିକ ଅର୍ଥ ସତ୍ତ୍ୱେ ଗୂଢ଼ାର୍ଥ ନିହିତ ପଦ । ଯଥା : ବଳଦ ବିଆଅଲ ଗବିଆ ବାଝେଁ (ନ,୩୩) ।

---

(୧) Obscure Religious Cults, P. 414.

(୨) Studies in the Tantras Pt. I· P. 27, 61, 74 (Cal. Univesity, 1939.)

ଏଥିରେ ଆପାତତଃ ଦୃଷ୍ଟିରେ ଅର୍ଥସଙ୍ଗତ ଦେଖାଯାଉ ନ ଥିଲେ ହେଁ ବଳଦ ଓ ଗାଈ ଶବ୍ଦ ଦୁଇଟିର ଗୂଢ଼ ଅର୍ଥ ଥିବାରୁ ପଦଟି ଅର୍ଥହୀନ ନୁହେଁ । ମୁନିଦତ୍ତଙ୍କର ଟୀକା ଅନୁଶୀଳନ ପୂର୍ବକ ସେ ପୁଣି ଲକ୍ଷ୍ୟ କରିଛନ୍ତି ଯେ କେତେକ ଶବ୍ଦ ରୂପକାତ୍ମକ (କାଅତରୁ, କରୁଣା ନାବୀ ଇତ୍ୟାଦି) କେତେକ ଶବ୍ଦ ଦ୍ୱାର୍ଥବୋଧକ (ଶାଶୁ, ନଣନ୍ଦ, ମାଆ ଇତ୍ୟାଦି) ଏବଂ କେତେକ ଶବ୍ଦ ରହସ୍ୟାର୍ଥବୋଧକ (ବଳଦ ବିଆଇଲ, ବେଙ୍ଗସ ସାପ ବଢ଼ିଲ ଯାଅ ଇତ୍ୟାଦି) ଚର୍ଯାଗୀତିକା ସଂକଳନରେ ଶେଷଭାଗ ଅପେକ୍ଷା ପ୍ରଥମ ଭାଗରେ ସନ୍ଧା ଭାଷାର ପ୍ରୟୋଗ ଅଧିକ ପରିଲକ୍ଷିତ ହେଉଥିବାରୁ ଡ. ମୁଖାର୍ଜି ମନେ କରନ୍ତି ଯେ ସମ୍ଭବତଃ ସମୟକ୍ରମେ ପଦରଚନାରେ ସରଳତା ସୃଷ୍ଟି କରାଯାଇଥିଲା । (୧) ।

ସିଦ୍ଧାଚାର୍ଯ୍ୟଗଣ ତଥା ତାଙ୍କର ପୂର୍ବସୂରୀ ତାନ୍ତ୍ରିକ ସାଧକଗଣ ଏପରି ଏକ ବିଶେଷ ଧରଣର ଭାଷାପ୍ରୟୋଗ କରିବା ମୂଳରେ ପ୍ରଧାନ ଲକ୍ଷ୍ୟ ଥିଲା ତାଙ୍କର ଧର୍ମାଚରଣରେ ଶ୍ରଦ୍ଧାହୀନ ତଥା ସାଧାରଣ ଜନତାଠାରୁ ସାଧନାର ଗୂଢ଼ତତ୍ତ୍ୱମାନ ଗୋପନ ରଖିବା । କାରଣ ସେମାନଙ୍କର ଅନୁସୃତ ଯୌନ ସମ୍ପର୍କିତ ଯୋଗସାଧନା ଲୋକସାଧାରଣରେ ବିକୃତ ଲାଭ କରିବାର ସମ୍ଭାବନା ଥିଲା ବେଶି । ତାନ୍ତ୍ରିକ ସାଧନା ଗୁହ୍ୟ ସାଧନା କେବଳ ଗୁରୁଶିଷ୍ୟ ଅନୁକ୍ରମରେ ପ୍ରଚଳିତ ହେଉଥିଲା । କିନ୍ତୁ ଯେତେବେଳେ ଏକ ଏକ ବିଶିଷ୍ଟ ଗୁରୁଙ୍କର ସିଦ୍ଧାନ୍ତମାନ ସମ୍ପ୍ରଦାୟଭୁକ୍ତ ସମସ୍ତ ସାଧକମାନଙ୍କର ଅବଗତି ନିମିତ୍ତ ଲିପିବଦ୍ଧ ହେବାର ଆବଶ୍ୟକତା ଅନୁଭୂତ ହେଲା, ସେତେବେଳେ ସେଥିପାଇଁ ତଦନୁରୂପ ଏକ ସାଂକେତିକ ଭାଷାର ପ୍ରୟୋଗ ମଧ୍ୟ ଆବଶ୍ୟକ ହୋଇଥିଲା । ତଦ୍ୱାରା କୌଣସି ଅଦୀକ୍ଷିତ ସାଧାରଣ ବ୍ୟକ୍ତି ସେ ସମସ୍ତ ଲିପିବଦ୍ଧ ରଚନାର ଅଧିକାରୀ ହେଲେ ମଧ୍ୟ ତାର ବାହ୍ମାବର୍ଗ ବୁଝିବାକୁ ସମର୍ଥ ହେବ ନାହିଁ । ଧର୍ମର ଗୋପନୀୟତା ରକ୍ଷାକରିବା ଏକ ମହତ୍ତର କର୍ତ୍ତବ୍ୟ ରୂପେ ବିବେଚିତ ହେଉଥିଲା । ହେବଜ୍ରତନ୍ତ୍ରରେ ଉଲ୍ଲେଖ କରାଯାଇଛି ଯେ ଦୀକ୍ଷିତ ଶିଷ୍ୟ-ଗଣ ସିଦ୍ଧଭାଷାର ପ୍ରୟୋଗ ନ କଲେ ଯୋଗିନୀମାନଂକର କୋପଦୃଷ୍ଟିରେ ପଡ଼ିବେ (୨) । ଏ ସମ୍ପର୍କରେ ପଣ୍ଡିତ ରାହୁଲ ସାଂକୃତ୍ୟାୟନଂକ ମତ ପ୍ରଣିଧେୟ । ସେ ଲେଖିଛନ୍ତି ଯେ, ସିଦ୍ଧମାନେ ଭାଷାରେ କବିତା ଲେଖି ନିଜର ବିଚାରମାନ ଜନତାର ନିକଟବର୍ତ୍ତୀ କରି-ଥିଲେ ସତ୍ୟ, ତଥାପି ଭୟ ଥିଲା ଯେ କାଳେ ବିରୋଧିମାନେ ସେମାନଂକର ଆଚାର-ବିରୋଧି-କର୍ମକଳାପସବୁ ଖୋଲିଦେଇ ଜନତା ମଧ୍ୟରେ ଘୃଣା ଜନ୍ମାଇଦେବେ । ତେଣୁ ସେମାନେ

(୧) O. B. L. T. P. 11-16.
(୨) DL Snellgrove-The Hevajara Tantra Pt-11 P-62 (1969)
(ସ୍ୱସମୟ ବିଦାଂ ପ୍ରାପ୍ତି ଯଦ୍ଧ କ ଭାକ୍ଷେତ୍ ଇଦଂ ବଚଃ,ତଦା କ୍ଷୋଭ ପ୍ରକୁର୍ବନ୍ତି ଯୋଗୀନ୍ୟା ଶୃଭୁଃ ପୀଠଜାଃ ।

କେବଳ ଏକ ବିଶେଷ ଯୋଗ୍ୟତାପ୍ରାପ୍ତ ଲୋକମାନଂଙ୍କ ବୁଝିବା ପାଇଁ ଲେଖିଥିଲେ ଯେ, ଯାହାର ଅର୍ଥ ବାମାଗ୍ନର ଓ ଯୋଗାଗ୍ନର ଉଭୟ ମାର୍ଗରେ ଚଳିବ (୧) । ପ୍ରସଙ୍ଗତଃ ଏଠାରେ ଉଲ୍ଲେଖ କରାଯାଇପାରେ, ଯୀଶୁଖ୍ରୀଷ୍ଟ ମଧ୍ୟ ତାଂଙ୍କ ଧର୍ମସଂକ୍ରାନ୍ତୀୟ ଉପଦେଶାବଳୀ ଏକପ୍ରକାର ଦ୍ୱାର୍ଥବୋଧକ ଭାଷାରେ ପ୍ରକାଶ କରୁଥିଲେ । ତାଂକର ମଧ୍ୟ ଆଶଂକା ଥିଲା, ଯେପରି ଅବିଶ୍ୱାସୀମାନେ ଏହାର ଅସଲ ମର୍ମ ବୁଝିବାକୁ ଅସମର୍ଥ ହୁଅନ୍ତୁ । ସେଥିପାଇଁ ଡ. ଦାଶଗୁପ୍ତ ଯୀଶୁଙ୍କର ଏହି ଭାଷା ସମ୍ପର୍କରେ କହିଛନ୍ତି ଯେ—"Which is also nothing but a form of Sandhya Bhasa." (୨) ।

ଚର୍ଯାର ସନ୍ଧ୍ୟାରୀତିର ବୈଚିତ୍ର୍ୟ ଅବବୋଧ ନିମିତ୍ତ ଦୃଷ୍ଟାନ୍ତ ସ୍ୱରୂପ ହୁଇଟି ଚର୍ଯାଗୀତିକା ଏଠାରେ ଉଦ୍ଧୃତ କରାଗଲା—

ଦୁଲି ଦୁହି ପିଟା ଧରଣ ନ ଜାଅ ।
ରୁଖେର ତେନ୍ତଲି କୁମ୍ଭୀରେ ଖାଅ ।।
ଆଙ୍ଗଣ ଘରପଣ ସୁନ ଭୋ ବିଆତୀ ।
କାନେଟ ଚୌରି ନିଲ ଅଧରାତୀ ।।
ସୁସୁରା ନିଦ ଗେଲ ବାହୁଡ଼ି ଜାଗଅ ।
କାନେଟ ଚୋରେ ନିଲ କା ଗଇ ମାଗଅ ।।
ଦିବସଇ ବହୁଡ଼ୀ କାହ୍ନଇ ଡରେ ଭାଅ ।
ରାତି ଭଇଲେ କାମରୁ ଜାଅ ।।
ଅଇସନ ଚର୍ଯା କୁକ୍କୁରୀ ପାଏଁ ଗାଇଉ ।
କୋଡ଼ି ମାଝେଁ ଏକୁ ହିଅହିଁ ସମାଇଉ ।। (ନ-୨)

କଚ୍ଛିମ ଦୁହିଁ ଦୁଧ ଠେକରେ ଧରୁ ନାହିଁ । ଗଛରେ ତେନ୍ତୁଳି କୁମ୍ଭୀର ଖାଏ । ଅଗଣା ହେଲା ଘର, ଶୁଣ ଲୋ ବେଧି ! ଅଧରାତିରେ ଚୋର କାନ କାଟି ନେଲା । ଶଶୁର ଶୋଇଲା, ବୋହୂ ଜାଗଇ । ଚୋର କାନ କାଟିନେଲା କାହାକୁ ଯାଇ ମାଗିବ ? ଦିନରେ ବୋହୂଟି କୁଆ ରାବିଲେ ଡ଼ରେ, ମାତ୍ର ରାତି ହେଲେ କାମରୂପ ଯାଏ । ଏପରି ଗୀତ କୁକ୍କୁରୀପା ଗାଇଲେ । କୋଡ଼ିଏ ଲୋକ ମଧ୍ୟରୁ ଜଣେ ହେଲେ ବୁଝିବ ।

ସନ୍ଧ୍ୟା-ଅର୍ଥ—ଦୁଲି—ବାମ, ଦକ୍ଷିଣ ନାଡ଼ିଦ୍ୱୟ, ଦୁଧ—ବୋଧିଚିତ୍ତ, ପିଟା—ନାଭିସ୍ଥ ମଣିପୁରଚକ୍ର, ରୁଖ—ଦେହ, ତେନ୍ତଲି—ଶୁକ୍ରରୂପ ବୋଧିଚିତ୍ତ, କୁମ୍ଭୀର—କୁମ୍ଭକଯୋଗ, ବିଆତୀ—ଅବଧୂତିକା, କାନେଟ—ଚିତ୍ତଗତ ଦୋଷସମୂହ, ଚୋର—ସହଜାନନ୍ଦ, ଅଧରାତି—ସମାଧି ଅବସ୍ଥା, ଆଙ୍ଗଣ—ବିରମାନନ୍ଦ, ଘର—ଉଷ୍ଣୀଷ

(୧) ପୁରାତତ୍ତ୍ୱ ନିବନ୍ଧାବଳୀ, ପୃ-୧୬୦
(୨) Obscure Religious Cults, P, 413

କମଳ, ଶଶୁର—ପ୍ରାଣବାୟୁ, ଦବସ—ପ୍ରବୃତ୍ତି ପ୍ରଭାବିତ ଅବସ୍ଥା, ରାତ—ନିବୃତ୍ତି ପ୍ରଭାବିତ ଅବସ୍ଥା, କାମରୁ—ମହାସୁଖଚକ୍ର ।

ଟାଲତ ମୋର ଘର ନାହି ପଡ଼ବେଶୀ ।
ହାଡ଼ୀତ ଭାତ ନାହିଁ ନିତି ଆବେଶୀ ।।
ବେଙ୍ଗସ ସାପ ବଢ଼ିହିଲ ଜାଅ ।
ଦୁହିଲ ଦୁଧୁକି ବେଣ୍ଟେ ସମାଅ ।।
ବଲଦ ବିଆଅଲ ଗବିଆ ବାଁଝେ ।
ପିଟା ଦୁହିଅଇ ଏତିଣା ସାଁଝେ ।।
ଜୋ ସୋ ବୁଧୀ ସୋଇ ନିବୁଧୀ ।
ଜୋ ସୋ ଚୌର ସୋଇ ସାଧୀ ।।
ନିତି ନିତି ଷିଆଲା ସିହେ ସମ ଜୁଝଅ ।
ଢେଣ୍ଢଣ ପାଏର ଗୀତ ବିରଲେ ବୁଝଅ । ୨-୩୩ ।

ଟାଳୁ ଉପରେ ମୋର ଘର, ପଡ଼ୋଶୀ କେହି ନାହିଁ । ହାଣ୍ଡିରେ ଭାତ ନାହିଁ, ନିତି ଅତିଥି । ବେଙ୍ଗ ସାପକୁ ବଢ଼ି ଯାଇଛି । ଦୁହିଁଲା ଦୁଧ କଣ ବେଣ୍ଟରେ ପଶେ ? ବଳଦ ବେଇଲା, ଗାଈ ବାଞ୍ଝ । ତିସନ୍ଧ୍ୟାରେ ତାହା ଠେକରେ ଦୁହାଁ ହୁଏ । ଯେ ବୁଦ୍ଧିଆ ସେ ହିଁ ବୋକା, ଯେ ଚୋର ସେ ହିଁ ସାଧୁ । ନିତି ନିତି ଶିଆଳ ସିଂହ ସାଙ୍ଗରେ ଯୁଦ୍ଧ କରୁଛି । ଢେଣ୍ଢଣପାଦଙ୍କର ଏ ଗୀତ ଖୁବ୍ କମ୍ ବୁଝାଯାଏ ।

ସନ୍ଧ୍ୟା-ଅର୍ଥ :—ଟାଳ—ମହାସୁଖଚକ୍ର, ପ୍ରତିବେଶୀ—ଚନ୍ଦ୍ର, ସୂର୍ଯ୍ୟ, ହାଣ୍ଡି—କାୟା, ଭାତ—ସଂବୃତ୍ତି ବୋଧିଚିତ୍ତ, ଆବେଶୀ—ନିତ୍ୟପ୍ରବେଶକାରୀ ସାଧକ ସ୍ୱୟଂ, ବେଙ୍ଗ—ପ୍ରଭାସ୍ୱରଶୂନ୍ୟ, ସାପ—ବିଜ୍ଞାନ ଶୃଙ୍ଖଳା, ଦୁଧ—ବୋଧିଚିତ୍ତ; ବେଣ୍ଟ—ମହାସୁଖଚକ୍ର, ବଳଦ—ସଂବୃତ୍ତବୋଧିଚିତ୍ତ, ବେଇବା—ଭବଚକ୍ର ନିର୍ମାଣ କରିବା, ଗାଈ—ନୈରାତ୍ମା, ପିଟ—ଦୋଷର ଆଧାରସ୍ୱରୂପ ମନ, ଦୁହିଁବା—ନିଃସ୍ୱଭାବୀକରଣ, ତିସନ୍ଧ୍ୟା—ଅହର୍ନିଶି, ଶୃଗାଳ—ମରଣାଦି ଭୀତ ଚିତ୍ତ, ସିଂହ—ସହଜାନନ୍ଦ, ବୁଦ୍ଧିଆ—ସବିକଳ୍ପ ଚିତ୍ତ ଜ୍ଞାନସମ୍ପନ୍ନ । ଚୌର—ସବିକଳ୍ପ ଚିତ୍ତର ବିଷୟସୁଖ ଅପହରଣକାରୀ ।

ସନ୍ଧ୍ୟାଭାଷା ସାଧାରଣ ଭାବପ୍ରକାଶର ମାଧ୍ୟମସ୍ୱରୂପ ଏକ ସାମାଜିକ ବା ଆଞ୍ଚଳିକ ଭାଷା ନୁହେଁ; ଏହା ଗୁହ୍ୟ-ସାଧନାପଦ୍ଧତି ଓ ଅନୁଭୂତି ପ୍ରକାଶ ପାଇଁ ଏକ ପରିକଳ୍ପିତ ମାଧ୍ୟମ । ଏହା ଏକ ସାଙ୍କେତିକ ଭାଷା । ଯେଉଁଥିରେ ସାଧାରଣ ଶବ୍ଦରେ ଗୂଢ଼ ଅର୍ଥର ଆରୋପ କରାଯାଇ ଥାଏ ଏବଂ ସମଗ୍ର ରଚନାରେ ସାଧାରଣ ବୋଧଗମ୍ୟ ବାହ୍ୟ ଅର୍ଥର ଅନ୍ତରାଳରେ ଏକ ଅଭୀଷ୍ଟ ମାର୍ମିକ ଅର୍ଥ ପ୍ରଚ୍ଛନ୍ନ ରୂପେ ନିହିତ ଥାଏ । ଏଣୁ ଏହି ଭାଷା ଯଥାର୍ଥରେ ଏକ ଆଭିପ୍ରାୟିକ ବା ଅଭିସନ୍ଧିମୂଳକ ଭାଷା । ଏହାର ଅର୍ଥ ସମ୍ୟକ ରୂପେ

ଅନୁଧ୍ୟାନ ଦ୍ୱାରା ପ୍ରତିଭାତ ହୋଇଥାଏ । ସନ୍ଧ୍ୟା ସମୟରେ ଆଲୋକ ଅନ୍ଧାର ସମ୍ମିଶ୍ରଣରେ ଯେପରି ବସ୍ତୁବିଶେଷ ଅଧା ଦେଖାଗଲେ ଅଧା ଲୁଚି ରହେ, ସେହିପରି ଏହାର ଅର୍ଥ କିଛି ଅବୁଝା ରହିଯାଏ । ବହୁ ପ୍ରାଚୀନ କାଳରେ ଏ ଦେଶର ସିଦ୍ଧସାଧକଗଣ ଧର୍ମର ଗୂଢ଼-ତଥ୍ୟମାନ ଏହି ଭାଷାରେ ପ୍ରକାଶ କରିଯାଇଛନ୍ତି ଏବଂ ଏହା ଗୁରୁଶିଷ୍ୟ ପରମ୍ପରାରେ ବର୍ତ୍ତମାନ ପୁଦ୍ଧା ପ୍ରଚଳିତ ରହିଆସୁଛି । ସଂସ୍କୃତ, ଅପଭ୍ରଂଶ ତଥା ଆଧୁନିକ ପ୍ରାଦେଶିକ ସାହିତ୍ୟରେ ସନ୍ଧାଭାଷାର ରଚନାବଳୀ ଏ ଦେଶର ସାଧନା ଓ ସିଦ୍ଧିର ଅମୂଲ୍ୟ ସମ୍ପଦରେ ପରିପୂର୍ଣ୍ଣ । (୧)

## ୧୧

ସିଦ୍ଧାଚାର୍ଯ୍ୟମାନଙ୍କର ରଚନା ଚର୍ଯ୍ୟାଗୀତିକା ବ୍ୟତୀତ ଆଉ ଦୁଇଟି ରୂପରେ ମିଳେ—ଦୋହା ଓ ବଜ୍ରଗୀତ । ଦୋହା ସଂଗ୍ରହର ନାମ 'ଦୋହାକୋଷ' । ଅନେକେ ମନେକରନ୍ତି, ସିଦ୍ଧାଚାର୍ଯ୍ୟମାନଙ୍କର ଧର୍ମ ଓ ଦର୍ଶନର ଯଥାର୍ଥ ପରିଚୟ ଦୋହାକୋଷରୁ ହିଁ ମିଳିଥାଏ । ଦୋହାର ଭାଷା ପ୍ରକୃତ ଅପଭ୍ରଂଶ । ଶହୀଦୁଲ୍ଲାହଙ୍କ ମତରେ ଏହା ମାଗଧୀ ଓ ବାଗ୍‌ଚୀଙ୍କ ମତରେ ଏହା ଶୌରସେନୀ । ସରହପା, କାହ୍ନୁପା ଓ ତିଲୋପାଙ୍କ ଦୋହାକୋଷ ଆବିଷ୍କୃତ ହୋଇଛି । ନାଡ଼ୋପା, ଶାନ୍ତିପା ପ୍ରଭୃତିଙ୍କର କେତେକ ଦୋହାର ମଧ୍ୟ ସନ୍ଧାନ ମିଳିଛି । ପଣ୍ଡିତ ହରପ୍ରସାଦଙ୍କ ପରେ ଦୋହା ସଂପର୍କରେ ସବିଶେଷ କାର୍ଯ୍ୟ କରିଛନ୍ତି ଶହୀଦୁଲ୍ଲାହ, ବାଗ୍‌ଚୀ ଓ ସାଂକୃତ୍ୟାୟନ । ହରପ୍ରସାଦ କାହ୍ନୁପାଙ୍କ ଦୋହା ଓ ମେଖଳାଟୀକା ପ୍ରକାଶ କରିଥିଲେ । ତେଙ୍ଗୁରରେ ସୁରକ୍ଷିତ ତିବ୍ବତୀ ରୂପାନ୍ତର ସଙ୍ଗେ ମିଳାଇ ତାର ଶୁଦ୍ଧପାଠ ନିର୍ଦ୍ଧାରଣ କଲେ ଡ. ଶହୀଦୁଲ୍ଲାହ । ତା ପରେ ଡ଼. ବାଗ୍‌ଚୀ 'ଗୁହ୍ୟେନ୍ଦ୍ରତିଲକ ତନ୍ତ୍ର'ରେ ପାଠାନ୍ତର ଦେଖି ପୁଣି ଏହାର ପାଠ ନିର୍ଦ୍ଧାରଣ କଲେ । ଶ୍ରୀଯୁକ୍ତ ଶାସ୍ତ୍ରୀ ସରହପାଙ୍କ ୧୧୬ ଦୋହା ଓ ସହଜାମ୍ନାୟ ପଞ୍ଜିକା ଟୀକା ପ୍ରକାଶ କରିଥିଲେ । ଶହୀଦୁଲ୍ଲାଙ୍କ ତିବ୍ବତୀ ରୂପାନ୍ତର ସାହାଯ୍ୟରେ ଏହା ସଂଶୋଧନ କରିଥିଲେ । ବାଗ୍‌ଚୀ ନେପାଳରୁ ଆଉ ଦୁଇଟି ପୋଥି ପାଇ ଏହା ଉପରେ ଆହୁରି ଅଧିକ କାର୍ଯ୍ୟ କରିଛନ୍ତି । ପରେ ପଣ୍ଡିତ ରାହୁଳ ସାଂକୃତ୍ୟାୟନ ସରହପାଙ୍କ ବିପୁଳ ଦୋହାକୋଷ ପ୍ରକାଶ କରିଛନ୍ତି । ତିଲୋପାଙ୍କର ଦୋହା ଓ ସାରାର୍ଥ ପଞ୍ଜିକା ଟୀକା ପ୍ରଥମେ ବାଗ୍‌ଚୀ ପ୍ରକାଶ କରିଥିଲେ । ସାଧନମାଳା, ହେବଜ୍ରତନ୍ତ୍ର ସେକୋଦ୍ଦେଶ ଟୀକା, ଚର୍ଯ୍ୟାଗୀତିକାର ଟୀକା ପ୍ରଭୃତିରେ ବହୁ ଦୋହାର ଉଦ୍ଧୃତ ପରିଦୃଷ୍ଟ

---

(୧) ଦ୍ରଷ୍ଟବ୍ୟ ସାମ୍ମୁଖ୍ୟ ୧୧୯, ନଭେମ୍ବର, ୧୯୬୪

ହୁଏ । ଡ଼. ବାଗ୍‌ଚୀଙ୍କ ମତରେ ଦୋହାର ଭାଷା ଓ ଭାବ ଚର୍ଯ୍ୟାଗୀତିକା ତୁଳନାରେ ଅପେକ୍ଷାକୃତ ସରଳ ।

ବଜ୍ରଗୀତ ଚର୍ଯ୍ୟାଗୀତର ଅନୁରୂପ । ଗୁହ୍ୟ ଯୌଗିକ ଓ ତାନ୍ତ୍ରିକ ଅନୁଷ୍ଠାନରେ, ମଣ୍ଡଳଚକ୍ରରେ ଗାନ କରାଯାଉଥିଲା । ଯୋଗିନୀଚକ୍ର ଅନୁଷ୍ଠାନରେ ବଜ୍ରଧର ହେରୁକଙ୍କୁ ବଜ୍ରଗୀତିଗାନ କରି ଜାଗ୍ରତ କରାଯାଉଥିଲା । ଏହା ଚର୍ଯ୍ୟାଗୀତି ଠାରୁ ପ୍ରାଚୀନ । ଏହାର ଭାଷା ଅପଭ୍ରଂଶ ଏବଂ ଏହାର ସାହିତ୍ୟିକ ମୂଲ୍ୟ କହାଣି ଉପେକ୍ଷଣୀୟ ନୁହେଁ । ଏଥିରେ ଭଣିତା ନ ଥିବାରୁ ରଚୟିତାମାନଙ୍କର ନାମ ଜଣାଯାଇ ନାହିଁ । ଡ଼. ସୁକୁମାର ସେନ ତିନୋଟି ଗୀତି ପ୍ରକାଶ କରିଛନ୍ତି (୧) । ଡ଼. ଧର୍ମବୀର ଭାରତୀଙ୍କର ବିବରଣୀରୁ ଜଣାଯାଏ— ସାଧନମାଳା, ହେବଜ୍ରତନ୍ତ୍ର, କ୍ରିୟାସମୁଚ୍ଚୟ ପ୍ରଭୃତିରେ ଏପରି ଗୀତି ରହିଛି । ଡ଼. ଭାରତୀ ଏହାକୁ ଦୋହାଗୀତରୂପେ ଆଖ୍ୟାତ କରିଛନ୍ତି (୨) । ପଣ୍ଡିତ ନୀଳକଣ୍ଠଙ୍କର ଏତଦ୍ ସମ୍ପର୍କୀୟ ଅଭିମତ ଦ୍ରଷ୍ଟବ୍ୟ । (୩)

## ୧୨

ଚର୍ଯ୍ୟାଗୀତିକାର ବିସ୍ତୃତ ଆଲୋଚନାର ସୂତ୍ରପାତ ବହୁ ପ୍ରାଚୀନ କାଳରୁ ହୋଇଥିଲା । ପ୍ରାୟ ୧୨—୧୩ଶ ଶତାବ୍ଦୀରେ ଏହାର ସଂସ୍କୃତ ଟୀକା ଲିଖିତ ହୋଇଥିଲା । ଶାସ୍ତ୍ରୀ ନେପାଳ ଦରବାରରୁ ଯେଉଁ ଚର୍ଯ୍ୟାଗୀତିକା-ସଂଗ୍ରହ ପାଇଥିଲେ, ସେ ପୋଥିର ପୁଷ୍ପିକା ଅଂଶଟି ନଷ୍ଟ ହୋଇଯାଇଥିବାରୁ ତହିଁରୁ ଟୀକାକାରଙ୍କର ପରିଚୟ ମିଳି ନ ଥିଲା । ଡ଼. ବାଗ୍‌ଚୀ ତିବ୍ବତୀ ଅନୁବାଦରେ "ଚର୍ଯ୍ୟାଗୀତିକୋଷ ବୃତ୍ତିନାମ" ଆବିଷ୍କାର କରିବା ଫଳରେ ଜଣାପଡ଼ିଲା ଯେ, ଟୀକାକାରଙ୍କ ନାମ ମୁନିଦତ୍ତ । ତିବ୍ବତୀ ଅନୁବାଦ ଅନୁସାରେ ପୋଥିର ପୁଷ୍ପିକା ଏପରି ଥିଲା—(୧)

ତତ୍ତ୍ୱାନୁତତନାଂ ଚ ବସ୍ତୁରତ୍ନାନାଂ ଚର୍ଯ୍ୟାଶତେନାକୃତଗୀତିକାନାଂ ।
ସର୍ବେଷୁ ସଂବୋଧବିସ୍ତରଣାର୍ଥଂ କୋଷଂ ବୁଧାଃ ସଂରଚୟାଂବଭୂବୁଃ ॥

---

(୧) Indian Linguistics Vol. IX, P. 33.
(୨) ସିଦ୍ଧସାହିତ୍ୟ, ପୃ. ୨୮ (ଏଲାହାବାଦ, ୧୯୫୫)
(୩) ଓଡ଼ିଆ ସାହିତ୍ୟର କ୍ରମପରିଣାମ, ୧ମ ଭାଗ, ପୃ. ୧୫୧

(୧) ଚର୍ଯ୍ୟାଗୀତି କୋଷ, ପୃ-୧୭୫

ଅର୍ଥସ୍ୟ ତସ୍ମାନ୍ ମୁନିଦତ୍ତକେନ ଶିଷ୍ୟାବବୋଧପ୍ରତିପାଦନାୟ ।
ଜ୍ଞାନାୟ ସର୍ବସ୍ୟ ତଥୈବ ଯୋଽସ୍ୟଂ କୋଷସ୍ୟ ଗ୍ରନ୍ଥଃ ପ୍ରକଟୀକୃତୋଽତ ।।
ସତ୍ପୁରୁଷାବବୋଧାୟ ଟୀକାଂ କୃତା ହ୍ୟପାର୍ଜିତଂ ।
ମୁନିଦତ୍ତେନ ଯତ୍ପୁଣ୍ୟଂ ତେନାସ୍ତୁ ସକଳୋ ଜନଃ ।।

ମୁନିଦତ୍ତ ଜଣେ ଅତି ପଣ୍ଡିତ ବ୍ୟକ୍ତି ଥିଲେ । ତାଙ୍କ ଟୀକାରେ ୨୬ଟି ତାନ୍ତ୍ରିକଗ୍ରନ୍ଥରୁ ଉଦ୍ଧୃତି ଅଛି ଏବଂ ବହୁ ଗ୍ରନ୍ଥମାନଙ୍କର ଉକ୍ତି ଉଦ୍ଧୃତ ହୋଇଛି । ମଣୀନ୍ଦ୍ରମୋହନ ବସୁ ଯଥାର୍ଥରେ କହିଛନ୍ତି ଯେ, ପଦଗୁଡ଼ିକର ମର୍ମାର୍ଥ ସେ ଯେପରି ବ୍ୟାଖ୍ୟା କରିଛନ୍ତି, ସେଥିରୁ ଜଣାଯାଏ ଯେ ସେ ସଦ୍‌ଗୁରୁ କୃପାରୁ ସହଜିୟା ଧର୍ମତତ୍ତ୍ୱ ବିଶେଷରୂପେ ଅବଗତ ହୋଇଥିଲେ । ଚର୍ଯାତତ୍ତ୍ୱରେ ପ୍ରବେଶ କରିବାପାଇଁ ତାଙ୍କର ନିର୍ମଳଗିରା ଟୀକା ଯଥାର୍ଥତଃ ଏକ ସଦ୍‌ବର୍ତ୍ତି (୧) । ସଂସ୍କୃତରେ ଟୀକାଟି ଲେଖି ସେ ଚର୍ଯାଗୀତିକୋଡ଼ିକୁ ସଂସ୍କୃତ ସାହିତ୍ୟରେ ଏକ ଉଚ୍ଚକୋଟି ସ୍ଥାନ ପ୍ରଦାନ କରିଛନ୍ତି ।

ତେଙ୍ଗୁର ତିବତୀ ଅନୁବାଦରୁ ଆହୁରି ମଧ୍ୟ ଜଣାଯାଏ ଯେ, ପଣ୍ଡିତ ଦୀପଙ୍କର 'ଚର୍ଯାଗୀତିବୃତ୍ତି' ଲେଖିଛନ୍ତି । ଆର୍ଯଦେବଙ୍କର 'ଚର୍ଯାମେଳାପକ ପ୍ରଦୀପ' ଯାହାର ଟୀକା ଲେଖିଛନ୍ତି ଶାକ୍ୟମିତ୍ର, ତାହା ଚର୍ଯାଗୀତିର ବୃତ୍ତି ବୋଲି ଅନୁମାନ ହୁଏ । ଏହା ବ୍ୟତୀତ ମହାଯୋଗୀ ଅଜ ବିରଚିତ 'ଅର୍ଥପ୍ରଦୀପ'ରେ ମହାସୁଖ ଚର୍ଯାଗୀତି ଓ ଦୋହାକୋଷର ବ୍ୟାଖ୍ୟା ମିଳେ । ୧୨ଶରୁ ୧୬ଶ ଶତାବ୍ଦୀ ମଧ୍ୟରେ ତାନ୍ତ୍ରିକଗ୍ରନ୍ଥମାନ ବହୁ ପରିମାଣରେ ତିବତୀ ଭାଷାରେ ଅନୂଦିତ ହୋଇଥିଲା । ତିବତୀ ଅନୁବାଦ ସୂତ୍ରାବଳୀ ଦୁଇ ଭାଗରେ ବିଭକ୍ତ—ଯେଉଁଥିରେ ବୁଦ୍ଧବଚନ ଅଛି, ତାହା କେଙ୍ଗୁର ଏବଂ ଅବଶିଷ୍ଟ ସବୁ ତେଙ୍ଗୁର । ଫରାସୀ ପଣ୍ଡିତ ଅଧ୍ୟାପକ P. Cordier ତେଙ୍ଗୁର ଗ୍ରନ୍ଥମାଳାର ଏକ ସୂଚୀ ପ୍ରସ୍ତୁତ କରିଯାଇଛନ୍ତି । ଡ. ବାଗ୍‌ଚୀ, ଶହୀଦୁଲ୍ଲାହ୍, ସାଙ୍କୃତ୍ୟାୟନ ପ୍ରମୁଖ ତେଙ୍ଗୁରରୁ ଚର୍ଯାଗୀତିକା ଓ ଦୋହାକୋଷ ବିଷୟରେ ବହୁ ତଥ୍ୟ ସଂଗ୍ରହ କରିବାକୁ ସମର୍ଥ ହୋଇଥିଲେ । ତେଙ୍ଗୁରର ଦୁଇଟି ସଂସ୍କରଣ ମିଳେ—Narthang ଓ Sdedge. ଶେଷୋକ୍ତ ସଂସ୍କରଣରେ ଚର୍ଯାଗୀତିର ଅନୁବାଦ ବର୍ତ୍ତମାନ ସୁଦ୍ଧା ଅପ୍ରକାଶିତ । ଡ. ବାଗ୍‌ଚୀ Narthang ସଂସ୍କରଣର ପାଠ ପ୍ରକାଶ କରିଛନ୍ତି । ଡ. ବାଗ୍‌ଚୀଙ୍କ ବିବରଣୀରୁ ଜଣାଯାଏ ଯେ, ମୁନିଦତ୍ତଙ୍କ ଟୀକା ସହିତ ଚର୍ଯାଗୀତିର ତିବତୀ ଅନୁବାଦ କରିଥିଲେ କୀର୍ତ୍ତିଚନ୍ଦ୍ର (ଚନ୍ଦ୍ରକୀର୍ତ୍ତି ?) ନେପାଳର ଜମ୍ବୁ (ସ୍ୱୟମ୍ଭୂ ?) ନଗରରେ (୨) । ଏହାଛଡ଼ା ଆହୁରି କେତେକ ଅନୁବାଦର ସନ୍ଧାନ ମିଳେ । କେତେକ ଚର୍ଯାଗୀତିର ଅନୁବାଦ କରିଥିଲେ ଶୀଳାଭଦ୍ର ଏବଂ 'ଚର୍ଯାମେଳାପକ ପ୍ରଦୀପ'ର ଅନୁବାଦ କରିଥିଲେ ଶ୍ରଦ୍ଧାକର ବର୍ମଣ । ମହାଯୋଗୀ ଅଜ

(୧) ଚର୍ଯାପଦ, ଭୂମିକା ପୃ-୫୮

(୨) Materials for etc, Introduction. P. vi

ସ୍ୱୟଂ ତାଙ୍କର 'ଅର୍ଥପ୍ରଦୀପ'ର ଅନୁବାଦକ । ଚର୍ଯାଗୀତିକା ବହୁସଂଖ୍ୟାରେ ତିବ୍ବତରେ ଅନୁବାଦ ହୋଇଥିବା ଅନୁମେୟ । ବର୍ତ୍ତିମାନ ସୁଦ୍ଧା ଗବେଷକଗଣ ଏହା ଉଦ୍ଧାର କରିବା କାର୍ଯ୍ୟରେ ବ୍ୟାପୃତ ଅଛନ୍ତି ।

ଆଧୁନିକ କାଳରେ ଚର୍ଯାର ସମ୍ପାଦନା ଓ ଆଲୋଚନାର ଇତିହାସରେ ଯେଉଁମାନଙ୍କର ଅବଦାନ ଚିରସ୍ମରଣୀୟ, ସେମାନଙ୍କ କାର୍ଯ୍ୟର ସଂକ୍ଷିପ୍ତ ବିବରଣୀ ନିମ୍ନରେ ପ୍ରଦତ୍ତ ହେଲ ।

(୧) ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ—ଚର୍ଯାଗୀତିକାର ଆବିଷ୍କର୍ତ୍ତା ଏବଂ ପ୍ରଥମ ସମ୍ପାଦକ । ତାଙ୍କର ଗ୍ରନ୍ଥ 'ବୌଦ୍ଧଗାନ ଓ ଦୋହା' ବଙ୍ଗୀୟ ସାହିତ୍ୟ ପରିଷଦରୁ ୧୩୨୩ରେ ପ୍ରକାଶିତ ହୋଇଥିଲ । ବର୍ତ୍ତିମାନ ଏହାର ଏକ ନୂତନ ସଂସ୍କରଣ ଶ୍ରୀ ତାରାପ୍ରସନ୍ନ ଭଟ୍ଟାଚାର୍ଯ୍ୟ କୃତ ବିଶଦ ବ୍ୟାଖ୍ୟା ଓ ବଙ୍ଗାନୁବାଦ ସହ ପ୍ରକାଶିତ ହୋଇଛି; କିନ୍ତୁ ଏଥିରେ ପ୍ରଥମ ସଂସ୍କରଣର 'ବୌଦ୍ଧତାନ୍ତ୍ରିକ-ଗ୍ରନ୍ଥକାର-ନାମ-ସୂଚୀ' ପ୍ରଦତ୍ତ ହୋଇନାହିଁ ।

(୨) ଡ. ସୁନୀତିକୁମାର ଚଟ୍ଟୋପାଧ୍ୟାୟ—Origin And Development of Bengali Language ( ୧୯୨୬ ) ଗ୍ରନ୍ଥରେ ଚର୍ଯାଗୀତିକାର ଭାଷା ସମ୍ବନ୍ଧରେ ବିସ୍ତୃତ ଆଲୋଚନା କରିବା ସଙ୍ଗେ ପାଠାନ୍ତର ନିର୍ଦ୍ଦେଶ କରିଛନ୍ତି ଏବଂ ଗୀତିକାରମାନଙ୍କ ସମୟ ନିରୂପଣ କରିଛନ୍ତି । ରମେଶଚନ୍ଦ୍ର ମଜୁମଦାର ସମ୍ପାଦିତ History of Bengal (୧୯୨୬) ଦ୍ୱାଦଶ ଅଧ୍ୟାୟରେ ଏ ସମ୍ପର୍କରେ ଏକ ପ୍ରବନ୍ଧ ଲେଖିଛନ୍ତି ।

(୩) ଡ. ମହମ୍ମଦ ଶହୀଦୁଲ୍ଲାହ—Les Chants Mystiques de Kanha et de Sarada (୧୯୨୮ରେ କାହ୍ନୁପା ଓ ସରହପାଙ୍କ ଦୋହାକୋଷ ଏବଂ ଚର୍ଯାଗୀତିକା ସମ୍ପର୍କରେ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା କରିଛନ୍ତି । କେବଳ ଚର୍ଯାଗୀତିକା ଉପରେ ତାଙ୍କର ବହି—Budhist Mystic Songs (୧୯୪୦ ନୂତନ ସଂସ୍କରଣ-କରାଚୀ, ୨୯୬୦) । ଏଥିରେ ଡ. ବାଗ୍‌ଚୀ ପ୍ରକାଶିତ ତିବ୍ବତୀ ଅନୁବାଦ, ଏସିଆଟିକ୍ ସୋସାଇଟିର ଚର୍ଯାଚର୍ଯ ବିନିଶ୍ଚୟ ପୋଥି, ଶାସ୍ତ୍ରୀଙ୍କ ପ୍ରକାଶିତ ଗୀତିକା ଓ ସଂସ୍କୃତ ଟୀକାକୁ ମିଳାଇ ସେ ଚର୍ଯାଗୀତିକା ସମୂହର ପାଠନିର୍ଣ୍ଣୟ କରିଛନ୍ତି ଏବଂ ଆଲୋଚନାତ୍ମକ ପାଦଟୀକା ସହିତ ବଙ୍ଗଳା ଓ ଇଂରାଜୀ ଅନୁବାଦ ପ୍ରକାଶ କରିଛନ୍ତି । ବଙ୍ଗୀୟ ସାହିତ୍ୟ ପରିଷଦ ପତ୍ରିକାରେ (୧୩୨୭) ଢାକା ବିଶ୍ୱବିଦ୍ୟାଳୟ ସାହିତ୍ୟ ପତ୍ରିକା (୭ମ ପ୍ରାଚୀନ ସାହିତ୍ୟ (୧/୨, ୧୮୮୭ ଶକାବ୍ଦ) ବର୍ଷ, ୨ୟ ସଂଖ୍ୟା, ୧୯୬୩)ରେ ପାଠନିର୍ଣ୍ଣୟ ସମ୍ପର୍କରେ ତାଙ୍କର ପ୍ରବନ୍ଧ ପଠନୀୟ ।

(୪) ଡ. ପ୍ରବୋଧଚନ୍ଦ୍ର ବାଗ୍‌ଚୀ—ଚର୍ଯାଗୀତିକା ଓ ଦୋହାକୋଷର ତିବ୍ବତୀ ରୂପାନ୍ତର ଆବିଷ୍କାର କରିବାର ସୌଭାଗ୍ୟ ଲଭକରି ତାହାସବୁ ସେ Calcutta

University Journal of Letters (1935, 1938)ରେ ପ୍ରକାଶ କରିଥିଲେ । ତାଙ୍କର ଦୋହାକୋଷ Calcutta Sanskrit Seriesରେ ଖ୍ରୀ: ୧୯୩୮ରେ ପ୍ରକାଶିତ ଏବଂ ଚର୍ଯ୍ୟାଗୀତିକାର ତିବତୀ ଅନୁବାଦ, ଶୁଦ୍ଧପାଠ ଓ ଟୀକା-ଟିପ୍ପଣୀ ଖ୍ରୀ:୧୯୩୮ରେ Materials for a Critical Edition of the Old Bengali Charyapadas ନାମରେ ପ୍ରକାଶିତ । ଏହା ବ୍ୟତୀତ ଚର୍ଯ୍ୟାଗୀତିକା ସମ୍ପର୍କରେ ତାଙ୍କର ବିଖ୍ୟାତ ପ୍ରବନ୍ଧସମୂହ (The Sandha bhasa or Sandhavachan, Some aspects of Budhist Mysticism in the Charyapadas, Some technical terms of the Tantras ଇତ୍ୟାଦି) Studies in the Tantras ନାମକ ଗ୍ରନ୍ଥରେ ସଙ୍କଳିତ ହୋଇଛି । ଡ. ବାଗ୍‌ଚୀ ଓ ଶାନ୍ତିଭିକ୍ଷୁ ଶାସ୍ତ୍ରୀଙ୍କ ସମବାୟରେ ଚର୍ଯ୍ୟାଗୀତିକାର ଏକ ଉତ୍ତମ ସଂସ୍କରଣ 'ଚର୍ଯ୍ୟାଗୀତି-କୋଷ' (୧୯୫୬) ନାମରେ ପ୍ରକାଶିତ ହୋଇଛି । ଏଥିରେ ଟୀକାଟିପ୍ପଣୀ ବ୍ୟତୀତ ସଂସ୍କୃତ ଅନୁବାଦ ବିଶେଷ ଆକର୍ଷଣୀୟ । ଏହା ବ୍ୟତୀତ ଡ଼. ବାଗ୍‌ଚୀଙ୍କ ଦ୍ୱାରା ସମ୍ପାଦିତ 'କୌଲଜ୍ଞାନ ନିର୍ଣ୍ଣୟ' ଇତ୍ୟାଦି ତାନ୍ତ୍ରିକ ପୁସ୍ତକର ମୁଖବନ୍ଧ ବହୁ ତଥ୍ୟପୂର୍ଣ୍ଣ ।

(୫) ଡ଼. ବିନୟତୋଷ ଭଟ୍ଟାଚାର୍ଯ୍ୟ—ସାଧନମାଳା, ୨ୟ ଭାଗର ମୁଖବନ୍ଧରେ, An Introduction to Budhist Esoterism ପୁସ୍ତକରେ ଏବଂ ତାଙ୍କର ସମ୍ପାଦିତ Two Vajrajnana Works ତଥା ଅନ୍ୟାନ୍ୟ ତାନ୍ତ୍ରିକ ଗ୍ରନ୍ଥ ମୁଖବନ୍ଧରେ ସିଦ୍ଧାଚାର୍ଯ୍ୟମାନଙ୍କ ଜୀବନୀ ଓ ଧର୍ମଦର୍ଶନ ସମ୍ପର୍କରେ ବହୁ ଆଲୋଚନା କରିଛନ୍ତି । Journal of the Bihar and Orissa Research Society, Vol. 14, pt-3ରେ "Date of Boudh Gan O Doha" ଏବଂ ବଙ୍ଗୀୟ ସାହିତ୍ୟ ପରିଷଦ ପତ୍ରିକା, ୩୫ବର୍ଷ, ୩ୟ ସଂଖ୍ୟାରେ "କୟେକ ଜନ ପ୍ରାଚୀନ ଗୀତିକାରେର କାଲନିର୍ଣ୍ଣୟ" ପ୍ରବନ୍ଧ ଦୁଇଟି ପଠନୀୟ ।

(୬) ଶ୍ରୀ ସୁଶୀଲକୁମାର ଦେ—New Indian Antiquary vol. I, No. 1 (1938)ରେ "Budhist Tantric Literature of Bengal" ପ୍ରବନ୍ଧ, ଯାହା ପରେ History of Bengalରେ (ଢାକା, ୧୯୪୩) ପ୍ରଦତ୍ତ ହୋଇଥିଲା ଏବଂ ଏବେ ଏକ ସ୍ୱତନ୍ତ୍ର ପୁସ୍ତକ ଆକାରରେ ପ୍ରକାଶିତ (Bengal's Contribution to Sanskrit Literature and Studies in Bengal Vaishnavism, Calcutta, 1960). ତହିଁରେ ସିଦ୍ଧାଚାର୍ଯ୍ୟମାନଙ୍କର ଜୀବନୀ ସମ୍ପର୍କରେ ବିଧିବଦ୍ଧ ବିବରଣୀ ମିଳେ ।

(୭) ଡ. ଶଶିଭୂଷଣ ଦାଶଗୁପ୍ତ—ସିଦ୍ଧାଚାର୍ଯ୍ୟମାନଙ୍କର ଧର୍ମ ଓ ଦାର୍ଶନିକ ଦୃଷ୍ଟିକୋଣ ସମ୍ପର୍କରେ ତାଙ୍କର ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା Obscure Religious Cults as the background of Bengali Literature (୧୯୪୬), An Introduction to Tantric Budhism (୧୯୫୦), ବୌଦ୍ଧଧର୍ମ ଓ ଚର୍ଯାଗୀତ (୧୩୬୪) ଗ୍ରନ୍ଥସମୂହରେ ପ୍ରକାଶିତ ହୋଇଛି । ସେ ୧୯୬୪ରେ ପରଲୋକ ଗମନ କଲା ପୂର୍ବରୁ ସ୍ୱସଂଗୃହୀତ ଚର୍ଯାଗୀତିକା ସମ୍ପର୍କରେ କାର୍ଯ୍ୟ କରୁଥିଲେ ।

(୮) ମହାପଣ୍ଡିତ ରାହୁଲ ସାଂକୃତ୍ୟାୟନ—ଚର୍ଯାଗୀତିକା ଓ ଦୋହାକୋଷର ଆଲୋଚନା ଏବଂ ସିଦ୍ଧାଚାର୍ଯ୍ୟମାନଙ୍କର ଜୀବନ ଚରିତ ଉଦ୍‌ଘାଟନ ତାଙ୍କର ପ୍ରଧାନ ଅବଦାନ । ପୁରାତତ୍ତ୍ୱ ନିବନ୍ଧାବଳୀ, ହିନ୍ଦୀକାବ୍ୟଧାରା, ଦୋହାକୋଷ ଗ୍ରନ୍ଥାବଳୀରେ ଏବଂ ଗଙ୍ଗା ପୁରାତତ୍ତ୍ୱାଙ୍କ (୧୯୩୩) ଓ Journal Asiatiqueରେ (Tome—CCXXV. No. 2) ପ୍ରକାଶିତ ତାଙ୍କର ପ୍ରବନ୍ଧାବଳୀରେ ଏ ସମସ୍ତ ଲିପିବଦ୍ଧ ହୋଇଛି । ପଣ୍ଡିତ ସାଂକୃତ୍ୟାୟନଙ୍କର ତିବ୍ବତ ଅନୁସନ୍ଧାନ ଓ ଗ୍ରନ୍ଥଉଦ୍ଧାର ଅତ୍ୟନ୍ତ ରୋମାଞ୍ଚକର । ହିନ୍ଦୀ କାବ୍ୟଧାରାରେ ସେ କେତେକ ଚର୍ଯାର ହିନ୍ଦୀ ଅନୁବାଦ ପ୍ରଦାନ କରିଛନ୍ତି । ସେ ପ୍ରଥମେ ଦୃଢ଼ଭାବରେ ପ୍ରଚାର କରିଥିଲେ ଯେ ଚର୍ଯାଗୀତିକା ବଙ୍ଗ-ଦେଶର ସମ୍ପତ୍ତି ନୁହେଁ ।

(୯) ଶ୍ରୀ ମଣୀନ୍ଦ୍ରମୋହନ ବସୁ—'ଚର୍ଯାପଦ' ଗ୍ରନ୍ଥରେ ସେ ଚର୍ଯାଗୀତିକାସମୂହ କେତେକ ପାଠାନ୍ତର ସହିତ ପ୍ରକାଶ କରିବା ସଙ୍ଗେ ବଙ୍ଗଳା ପଦ୍ୟାନୁବାଦ, ମର୍ମାର୍ଥ ଏବଂ ବିସ୍ତୃତ ଟୀକା ପ୍ରଦାନ କରିଯାଇଛନ୍ତି । ଏଥିରେ ୮୪ ପୃଷ୍ଠା ଦୀର୍ଘ ଭୂମିକାରେ ଚର୍ଯାର ଧର୍ମତତ୍ତ୍ୱ ଓ ଭାଷାତତ୍ତ୍ୱ ସମ୍ପର୍କରେ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା କରିଛନ୍ତି । ଯୋଗବାଶିଷ୍ଠ ରାମାୟଣ ଅବଲମ୍ବନରେ ଚର୍ଯାର ଧର୍ମତତ୍ତ୍ୱ ସମ୍ପର୍କରେ ତାଙ୍କର ଆଲୋଚନା ବିଶେଷ ଆକର୍ଷଣୀୟ । ଗ୍ରନ୍ଥଶେଷରେ ଅକ୍ଷରାନୁକ୍ରମରେ ଶବ୍ଦ-ସୂଚୀ ମଧ୍ୟ ପ୍ରଦାନ କରିଛନ୍ତି । ତାଙ୍କର The Post-Chaitanya Sahajiya Cult of Bengal, Calcutta, 1930 ମଧ୍ୟ ଏହି ପ୍ରସଙ୍ଗରେ ଏକ ଉପଯୋଗୀ ଗ୍ରନ୍ଥ ।

(୧୦) ଡ. ଧର୍ମବୀର ଭାରତୀ—ସିଦ୍ଧାଚାର୍ଯ୍ୟମାନଙ୍କ ଦର୍ଶନ ଓ ସାହିତ୍ୟର ପୃଷ୍ଠଭୂମି, ସିଦ୍ଧାନ୍ତ-ପକ୍ଷ, କାବ୍ୟପକ୍ଷ ଓ ପରବର୍ତ୍ତୀ ପ୍ରଭାବ-ପରମ୍ପରା ବିଷୟରେ ଗମ୍ଭୀର ଅନୁଶୀଳନ କରି ସେ "ସିଦ୍ଧ-ସାହିତ୍ୟ" ଗ୍ରନ୍ଥଟି ପ୍ରଣୟନ କରିଛନ୍ତି । ଏହା ଏକ ତଥ୍ୟପୂର୍ଣ୍ଣ ବିଶ୍ଳେଷଣା-ତ୍ମକ ପୁସ୍ତକ ଏବଂ ଚର୍ଯାଗୀତିକାର ଆଲୋଚନା ପାଇଁ ଅପରିହାର୍ଯ୍ୟ ।

(୧୧) ଡ଼. ସୁକୁମାର ସେନ—ଭାଷାତତ୍ତ୍ୱବିତ୍ ଡ ସେନ Indian Linguistics Vol. IX ଏବଂ Vol. Xରେ ଯଥାକ୍ରମେ Index Verborum of the Old Bengali Carya Songs and Fragments ଏବଂ Old

Bengali Texts or Caryagiti-Kosa ନାମକ ପ୍ରବନ୍ଧ ଦୁଇଟି ପ୍ରକାଶ କରିଛନ୍ତି । ପରେ "ଚର୍ଯାଗୀତି ପଦାବଳୀ" (୧୯୫୬) ନାମରେ ଚର୍ଯାର ଏକ ସଂସ୍କରଣ ପ୍ରକାଶ କରିଛନ୍ତି । ଏଥିରେ ପାଠନିର୍ଣ୍ଣୟର କେତେକ ସ୍ୱତନ୍ତ୍ରତା ଲକ୍ଷଣୀୟ । ସେ ମୂଳଗୀତିକା ସହିତ ବଙ୍ଗଳା ଅନୁବାଦ, ବିଶେଷ ଟିପ୍ପଣୀ ଓ ଶବ୍ଦକୋଷ ପ୍ରଦାନ କରିଛନ୍ତି । ତାଙ୍କର ଭୂମିକାଟି ସଂକ୍ଷିପ୍ତ ହେଲେ ହେଁ ମୌଳିକ ତଥ୍ୟ ପରିପୂର୍ଣ୍ଣ । ଏ ବର୍ଷର ନୂତନ ସଂସ୍କରଣ (୧୯୬୬) ଗ୍ରନ୍ଥଟି ଚର୍ଯା ଓ ମୂଳପୋଥିର କେତୋଟି ଛବିଦ୍ୱାରା ସମୃଦ୍ଧ ହୋଇଛି ।

(୧୨) ଡ. ତାରାପଦ ମୁଖାର୍ଜି—The Old Bengali Language and Text ଗ୍ରନ୍ଥରେ ଏକ ତଥ୍ୟପୂର୍ଣ୍ଣ ଉପୋଦ୍‌ଘାତ ସହିତ ଚର୍ଯାଭାଷାର ଏକ ବର୍ଣ୍ଣନାତ୍ମକ ବ୍ୟାକରଣ ପ୍ରଦାନ କରିଛନ୍ତି । ଏଥିରେ ମୂଳଗୀତିକାଗୁଡ଼ିକ ଓ ଏକ ଶବ୍ଦସୂଚୀ ମଧ୍ୟ ପ୍ରଦତ୍ତ ହୋଇଛି । ବଙ୍ଗଳାରେ ଲେଖା ତାଙ୍କର 'ଚର୍ଯାଗୀତି' ପୁସ୍ତକ ଓ 'ଚର୍ଯାପଦ ପୁଥିର କସ୍ୟେକଟି ଅକ୍ଷର' ପ୍ରବନ୍ଧ ( ବିଶ୍ୱଭାରତୀ ପତ୍ରିକା, ୨୧।୩,୧୩୭୧) ମୌଳିକ ତଥ୍ୟପୂର୍ଣ୍ଣ ।

ଚର୍ଯାଗୀତିକାର ପଠନ-ପାଠନ ନିମିତ୍ତ ଉପରେ ସୂଚିତ ରଚନାବଳୀ ବ୍ୟତୀତ ଆଉ କେତେକ ନିର୍ବାଚିତ ରଚନା ଅବଶ୍ୟ ପାଠ୍ୟ । ନିମ୍ନରେ ତାର ଏକ ସଂକ୍ଷିପ୍ତ ସୂଚୀ ପ୍ରଦତ୍ତ ହେଲା ।

ପୁସ୍ତକ :—

Myitic Tales of Lama Taranath—
ଭୂପେନ୍ଦ୍ର ନାଥ ଦତ୍ତ (କଲିକତା, ୧୯୪୪)

ସେକୋଦ୍ଦେଶ ଟୀକା, ନାଡ଼ପାଦ—ସମ୍ପାଦକ—ମେରି ଓ କରେଲି
(ବରୋଦା, ୧୯୪୧) ।

ଡାକାର୍ଣ୍ଣବ—ନଗେନ୍ଦ୍ର ନାରାୟଣ ଚୌଧୁରୀ (କଲିକତା, ୧୯୫୧)

Yuganadha : or the Tantric View of Life-
Herbert V. Guenther (ବନାରସ, ୧୯୫୨)

Life and Theory of Naropa—ଏକନ (ଲଣ୍ଡନ, ୧୯୬୩)

ହିନ୍ଦୀ ସାହିତ୍ୟ ଔର ବିହାର—ଶିବପୂଜନ ସହାୟ ( ପାଟନା, ୧୯୬୦ ) ।

ନାଥ-ସଂପ୍ରଦାୟ—ହଜାରୀ ପ୍ରସାଦ ଦ୍ୱିବେଦୀ ( ଏଲାହାବାଦ, ୧୯୫୦) ।

ବାଙ୍ଗାଲୀର ଇତିହାସ—ନୀହାର ରଞ୍ଜନ ରାୟ (କଲିକତା, ୧୩୫୬) ।

ବାଙ୍ଗଲାର ସଙ୍ଗୀତ (ପ୍ରାଚୀନ ଯୁଗ)—ରାଜେଶ୍ୱର ମିତ୍ର (କଲିକତା, ୧୩୬୩) ।

The Caryapadas—Atindra Majumdar,
(Calcutta, 1667)

ଚର୍ଯ୍ୟାପଦ—ଅତୀନ୍ଦ୍ର ମଜୁମ୍ଦାର (କଲିକତା, ୧୩୭୧)
ଚର୍ଯ୍ୟାଗୀତି ପରିଚୟ—ସତ୍ୟବ୍ରତ ଦେ (କଲିକତା, ୧୯୬୦) ।
ବାଙ୍ଗଲାୟ ବୌଦ୍ଧଧର୍ମ—ନଳିନୀନାଥ ଦାଶଗୁପ୍ତ (କଲିକତା, ୧୩୫୫) ।
Budhism in Orissa—Dr. N. K. Sahu
(Utkal University, 1958) ।
ତାନ୍ତ୍ରିକ ବୌଦ୍ଧସାଧନା ଔର ସାହିତ୍ୟ—ନଗେନ୍ଦ୍ରନାଥ ଉପାଧ୍ୟାୟ
(କାଶୀ ନାଗରୀ ପ୍ରଚାରିଣୀ ସଭା, ୧୯୫୮) ।
ଚର୍ଯ୍ୟାଗୀତିର ଛନ୍ଦ ପରିଚୟ—ନୀଲରତନ ସେନ,
(କଲ୍ୟାଣୀ ବିଶ୍ୱବିଦ୍ୟାଳୟ, ୧୯୭୪)

Early Eastern NIA Versification—N. R. Sen
(Simla, 1973)
ସିଦ୍ଧୋଁ କୀ ସନ୍ଧ୍ୟାଭାଷା—ମଙ୍ଗଲ ବିହାରୀଶରଣ ସିହ୍ନା, (ପାଟନା, ୧୯୬୩)

ପ୍ରବନ୍ଧ :—

ଚର୍ଯ୍ୟାର ତିବ୍ବତୀ ଅନୁବାଦ : ଅନାଥନାଥ ବସୁ—I. H. Q.—Vol. III,
ହରପ୍ରସାଦ ସମ୍ବର୍ଦ୍ଧନା ଲେଖମାଳା, ୨ୟ ଖଣ୍ଡ ।
ଚର୍ଯ୍ୟାର ତିବ୍ବତୀ ଅନୁବାଦ : ଡ. ସୁମସିଂ ତୋମାର
Bulletin of Tibetology,
Vol. I, No. 1.
ଛନ୍ଦବିଚାର : ସତ୍ୟେଶ୍ୱର ମିତ୍ର—ବିଶ୍ୱଭାରତୀ ପତ୍ରିକା,
Vol. XVI, No. 1.
ମାଗଧୀ ସହିତ ସମ୍ପର୍କ : କାଶୀପ୍ରସାଦ ଜୟସ୍ୱାଲ,
Proceedings of All India Oriental
Conference, VII. Session.
: ଜୟକାନ୍ତ ମିଶ୍ର, AIOC, XIII (Session, 1946)
ସନ୍ଧ୍ୟାଭାଷା : ବିଧୁଶେଖର ଭଟ୍ଟାଚାର୍ଯ୍ୟ, I. H. Q. Vol. IV. No. 2.
ଚର୍ଯ୍ୟା ପୋଥିର ନାମ : ଏଜନ୍ I.H.Q., Vol. V, No. 1.
ଚର୍ଯ୍ୟାର ଭାଷା : ସୈଦ୍ ମୁର୍ତ୍ତାଜା ଆଲି, ଢାକା ବିଶ୍ୱବିଦ୍ୟାଳୟ
ସାହିତ୍ୟ ପତ୍ରିକା—୭ମବର୍ଷ, ୨ୟ ସଂଖ୍ୟା ।
ଚର୍ଯ୍ୟାଗୀତି : ଡ. ପ୍ରବୋଧ ଚନ୍ଦ୍ର ବାଗ୍ଚୀ, ବିଶ୍ୱଭାରତୀ ପତ୍ରିକା
୪ର୍ଥ ବର୍ଷ, ୨ୟ ସଂଖ୍ୟା ।

ପାଠ ନିର୍ଣ୍ଣୟ : ଡ. ଶଶିଭୂଷଣ ଦାସଗୁପ୍ତ,
ଶ୍ରୀ ଭାରତୀ Vol. I, No. 7.
ବାକ୍ୟଗଠନ The Syntactic Structure of the Caryas—
—Vladimir Miltmer, Indian Linguistics,
Vol. 25, 1964
Bengal Skij Jazyk—BM. M. Karpuskin,
Moscow, 1962

## ପରିଶିଷ୍ଟ

ଚର୍ଯ୍ୟାଗୀତିକାର ଭାଷା ପ୍ରାଚୀନ ଓଡ଼ିଆ ଏବଂ ଅଧିକାଂଶ ସିଦ୍ଧାଚାର୍ଯ୍ୟ ଉତ୍କଳୀୟ ବୋଲି ଗୋଟିଏ ମତ ପ୍ରଚଳିତ । ଶ୍ରୀଯୁକ୍ତ ବିଜୟ ଚନ୍ଦ୍ର ମଜୁମଦାର ତାଙ୍କର"History of Bengali Language" ରେ (୧) ଚର୍ଯ୍ୟାଗୀତିକାର ଭାଷା ପ୍ରାଚୀନ ବଙ୍ଗଳା ନୁହେଁ, ଏହା ପ୍ରମାଣ କରିବା ପ୍ରସଙ୍ଗରେ ଏଥିରେ ଓଡ଼ିଆ ଭାଷାର କେତେକ ବୈଶିଷ୍ଟ୍ୟ ଉଲ୍ଲେଖ କରିଥିଲେ ଏବଂ 'ବଙ୍ଗବାଣୀ' ପତ୍ରିକାରେ (୨) ଓଡ଼ିଆ ଓ ଚର୍ଯ୍ୟାଗୀତିକାର ସମ୍ପର୍କ ସ୍ପଷ୍ଟତର ଭାବେ ଆଲୋଚନା କରିଥିଲେ । ସେହି ସୂତ୍ର ଧରି ପଣ୍ଡିତ ବିନାୟକ ମିଶ୍ର ତାଙ୍କର 'ଓଡ଼ିଆ ଭାଷାର ଇତିହାସରେ (୩) ଚର୍ଯ୍ୟାର ଭାଷା ପ୍ରାଚୀନ ଓଡ଼ିଆ ବୋଲି ଦୃଢ଼ଭାବରେ ମତବ୍ୟକ୍ତ କରିଥିଲେ । ଖ୍ରୀ. ୧୯୩୦ରେ ପାଟନାଠାରେ ଓରିଏଣ୍ଟାଲ କନଫରେନ୍ସର ଷଷ୍ଠ ଅଧିବେଶନରେ ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ପ୍ରହରାଜ ତାଙ୍କର ଅଭିଭାଷଣରେ ଏହି ବିଷୟ ଉତ୍ଥାପନ କରିଥିଲେ ଏବଂ ତା'ପର ବର୍ଷ 'ଭାଷାକୋଷ' ପ୍ରଥମ ଖଣ୍ଡର ମୁଖବନ୍ଧରେ (୪) ଓଡ଼ିଆ ଭାଷାର ପରିଚୟ ଦେବାକୁ ଯାଇ ସେ ଚର୍ଯ୍ୟାଗୀତିକାକୁ ଓଡ଼ିଆଭାଷାର ପ୍ରାଚୀନତମ ରଚନା ରୂପେ ଗ୍ରହଣ କରିଥିଲେ । ତତ୍କାଳୀନ 'ଉତ୍କଳ ସାହିତ୍ୟ' ପତ୍ରିକାରେ ଏହି ବିଷୟରେ ଅନେକ ଆଲୋଚନା ପ୍ରକାଶ ପାଇଥିଲା । (୫) ବୃନ୍ଦାବନ ନାଥ

---

(୧) Calcutta University, 1920, Lecture XIII ଦ୍ରଷ୍ଟବ୍ୟ ।
(୨) ୪ର୍ଥ ବର୍ଷ, ୧୧ଶ ସଂଖ୍ୟା ଦ୍ରଷ୍ଟବ୍ୟ ।
(୩) କଟକ, ୧୯୩୭—ମୁଖବନ୍ଧ ଓ ୧୧ଶ ଅଧ୍ୟାୟ ଦ୍ରଷ୍ଟବ୍ୟ ।
(୪) Proceedings of Oriental Conference VI Session, P. 378. ଭାଷାକୋଷ ୧ମ ଖଣ୍ଡ (୧୯୩୧)
(୫) ଉତ୍କଳ ସାହିତ୍ୟ ୧୩୩୯ ମାସ ସଂଖ୍ୟା ଦ୍ରଷ୍ଟବ୍ୟ ।

ଶମ୍ମ ଗୋଟିଏ ଦୁଇଟି ସ୍ଥଳରେ, ପ୍ରାସଙ୍ଗିକ ଭାବେ ଚର୍ଯାର ଓଡ଼ିଆତ୍ୱ ଇଙ୍ଗିତ କରି-ଥିଲେ (୧) ।

ଚର୍ଯା ସମ୍ପର୍କରେ ଓଡ଼ିଶାରେ ବାଧ୍ୟବଦ୍ଧ ଗବେଷଣାକରି ପ୍ରଥମେ ପ୍ରବନ୍ଧ ରଚନା କରି ଥିଲେ ଶ୍ରୀଯୁକ୍ତ କରୁଣାକର କର ଏବଂ ଏଥିପାଇଁ ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଖ୍ରୀ.୧୯୪୯ରେ ଡକ୍ଟରେଟ୍ ଉପାଧି ଲାଭ କରିଥିଲେ (୨) ପରବର୍ତ୍ତୀ କାଳରେ ଆଉ କେତେକ ଓଡ଼ିଆ ଆଲୋଚନା ମଧ୍ୟ ପ୍ରାସଙ୍ଗିକ ଭାବେ ଏ ସମ୍ପର୍କରେ ଲେଖାଲେଖି କରିଛନ୍ତି (୩); କିନ୍ତୁ ଏ ସମସ୍ତ ଆଲୋଚନା ଓଡ଼ିଆରେ ଲେଖାଯାଇଥିବାରୁ ସର୍ବଭାରତୀୟ କ୍ଷେତ୍ରରେ ଉତ୍କଳୀୟ-ମାନଙ୍କର ଦାବୀ ଯଥାଯଥ ଭାବରେ ଉପସ୍ଥାପିତ ହୋଇପାରି ନାହିଁ । ଶ୍ରୀଯୁକ୍ତ ପ୍ରହରାଜଙ୍କ ଭାଷାକୋଷର ଇଂରାଜୀ ମୁଖବନ୍ଧ, ହିନ୍ଦୀରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କର 'ଉତ୍କଳ ସାହିତ୍ୟ କା ସଂକ୍ଷିପ୍ତ ଇତିହାସ' (ପାଟନା, ୧୯୫୧) ରାଷ୍ଟ୍ରଭାଷା ପ୍ରଚାର ସମିତି ଦ୍ୱାରା ପ୍ରକାଶିତ 'ଉତ୍କଳ ସାହିତ୍ୟ କା ଇତିହାସ' (କଟକ, ୧୯୫୯) ଏବଂ ଡ. ମାୟାଧର ମାନସିଂହଙ୍କର History of Oriya Literature ( Sahitya Akademi 1962) ମାଧ୍ୟମରେ ଓଡ଼ିଆମାନେ ଯେ ଚର୍ଯାଗୀତିକାକୁ ନିଜର ବୋଲି ଦାବୀକରନ୍ତି, ସେହି ସମ୍ବାଦଟି କେବଳ ପ୍ରଦେଶ ବାହାରେ ପହଞ୍ଚିପାରିଛି । ତେଣୁ ଭାରତୀୟ କ୍ଷେତ୍ରରେ ଏଥିରେ ସମୁଚିତ ଗୁରୁତ୍ୱ ଆରୋପ କରାଯାଇ ନାହିଁ ଓ ଚର୍ଯାଗୀତିକାର ବିଶିଷ୍ଟ ଆଲୋଚକଗଣ ଏଥି ପ୍ରତି ଦୃଷ୍ଟିପାତ କରିନାହାନ୍ତି କହିଲେ ଚଳେ । ପୂର୍ବରୁ ଅଧ୍ୟାପକ ପ୍ରିୟ-ରଞ୍ଜନ ସେନଙ୍କର ଓଡ଼ିଆଭାଷାରେ କିଛି ଜ୍ଞାନ ଥିବାରୁ ସେ ଓଡ଼ିଆମାନଙ୍କର ଦାବୀ ସମ୍ପର୍କରେ ସଚେତନ ହୋଇ ଗୋଟିଏ ଇଂରାଜୀ ପ୍ରବନ୍ଧରେ ଏହା ଖଣ୍ଡନ କରିବା ପାଇଁ ପ୍ରୟାସ କରିଥିଲେ (୪) । ଯାହାହେଉ, ବିପରୀତ ରୀତିରେ ହେଲେ ମଧ୍ୟ ଏହାଦ୍ୱାରା ତତ୍ତ୍ୱବିତ୍ମାନଙ୍କ ମନରେ ଚର୍ଯା ଓ ଓଡ଼ିଆଭାଷାର ସମ୍ପର୍କ ବିଷୟରେ କିଛି ପ୍ରତିକ୍ରିୟା ସୃଷ୍ଟି ହୋଇଥିବା ସୁଖର କଥା । ଡ. ନବୀନ କୁମାର ସାହୁଙ୍କ Buddhisim in

(୧) ୩୯ଶ ଭାଗ, ୧୧ଶ ସଂଖ୍ୟା ଦ୍ରଷ୍ଟବ୍ୟ ।

(୨) ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ, ୧୯୨୯

(୩) ବଂଶୀଧର ମହାନ୍ତି-ଓଡ଼ିଶାରେବୌଦ୍ଧଧର୍ମ, ୧୯୫୬
ସୂର୍ଯ୍ୟନାରାୟଣ ଦାସ-ଓଡ଼ିଆ ସାହିତ୍ୟର ଇତିହାସ, ୧୯୬୩
ସୁରେନ୍ଦ୍ର ମହାନ୍ତି-ଓଡ଼ିଆ ସାହିତ୍ୟର ଆଦିପର୍ବ, ୧୯୬୩
ଦେବେନ୍ଦ୍ର ମହାନ୍ତି-ପ୍ରାଚୀନ ଓଡ଼ିଆ ସାହିତ୍ୟ, ୧୯୬୨

(୪) B. C. Law Commemoration Volume, 11, P.197 "Oriya Literature in the Early Stages Poona, 1940.

Orissa' (Utkal University, 1958) ଗବେଷଣା ଗ୍ରନ୍ଥଟି ପ୍ରକାଶିତ ହୋଇ ଏହି ଅଭାବ ବହୁ ପରିମାଣରେ ଦୂରୀଭୂତ କରିଛି । ଡ.ସାହୁ ଭାଷାଦୃଷ୍ଟିରୁ କିଛି ଆଲୋଚନା କରି ନ ଥିଲେ ମଧ୍ୟ ଧର୍ମ ଓ ଇତିହାସ ଭିତ୍ତିରେ ଚର୍ଯ୍ୟାଲେଖକ ବହୁ ସିଦ୍ଧକବିମାନଙ୍କୁ ଉତ୍କଳୀୟ ରୂପେ ଏବଂ ଓଡ଼ିଶାକୁ ତାନ୍ତ୍ରିକ ବୌଦ୍ଧଧର୍ମର ପ୍ରଧାନ ପୀଠଭୂମି ଓଡ୍ଡିୟାନ ରୂପେ ପ୍ରମାଣ କରିଛନ୍ତି । ଚର୍ଯ୍ୟା ଓ ଓଡ଼ିଆର ସମ୍ପର୍କ ନିରୂପଣରେ ତାଙ୍କର ଗ୍ରନ୍ଥଟି ଅପରିହାର୍ଯ୍ୟ ସହାୟତା ପ୍ରଦାନ କରେ ।

ଚର୍ଯ୍ୟାଗୀତିକାର ଓଡ଼ିଆତ୍ୱ ତିନୋଟି ଦୃଷ୍ଟିରେ ପ୍ରମାଣିତ କରାଯାଏ । (ଧାର୍ମିକ—ବଜ୍ରଯାନ ସହଜଯାନ ଆଦି ତାନ୍ତ୍ରିକ ବୌଦ୍ଧଧର୍ମର ପୀଠଭୂମି ଓଡ୍ଡିୟାନ ଯଥାର୍ଥରେ ଆଧୁନିକ ଓଡ଼ିଶା । ପ୍ରଖ୍ୟାତ ବଜ୍ରଯାନୀ ସାଧକ ଇନ୍ଦ୍ରଭୂତି, ଲକ୍ଷ୍ମୀଙ୍କରା ପଦ୍ମସମ୍ଭବ ପ୍ରଭୃତି ଉତ୍କଳୀୟ । (ଖ) ଐତିହାସିକ—ସିଦ୍ଧାଚାର୍ଯ୍ୟଗଣ ଉତ୍କଳୀୟ । ଓଡ଼ିଆ ସାହିତ୍ୟ ଶିଳ୍ପକଳା ଓ ସମାଜର ପରମ୍ପରାରେ ସେମାନେ ସଜୀବିତ । (ଗ) ଭାଷାତାତ୍ତ୍ୱିକ—ଚର୍ଯ୍ୟାଗୀତିକାର ଶବ୍ଦମାଳା, ବିଭକ୍ତି ପ୍ରତ୍ୟୟ, ସର୍ବନାମ, କ୍ରିୟାବିଧି ଓ ବାକ୍ୟ ରଚନା ସହିତ ଆଧୁନିକ ଓଡ଼ିଆଭାଷାର ବହୁ ନିକଟବର୍ତ୍ତୀ । ଏ ସ୍ଥଳରେ ସ୍ମରଣୀୟ, ପଣ୍ଡିତ ନୀଳକଣ୍ଠ ଚର୍ଯ୍ୟାର ଓଡ଼ିଆତ୍ୱ ଅନ୍ୟ ଦୁଇଟି ଭିତ୍ତିରେ ସ୍ୱୀକାର କରୁଥିଲେ ହେଁ ଧାର୍ମିକଭିତ୍ତିକୁ ଗ୍ରହଣ କରନ୍ତି ନାହିଁ । ତାଙ୍କ ମତରେ ତାନ୍ତ୍ରିକ ବୌଦ୍ଧସହଜିଆ ଧର୍ମ—ବଙ୍ଗାଳୀଧର୍ମ (୧) ବାସ୍ତବରେ ଧାର୍ମିକ ଓ ଐତିହାସିକ ଭିତ୍ତି ଆଲୋଚନାରେ କେବଳ ଆନୁଷଙ୍ଗିକ ବିଷୟ । ବର୍ତ୍ତମାନ ବହୁ ପ୍ରମାଣ ଉପସ୍ଥାପିତ କରି ଅନ୍ୟାନ୍ୟ ପ୍ରଦେଶରେ ସାହିତ୍ୟିକଗଣ ତାଙ୍କ ଅଞ୍ଚଳରେ ସିଦ୍ଧାଚାର୍ଯ୍ୟମାନଙ୍କର ଜନ୍ମ ଏବଂ ତାଙ୍କ ସମାଜ ଓ ସାହିତ୍ୟରେ ସେମାନଙ୍କର ଉଲ୍ଲେଖ ଦର୍ଶାଇ ଦେଲେଣି । ଏହି ଦୁଇଟି ଦୃଷ୍ଟିରୁ ବିଚାର କଲେ, ମନେହୁଏ, ଚର୍ଯ୍ୟା ସମଗ୍ର ପୂର୍ବଭାରତର (ପୂର୍ବାପରାନ୍ତକ-ତାରାନାଥ) ସାହିତ୍ୟ ଭାବରେ ଗ୍ରହଣୀୟ ହେବା ଉଚିତ । କିନ୍ତୁ ଭାଷାତାତ୍ତ୍ୱିକ ଭିତ୍ତିରେ ଚର୍ଯ୍ୟାର ଆଲୋଚନା ଏବେ ବି ଅପୂର୍ଣ୍ଣ । ଐତିହାସିକ ରୀତିରେ ଆଲୋଚନା କରି ଚର୍ଯ୍ୟାଭାଷାର ଧ୍ୱନି ଓ ରୂପ ଯେ ଆଧୁନିକ ଓଡ଼ିଆଭାଷାର ଏକ ପ୍ରାଚୀନ ଅବସ୍ଥାକୁ ନିର୍ଦ୍ଦେଶ କରେ, ଏହା ବର୍ତ୍ତମାନ ପ୍ରମାଣିତ ହେବା ଉଚିତ । Oriental Conference ର ପାଟନା ଅଧିବେଶନରେ ଶ୍ରୀଯୁକ୍ତ ପ୍ରହରାଜଙ୍କର ଏହି ଉକ୍ତିଟି ଆମର ଏକାନ୍ତ ସ୍ମରଣୀୟ—"Before we can claim the fruits of the Mohamohapadya's labours to be ours, we must devote much more research to the subject than we have done yet and unearth some materials from which

(୧) ଓଡ଼ିଆ ସାହିତ୍ୟର କ୍ରମପରିଣାମ, ୧ମ ଭାଗ ପୃ. ୧୪୪-୫୦ (କଟକ ୧୯୪୮)

we can independently establish that the language and script used in the Nepales manuscripts and Oriya and not Bengalee" (୧)

ଚର୍ଯ୍ୟାଭାଷାର ବ୍ୟାକରଣ ଡ. ସୁନୀତି କୁମାର ଚଟ୍ଟୋପାଧ୍ୟାୟ, ମଣୀନ୍ଦ୍ରମୋହନ ବସୁ ଓ ସୁକୁମାର ସେନ ପ୍ରମୁଖ ପୂର୍ବରୁ ତୁଳନାତ୍ମକ ଓ ଐତିହାସିକ ରୀତିରେ ଆଲୋଚନା କରିଯାଇଅଛନ୍ତି । ବର୍ତ୍ତମାନ ବର୍ଣ୍ଣନାତ୍ମକ-ରୀତିରେ ଏ ଦିଗରେ ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରିଛନ୍ତି ଡ. ତାରାପଦ ମୁଖାର୍ଜୀ । ତାଙ୍କର ଆଲୋଚନାଭିତ୍ତିରେ ନିମ୍ନରେ ସଂକ୍ଷେପତଃ ଚର୍ଯ୍ୟାର ଭାଷାତତ୍ତ୍ୱ ବର୍ଣ୍ଣନା କରାଯାଉଛି ।

ଚର୍ଯ୍ୟାଭାଷାରେ ବିଶେଷ୍ୟପଦଗୁଡ଼ିକ ସ୍ୱରାନ୍ତ । ଅ, ଆ, ଇ, ଈ, ଉ, ଓକାରାନ୍ତ ପଦ ପରିଦୃଷ୍ଟ ହୁଏ । ବିଶେଷ୍ୟ ପଦଗୁଡ଼ିକର ରୂପ ପରିବର୍ତ୍ତିତ ନହୋଇ ତହିଁରେ ବିଭକ୍ତି ପ୍ରତ୍ୟୟ ଯୋଗକରାଯାଇଛି ।

ଏଥିରେ ବହୁବଚନାତ୍ମକ ପ୍ରତ୍ୟୟ ନାହିଁ । ବହୁବଚନବୋଧକ ଶବ୍ଦ ବିଶେଷ୍ୟପଦ ସହିତ ଯୋଗ କରାଯାଇଛି । ଏପରି ପ୍ରୟୋଗର ତିନି ପ୍ରକାର ଦୃଷ୍ଟାନ୍ତ ଦେଖାଯାଏ । (କ) ଯୌଗିକ ବିଶେଷ୍ୟପଦ (ବହୁଜନ, କୁଳଜଜନ), (ଖ) ବିଶେଷଣ+ବିଶେଷ୍ୟ (ସକଳ ସମାହିଅ, ନାନାତରୁ, ବିବିହବକ୍ଖନ); (ଗ) ପୌନପୌନିକ ପ୍ରୟୋଗ (ଉଁଚା ଉଁଚା ପାବତ) ।

ଚର୍ଯ୍ୟାଭାଷାର ଲିଙ୍ଗବିଧି ପ୍ରତି ଦୃଷ୍ଟିଦେଲେ ଦେଖାଯାଏ ଯେ, (କ) ବିଶେଷଣ ଓ ବିଶେଷ୍ୟ ମଧ୍ୟରେ ଅନ୍ୱୟ (ଫିଟେଲି ଅନ୍ଧାରି, ଉଧଲି, ବଲି, ଏକେଲି ଶବରି, ରୁ ପଇଠେଲି ଗରିହକ), (ଖ) ସମ୍ବନ୍ଧପଦ ଓ ବିଶେଷ୍ୟ ମଧ୍ୟରେ ଅନ୍ୱୟ (ହାଡ଼େର ମାଲି, ଘୁଣ୍ଟିର ମାଲି, ଦୁ. ରଖେର ତେଲୁଲି), (ଗ) ବିଶେଷ୍ୟପଦ ଓ ସମାପିକା କ୍ରିୟା ମଧ୍ୟରେ ଅନ୍ୱୟ (ରାତି ପୋହାଇଲି, ଖେପି ଭୁଇଲି, ଲାଗେଲି ତାଲି, ଘଲିଲି ହାଡ଼େର ମାଲି, ରୁ କଟେଲି ଭବ ବଲି, ଚଲିଲି କାହ୍ନୁ) ।

ଏଥିରେ ନିମ୍ନଲିଖିତ କାରକ ପ୍ରତ୍ୟୟ ଦେଖାଯାଏ—ହି, ହିଁ ତ, କ, ର-ରେ-ଏର-ଏରି-ଏରେ, ଏ-ଏଁ । ଚର୍ଯ୍ୟାଭାଷାରେ କାରକ-ପ୍ରତ୍ୟୟର ବ୍ୟବହାର କଦାଚିତ ହୋଇଛି । ବୋଧହୁଏ ଶତକଡ଼ା ପାଞ୍ଚ ପଦ ପ୍ରତ୍ୟୟଯୁକ୍ତ । ତହିଁରୁ ପୁଣି କେବଳ ଏ-ଏଁ ପ୍ରତ୍ୟୟଯୁକ୍ତ ପଦ ଶତକଡ଼ା ସାଢ଼େ ଚାରି ଭାଗ । ଏଥିରେ କାରକର ଦୁଇଟି ରୂପ ଅଛି—ସାଧାରଣ ଓ ତିର୍ଯ୍ୟକ (Oblique) । ସାଧାରଣ ରୂପରେ ପ୍ରତ୍ୟୟ ଯୋଗକରାଯାଇ ନାହିଁ । ଯଥା :—କର୍ତ୍ତୃ—ଲୁଇ ଭଣଇ, କର୍ମ—ଗୁରୁ ଉଏସଇ ସୀସ; କରଣ—ଦୁଆରି ଉଏସେ ନିଅଡ଼ି ଜନ

(୧) Proceedings of the Oriental Conference, Vol-VI, P, 381 (Patna-1930)

ଭର, ଅପାଦାନ—ବଦୁଜନ ଲୋଅ ଚୋରେ କଣ୍ଣ ନ ମେଲଇ; ସମ୍ବନ୍ଧ—ଡୋମ୍ବିଘରେ; ଅଧିକରଣ—ନଳିନ ବନ ପଇସି ନିବଡା । ଏହି କ୍ଷେତ୍ରରେ ଅର୍ଥତତ୍ତ୍ୱ ପ୍ରତି ଦୃଷ୍ଟିଦେଇ ବିଶେଷ୍ୟପଦମାନଙ୍କର କାରକ ନିର୍ଦ୍ଧାରଣ କରାଯାଏ । କାରକର ଗାର୍ଠନିକରୂପରେ ଉପରୋକ୍ତ ପାଞ୍ଚ ପ୍ରକାର ପ୍ରତ୍ୟୟଯୁକ୍ତ ହୁଏ । କ-ଏବଂ ର-ଏର ଇତ୍ୟାଦି ସମ୍ବନ୍ଧବାଚକ ପ୍ରତ୍ୟୟ (ଛନ୍ଦକ, ବନ୍ଧ, ଠାକୁରକ ପରି ନିବଗ୍ଗି, ବାଣ୍ଡର ପାଶେର) । ସାଧାରଣତଃ ଦେଖାଯାଏ, ଅକାରାନ୍ତ ବିଶେଷ୍ୟପଦ ସହିତ-କ, ଏର-ଏରି, ଆକାରାନ୍ତ ପଦ ସହିତ-ର-ଏର; ଇକାରାନ୍ତ ପଦ ସହିତ-ର-ଏର ଯୋଗ ହୋଇଛି । ଅଧିକରଣ କାରକ ପ୍ରତ୍ୟୟ-ହି-ହିଁ, ତ, ଏ ଏଁ-ଅକାରାନ୍ତ ପଦରେ ତ, ହି, ଏ-ଏବଂ ଇ-କାରାନ୍ତ ପଦରେ-ତ ଏ-ଯୋଗ ହୋଇଛି । କେତେକ ସ୍ଥଳରେ ଏହି ପ୍ରତ୍ୟୟମାନ କରଣ ଓ ଅପାଦାନ କାରକ ଅର୍ଥରେ ମଧ୍ୟ ପ୍ରୟୋଗ ହୋଇଛି, (ମୋହିଅହି, ଗଅଣତ ଅବଣା ଗବଣ, ନାବେଁ, କୁଠାରେ ହୁଏଁ) କର୍ମବାଚ୍ୟରେ -ଏ ପ୍ରତ୍ୟୟ ଦେଖାଯାଏ । ଏହା ଅନୁକ୍ତ କର୍ତ୍ତା ରୂପେ ଗ୍ରହଣୀୟ (କାହ୍ନେ ଗାଇଅ କାମ ଚଣ୍ଡାଲୀ, ଆଳଏ କାଳଏ ବାଟ ରୁନ୍ଧେଲା) ଆଉ କେତେକ ବିଶେଷ ପ୍ରତ୍ୟୟ ଲକ୍ଷଣୀୟ—ଅଧିକରଣ ବାଚକ—ଏତେ—(ସୁଖଦୁଖେତେଁ)-ଇ-(ବଢ଼ସଇ) ଓ ଅପାଦାନ ବାଚକ-ହୁ (ଖେ ପନ୍ତୁ) ।

ଚର୍ଯାଭାଷାରେ ନିମ୍ନଲିଖିତ ତଦ୍ଧିତ ପ୍ରତ୍ୟୟମାନ ଅଛି—ପଣ; (ଘରପଣ), ବାଲ (ଅଙ୍କବାଲ); ଆଲ୍ଲୁ (ନିଦାଲ୍ଲୁ), ଆଲ (ଶବରାଲ) ଏଲ (ପରେଲ), ଡ଼ି (ବାପୁଡ଼ି), ଆ (ଗରୁଆ), ଲ (କାହ୍ନିଲ) ।

ଯୌଗିକ ବିଶେଷ୍ୟପଦର ବହୁଳତା ଚର୍ଯାଭାଷାର ଏକ ବିଶେଷତ୍ୱ । ଏହା ଫଳରେ ବିଭକ୍ତି ପ୍ରତ୍ୟୟର ଅଭାବ ଦେଖାଯାଏ । ନିମ୍ନଲିଖିତ ତ୍ରିବିଧ ଯୋଗ ଲକ୍ଷଣୀୟ—[କ] ବିଶେଷଣ+ବିଶେଷ୍ୟ, [ଖ] ସଂଖ୍ୟାବାଚକ+ବିଶେଷ୍ୟ, [ଗ] ବିଶେଷ୍ୟ+ବିଶେଷ୍ୟ (କାଆ ତରୁ, ଦେହ ନଅର, ରବି ଶଶୀ, ଗନ୍ଧ ପରଶ ରସ, କର୍ଣ୍ଣ କୁଣ୍ଡଳ ବଜ୍ରଧାରୀ) ।

ଚର୍ଯାରେ ନିମ୍ନଲିଖିତ ସଂଖ୍ୟାବାଚକ ଶବ୍ଦ ସବୁ ମିଳେ । ଏକ, ଏକୁ, ଏକେ, ଦୁଇ, ଦୋ, ଦୁ, ବେନି, ତିନି, ତିନା, ଚଥ, ଚ, ଚୌ, ଚ୍ଛର, ପାଞ୍ଚ, ଛଡ଼, ଅଠ, ନଅ, ଦଶ, ଦହ, ବତିଶ, ଚୌଷଠୀ, ଦଶମୀ, ଦ୍ୱାଦଶା ଗଠନ-ତତ୍ତ୍ୱ ଦୃଷ୍ଟିରୁ ସଂଖ୍ୟାବାଚକ ଶବ୍ଦ ବିଶେଷ୍ୟପଦ ଏବଂ ପ୍ରତ୍ୟୟମୁକ୍ତ ହୋଇଛି । ଯଥା – ଏକେ ଶର ସନ୍ଧାନେ, ପଞ୍ଚ ବି ଡାଲା ଅର୍ଥ-ତତ୍ତ୍ୱ ଦୃଷ୍ଟିରୁ ଉଭୟ ବିଶେଷ୍ୟ ଓ ବିଶେଷଣରୂପେ ଗ୍ରହଣୀୟ । କିନ୍ତୁ କେବଳ ‘ବେନି’ ସର୍ବଦା ବିଶେଷ୍ୟରୂପେ ପ୍ରଯୁକ୍ତ ହୋଇଛି ।

ଚର୍ଯାଭାଷାରେ କେତେକ ସନ୍ଧି ଦେଖାଯାଏ । ଯଥା—ଭାବାଭାବ, ସ୍ୱପରାପର, ବାକ୍‌ପଥାତୀତ, ଅଜରାମର ଇତ୍ୟାଦି ।

ଚର୍ଯାର ଭାଷାରେ ସର୍ବନାମର ବୈଚିତ୍ର୍ୟ ଲକ୍ଷଣୀୟ । ସମସ୍ତ ସର୍ବନାମ ପଦଗୁଡ଼ିକୁ ନିମ୍ନଲିଖିତ ରୂପେ ବର୍ଗୀକୃତ କରାଯାଇ ପାରିବ । [୧] ବ୍ୟକ୍ତିବାଚକ—ପ୍ରଥମ ପୁରୁଷ, ଦ୍ୱିତୀୟ ପୁରୁଷ, ତୃତୀୟ ପୁରୁଷ ଓ ନିର୍ଦ୍ଦେଶକ, (୨) ସମ୍ବନ୍ଧ ସୂଚକ, (୩) ସହ ସମ୍ବନ୍ଧ-ବାଚକ (୪) ପ୍ରଶ୍ନବାଚକ, (୫) କ୍ରିୟାବିଶେଷଣାତ୍ମକ ସର୍ବନାମ ।

ପ୍ରଥମ ପୁରୁଷ—ଆମ୍‌ହେ, ଅମ୍‌ହେ, ଆହ୍‌ମେ; ହାଉଁ, ମ-ମଇ, ମୋଏ, ମୋ, ମୋର, ମୋହର, ମୋରି, ମେରି, ମହ୍ନୁ ।

ଦ୍ୱିତୀୟ ପୁରୁଷ—ତୁମ୍‌ହେ, ତୁହ୍‌ମେ; ତଇ, ତୋ, ତୁ, ତୋଏ, ତୋରେ, ତୋହରେ, ତୋର, ତୋହର, ତୋହ୍‌ର, ତୋହ୍ବର, ତୋହ୍ନ୍ର ।

ତୃତୀୟ ପୁରୁଷ ଓ ନିର୍ଦ୍ଦେଶକ } ସୋ-ସୋଇ, ସ, ସେ, ତ, ତାସୁ, ତା-ହେର; ବହୁବଚନ—ତେ, ତେତେ ।

ସମ୍ବନ୍ଧବାଚକ—ଯୋ—ଯ, ଯସୁ, ଯାହେର; ବହୁବଚନ—ଯେ, ଯେଯେ ।

ସହସମ୍ବନ୍ଧବାଚକ—ଯୋ, ସୋ, ଯେଯେ-ତେତେ, ଯସୁ-ତସୁ ଇତ୍ୟାଦି ।

ପ୍ରଶ୍ନବାଚକ— କୋ-କୋଏ, କାହେରେ, କାହ୍ବରି ।

କ୍ରିୟାବିଶେଷଣ-ସର୍ବନାମ—ଡହି, ଏଥ, ଏଥୁ, ଯଇସୋ-ତଇସୋ, ଯଥା-ତଥା, ଯଇସା ତଇସା, ଜିମ-ତିମ, ଜମ-ତମ, ଯବେ-ତବେ କହି, କ କିସ, କଇସେ, କିମ୍ପି, କଇଶନ ଇତ୍ୟାଦି ।

କ୍ରିୟା – ସମାପିକା କ୍ରିୟାର ଗଠନରେ ଦେଖାଯାଏ ଧାତୁ+କାଳ-ନିର୍ଦ୍ଦେଶକ+ପ୍ରତ୍ୟୟ । ଧାତୁ ସାଧାରଣ (ଭଣ, ନାଚ୍‌, ପଇସ୍‌) କିମ୍ବା ବିସ୍ତାରିତ (ବୁଝ୍‌+ଇ, କର+ଇ) କର୍ମବାଚ୍ୟରେ ବିସ୍ତାରିତ ଧାତୁର ପ୍ରୟୋଗ ଦେଖାଯାଏ । କ୍ରିୟାରୂପରେ ପାଞ୍ଚକାଳ (ବର୍ତ୍ତମାନ, ଅତୀତ, ଭବିଷ୍ୟତ ନିତ୍ୟପ୍ରବୃତ୍ତି, କ୍ରିୟାତ୍ମକ ବିଶେଷଣ) ଦୁଇ ଭାବ (ନିର୍ଦ୍ଦେଶକ, ଅନୁଜ୍ଞା) ତିନି ପୁରୁଷ (ପ୍ରଥମ, ଦ୍ୱିତୀୟ, ତୃତୀୟ ପୁରୁଷ) ଦ୍ୱିବାଚ୍ୟ (କର୍ତ୍ତୃବାଚ୍ୟ, କର୍ମବାଚ୍ୟ) ଦେଖାଯାଏ ।

ବର୍ତ୍ତମାନ ;—ଧାତୁ+ବ୍ୟକ୍ତିବୋଧକ ଚିହ୍ନ (ନାଚ୍‌+ଅଅ, ପିବ୍‌+ଅଇ) ।

ଅତୀତ :—ଧାତୁ+କାଳବୋଧକ—ଲ, ଇଲ, ଏଲ, ଅଲ+ବ୍ୟକ୍ତିବୋଧକ ଚିହ୍ନ (ନି+ଲ୍‌+ଅ, ରଚ୍ଚ+ଏଲ+ଆ, ଦଧ୍‌+ଅଲ୍‌+ଇ) ।

ଭବିଷ୍ୟତ :—ଧାତୁ+ଇବ୍‌+ବ୍ୟକ୍ତିବୋଧକ ଚିହ୍ନ (କର୍‌+ଇବ୍‌+ଅ; କହ୍‌+ଇବ୍‌+ଅ) ।

ନିତ୍ୟପ୍ରବୃତ୍ତି :—ଧାତୁ+ନ୍ତ ବା ଅନ୍ତ (ହୋ+ନ୍ତ, ଭଣ୍‌+ଅନ୍ତ) ।

କ୍ରିୟାତ୍ମକ ବିଶେଷଣ ;—ପଇଠୋ, ବଇଠା, ଢଠା, ନଠା, ପଇଠ ଇତ୍ୟାଦି ।

ନିର୍ଦ୍ଦେଶକ :—ବର୍ତ୍ତମାନ ୧ମ ପୁରୁଷ—ହୁଁ, ମି (ଲେ+ହୁ, ଲେ+ମି, ମାର୍+ଅମି) ।

୨ୟ ପୁରୁଷ-ସି,, ଅସି (ଯା+ସି, ଆଇସ୍ +ଅସି, ପୁଛ୍+ଅସି) ।

୩ୟ ପୁରୁଷ-ଅଇ, ଅ, ଅଏ, ଅଅ, ଥି (ଭଣ୍+ଅଇ, ଯା+ଅ, ନାଚ୍+ଅଅ, ଲଭ୍+ଅଏ, ବୋଲ୍+ଥି)

ଅତୀତ—୧ମ-ପୁରୁଷ—ଏଲ୍, ଇଲ୍, (ସୁତ୍+ଏଲ୍+ଇ, ଅଦ୍ଧାର୍+ଇଲ୍ +ଅ) ।

୨ୟ ପୁରୁଷ—ଏସି, ଏସ (ନି+ଲ+ଏସି, ଅଚ୍+ଇଲ୍+ଏସ୍) ।

୩ୟ ପୁରୁଷ—ଇଲ୍, ଏଲ୍ (ଚଳ୍+ଇଲ୍ +ଆ, ମାଡ୍+ଏଲ୍+ଆ) ।

ଭବିଷ୍ୟନ୍ତ—୧ମ ପୁରୁଷ—ଇବ୍+ଅ, ଇ, ଏ (ଶୁ+ଇବ୍+ଅ, କର+ଇବ୍+ଏ, ଢ+ବ+ଇ) ।

୨ୟ ପୁରୁଷ—ଇବ୍+ଅ, ଏ (ହୋ+ଇବ୍+ଅ, ଯା+ଇବ୍+ଏ) ।

୩ୟ ପୁରୁଷ—ଇବ୍+ଅ (କର୍+ଇବ୍+ଅ) ।

ଅନୁଜ୍ଞା—ଦ୍ୱିତୀୟ ପୁରୁଷର ପ୍ରତ୍ୟୟ ଅ, ହ, ଅହ, ହୁ (ବାନ୍ଧ୍+ଅ, ହୋ+ହ, ବନ୍ଧ +ଅହ, ଫିଟ୍+ଅଉ) ।

କର୍ମବାଚ୍ୟରେ ବିସ୍ତାରିତ ଧାତୁ ସଙ୍ଗେ ପ୍ରତ୍ୟୟ ସଂଯୋଜିତ ମୂଳଧାତୁ ସହିତ ଇ-ଯୋଗ କରି ବିସ୍ତାରିତ ଧାତୁ ଗଠିତ । ଯଥା :—କର+ଅଇ = କରଇ । ସାଧାରଣ ଧାତୁ ଏବଂ କର୍+ଇ+ଆଇ = କରିଅଇ ବିସ୍ତାରିତ ଧାତୁ । କର୍ମବାଚ୍ୟରେ ନିମ୍ନଲିଖିତ ପ୍ରତ୍ୟୟମାନ ଦେଖାଯାଏ—ଉ, ଆ, ଅ, ଅଇ (ଗାଇଉ, ମରିଡ଼ିଉ, ଘୁଣିଆ, ତୋଡ଼ିଅ, ମରିଅଛି, ଭାବିଥଇ ଇତ୍ୟାଦି) ଅସମାପିକା କ୍ରିୟା ତ୍ରିବିଧ—ଅସମାପ୍ତ କ୍ରିୟା, କ୍ରିୟାର୍ଥ କ୍ରିୟା, ସର୍ତ୍ତମୂଳକ କ୍ରିୟା । ଧାତୁ ସହିତ ଇଅ, ଇଆ, ଇ ପ୍ରତ୍ୟୟଯୁକ୍ତ ହୋଇ ଅସମାପ୍ତ କ୍ରିୟା ସୂଚିତ, (ପୁଛିଅ, ବିବାହିଆ, ପଇସି) ଅନ୍ତେ ପ୍ରତ୍ୟୟ ଯୋଗରେ କ୍ରିୟାର୍ଥ କ୍ରିୟା ସୂଚିତ, (ଜାଗନ୍ତେ, ଅଛନ୍ତେ) ଇଲେ ପ୍ରତ୍ୟୟ-ଯୋଗରେ ସର୍ତ୍ତମୂଳକ କ୍ରିୟା ସୂଚିତ, (ଚଢ଼ିଲେ) ଅନେକସ୍ଥଳରେ ଅସମାପିକା କ୍ରିୟାର ପୌନଃପୌନିକ ପ୍ରୟୋଗ ଦେଖାଯାଏ, ଯଥା—ଗ୍ରେଇ ଗ୍ରେଇ, ରଚି ରଚି, ଗୃହିଁନ୍ତେ ଗୃହିଁନ୍ତେ । କ୍ରିୟା-ବିଶେଷ୍ୟ ଧାତୁ ସହ ପ୍ରତ୍ୟୟଯୋଗରେ ନିଷ୍ପନ୍ନ ହୁଏ । -ଅନ-ପ୍ରତ୍ୟୟଯୁକ୍ତ (ଧାରଣ,

ଲେପନ ଇତ୍ୟାଦି) -ଅବା-ପ୍ରତ୍ୟୟଯୁକ୍ତ (ବୋଲବା, ବାହବା ଇତ୍ୟାଦି) ପଦ ଦେଖାଯାଏ ।

ଯୌଗିକ କ୍ରିୟାପଦ ତ୍ରିବିଧରୂପରେ ଦେଖାଯାଏ—ଅସମାପିକା + ସମାପିକା କ୍ରିୟା (ପୁଚ୍ଛିଅ ଜାଣ, ଗୁଣିଆ ଲେହୁଁ), କ୍ରିୟା ବିଶେଷ୍ୟ + ନ (ଧରଣ ନ ଯାଇ, ବୋଲବାନ ଯାଏ) କ୍ରିୟାତ୍ମକ ବିଶେଷଣ + ସମାପିକାକ୍ରିୟା (ବଙ୍କିଲ ଯାଅ) କ୍ରିୟାତ୍ମକ ବିଶେଷଣ—ଅତୀତକାଳରୂପ (ଦୁହିଲ ଦୁଧ, ପଇଠେଲ ଗବାହକ) କର୍ମବାଚ ରୂପ (ଗୁଲିଅ ଶଣହର, ଫାଡ଼ିଅ ମହାତରୁ ଇତ୍ୟାଦି) ନାସ୍ତିବାଚକ କ୍ରିୟା—ନାହିଁ । ଏହା ବ୍ୟତୀତ ନ, ମା, ମ, ନୌ, ନୋ ଇତ୍ୟାଦି ଦେଖାଯାଏ ।

ଚର୍ଯାପଦର ବାକ୍ୟଗଠନତନ୍ତ୍ର ବିଗ୍ଭର ନ କଲେ ବ୍ୟାକରଣ ରଚନା ଆଦୌ ସମ୍ଭବ ହେବ ନାହିଁ । ବାକ୍ୟରେ ଶବ୍ଦର ପ୍ରୟୋଗ ଓ ଅର୍ଥସଂଗତି ପ୍ରତି ଦୃଷ୍ଟି ଦେଇ ପଦର ସ୍ୱରୂପ ନିର୍ଣ୍ଣୟ କରାଯାଇ ପାରିବ । ଏକ ଏକ ବାକ୍ୟରେ ଏକାଧିକ ସମାପିକାକ୍ରିୟା ଅଛି ତ ଏକ ଏକ ବାକ୍ୟରେ ଆଦୌ ନାହିଁ । ଯଥା—ମାରମିଁହୋମ୍ନି ଲେମି ପରାଣ ଗୁ; କାଅ ତରୁବର ପଞ୍ଚ ବି ଡାଳ—ବାକ୍ୟରେ ପଦସଂସ୍ଥାନର ନିର୍ଦ୍ଦିଷ୍ଟ ନିୟମ କିଛି ନାହିଁ । ତଥାପି ବାକ୍ୟ ମଧ୍ୟରେ ପଦସମଷ୍ଟି ଏକ ନିର୍ଦ୍ଦିଷ୍ଟ ରୀତିରେ ପ୍ରୟୋଗ ହୋଇଥିବା ଦେଖାଯାଏ ।

## ସଂକେତ-ବିବୃତି :—

କ—ବୌଦ୍ଧଗାନ ଓ ଦୋହାଁ-୧ମ ସଂସ୍କରଣ, ୧୩୨୩ [ଶାସ୍ତ୍ରୀ]

କା— ନୂତନ ସଂସ୍କରଣ, ୧୩୬୬ [ଶାସ୍ତ୍ରୀ ଭଟ୍ଟାଚାର୍ଯ୍ୟ]

ଖ—Buddhist Mystic Songs, Dacca University Studies, 1940 (ଶହୀଦୁଲ୍ଲାହ୍)

ଗ—ଚର୍ଯାପଦ-କଲିକତା ବିଶ୍ୱବିଦ୍ୟାଳୟ, ୧୯୪୩ [ବସୁ]

ଘ—ଚର୍ଯାଗୀତି-ପଦାବଳୀ, ବର୍ଦ୍ଧମାନ ସାହିତ୍ୟସଭା, ୧୯୫୬ [ସେନ୍]

ଙ—ମୁନିଦତ୍ତକୃତ ସଂସ୍କୃତ ଟୀକା

ଚ—ଚର୍ଯାଗୀତି କୋଷ-ବିଶ୍ୱଭାରତୀ, ୧୯୫୬ [ବାଗ୍‌ଚୀ-ଶାନ୍ତିଭିକ୍ଷୁ]

ପୁ. ନି.—ପୁରାତତ୍ତ୍ୱ ନିବନ୍ଧାବଳୀ-ପ୍ରୟାଗ, ୧୯୩୭ [ସାଂକୃତ୍ୟାୟନ]

ହି. କା. ଧା.—ହିନ୍ଦୀ କାବ୍ୟଧାରା-ଏଲାହାବାଦ, ୧୯୪୫ [ ,, ]

J. D. L.-Journal of the Department of Letters. Calcutta University, Vol. XXX, 1938 (ବାଗ୍‌ଚୀ)

Ob. R. C.—Obscure Religious Cults, 2nd. edition, 1962 (ଦାସଗୁପ୍ତ)

O. B. L. T.—Old Bengali Language and Text, Calcutta, 1963 (ମୁଖାର୍ଜି)

ତିବ୍ବତୀ ଅନୁବାଦ—Materials for Critical study of the old Bengali Carya Padas, Calcutta University, 1938 (ବାଗ୍‌ଚୀ)

ବାଗ୍‌ଚୀ (ଦୋହା)—Doha Kosa, Calcutta University. 1935

ଦ୍ର.—ଦ୍ରଷ୍ଟବ୍ୟ ।

ତୁ—ତୁଳନୀୟ

# ୧—ଲୁଇପା

ଲୁଇପା ଆଦିସିଦ୍ଧ ବୋଲି ଅନେକେ ମନେକରନ୍ତି । ନେପାଳ ଓ ତିବ୍ବତର ସିଦ୍ଧ-ପରମ୍ପରାରେ ଏହି ମତ ପ୍ରଚଳିତ ଏବଂ ପାଗ୍‌ସମ୍ ଜୋନ୍ ଜାଙ୍ଗ୍ ଦ୍ୱାରା ଏହା ସମର୍ଥିତ । ଚର୍ଯାଚର୍ଯବିନିଶ୍ଚୟରେ ଏହିହେତୁ ତାଙ୍କର ଗୀତିକା ପ୍ରଥମେ ପ୍ରଦତ୍ତ ହୋଇଛି ବୋଲି ପଣ୍ଡିତ ହରପ୍ରସାଦଙ୍କର ଅନୁମାନ; କିନ୍ତୁ ମହାପଣ୍ଡିତ ରାହୁଲ ସାଂକୃତ୍ୟାୟନ କହନ୍ତି ଯେ ସରହପା ଆଦିସିଦ୍ଧ ଏବଂ ଗୁରୁପରମ୍ପରାରେ ଲୁଇଙ୍କର ସ୍ଥାନ ଏହିପରି—ସରହ>ଶବର>ଲୁଇ (ପୁ. ନି. ପୃ.-୧୭୪) । ପାଗ୍ ସମ୍ ଜୋନ୍ ଜାଙ୍ଗ୍ ଅନୁସାରେ ସିଦ୍ଧ ଲୁଇପା ଉଡ୍‌ଡ଼ୀୟାନ ପ୍ରଦେଶରେ ଏକ ମତ୍ସ୍ୟଜୀବୀ କୁଳରେ ଜନ୍ମଗ୍ରହଣ କରିଥିଲେ ଏବଂ ପରବର୍ତ୍ତୀ କାଳରେ ଶିକ୍ଷା-ଦୀକ୍ଷା ବଳରେ ସ୍ଥାନୀୟ ରାଜାଙ୍କର କରଣ ହୋଇ ପାରିଥିଲେ । ସେତେବେଳେ ସେ ସାମନ୍ତଶୁଭ ନାମରେ ପରିଚିତ ଥିଲେ; କିନ୍ତୁ ତାରନାଥଙ୍କ ବିବରଣୀରେ ସେ ପଶ୍ଚିମାଞ୍ଚଳର ଉଡ୍ଡ୍ୟାନ ରାଜା ସାମନ୍ତଶୁଭଙ୍କ କରଣ ରୂପେ ବର୍ଣ୍ଣିତ । ଅନ୍ୟତ୍ର ତେଙ୍ଗୁର (Bstanngyur) ଗ୍ରନ୍ଥ ତାଲିକାରେ ତାଙ୍କୁ ମହାଯୋଗୀଶ୍ୱର ରୂପେ ବର୍ଣ୍ଣନା କରାଯାଇ ସେ ବଙ୍ଗାଳୀ ବୋଲି ସ୍ପଷ୍ଟ ଉଲ୍ଲେଖ କରାଯାଇଛି । ଉଡ୍‌ଡ଼ୀୟାନ ପ୍ରଦେଶର ଅବସ୍ଥିତି ସମ୍ପର୍କରେ ଆଧୁନିକ କାଳର ମତପାର୍ଥକ୍ୟ ଥିବା ହେତୁ ତାଙ୍କର ବାସସ୍ଥାନ ନିର୍ଣ୍ଣୟ କରିବାକୁ ଯାଇ Wassiliew ଉକ୍ତସ୍ଥିତିର ଉଲ୍ଲେଖ କରିଛନ୍ତି । (Note to Taranath's Geschichte, P. 319 । ଡ. ବିନୟତୋଷ ଭଟ୍ଟାଚାର୍ଯ୍ୟ ତେଙ୍ଗୁର ତାଲିକା ଓ ପାଗ୍ ସମ୍ ଜୋନ୍ ଜାଙ୍ଗ୍ ମଧ୍ୟରେ ଥିବା ବିରୋଧ ନିରାକରଣ କରିବାକୁ ଯାଇ ଆସାମର ପଶ୍ଚିମାଞ୍ଚଳକୁ ନିର୍ଦ୍ଦେଶ କରିଛନ୍ତି ଏବଂ ତାହା ସେ ସମୟରେ ବଙ୍ଗଳାର ଅନ୍ତର୍ଗତ ଥିଲା ବୋଲି ମତପ୍ରକାଶ କରିଛନ୍ତି । (ସାଧନମାଳା-୨ୟ ପୃ. XXXIX) କିନ୍ତୁ Gruenwedelଙ୍କ ମତରେ ସେ ମଗଧ ଅନ୍ତର୍ଗତ ଶାଳିପୁତ୍ରଠାରେ ରାଜା ଇନ୍ଦ୍ରପାଳଙ୍କ ଅଧୀନରେ କାର୍ଯ୍ୟ କରୁଥିଲେ । (Geschichte D. Mahasidhas) । ରାହୁଲ ସାଂକୃତ୍ୟାୟନଙ୍କ ମତରେ ସେ ଥିଲେ ରଜା ଧର୍ମପାଳ (ମଗଧ ?) ଙ୍କ କାୟସ୍ଥ । ଥରେ ରାଜା ଧର୍ମପାଳ ନିଜ ରାଜ୍ୟର ବାରେନ୍ଦ୍ର ପ୍ରଦେଶରେ ଅବସ୍ଥାନ କରୁଥିଲାବେଳେ ସିଦ୍ଧ ଶବରୀପା ସେଠାରେ ଭିକ୍ଷା ଉଦ୍ଦେଶ୍ୟରେ ଉପନୀତ ହୋଇଥିଲେ । ଲୁଇଙ୍କର ତାଙ୍କ ସହିତ ସାକ୍ଷାତ ସେହିଠାରେ ହୋଇଥିଲା ଏବଂ ତାଙ୍କ ଦ୍ୱାରା ପ୍ରଭାବିତ ହୋଇ ସେ ଦୀକ୍ଷାଗ୍ରହଣପୂର୍ବକ ଯୋଗୀ ହୋଇ ଯାଇଥିଲେ । ତାରନାଥଙ୍କ ଅନୁସାରେ ଶବରୀପାଙ୍କ ଠାରୁ ଦୀକ୍ଷା ନେଇ ସେ ଶ୍ମଶାନ-ସାଧନା କଲେ ଓ ବଜ୍ରବରାହୀ ଉପଲବ୍ଧି କଲେ । ତା ପରେ ବଙ୍ଗଳାକୁ ଯାଇ ଗଙ୍ଗାତଟରେ ବହୁତ ମାଛ ଦେଖି ମାଛ ଭୋଜନ କରି ସିଦ୍ଧିଲାଭ କଲେ । (ସିଦ୍ଧ-ସାହିତ୍ୟ,

ପୃ. ୫୧) । ରାଜମୋହନ ନାଥ ତାଙ୍କ 'କଦଳୀ ରାଜ୍ୟ' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି ଯେ ଲୁଇ ଆସାମର ନଓଗାଁ ଜିଲାର ହୋଜାଇ ବା ଓଡ୍‌ଡ଼ୀୟାନର ଅଧିବାସୀ ଥିଲେ । ସେ ବ୍ରହ୍ମପୁତ୍ର ନଦୀତଟରେ ବାସ କରୁଥିଲେ । ବ୍ରହ୍ମପୁତ୍ରକୁ ଲୌହିତ୍ୟ କୁହାଯାଉଥିବାରୁ ସେ ଲୌହିତ୍ୟପାଦ ବୋଲି ଆଖ୍ୟାତ ହୋଇଥିଲେ । କାଳକ୍ରମେ ତାହା ପରିବର୍ତ୍ତିତ ହୋଇ ଲୋହି ବା ଲୁଇପାରେ ପରିଣତ ହୋଇଛି ।

ନାଥଧର୍ମର ଆଦିନାଥ ମତ୍ସ୍ୟେନ୍ଦ୍ର ଓ ଲୁଇ ଅଭିନ୍ନ ବୋଲି ଅନେକେ ମତପ୍ରକାଶ କରିଛନ୍ତି । ଗ୍ର୍ୟନ ବେଡ଼େଲ ପ୍ରଥମେ ତାରନାଥଙ୍କ ବିବରଣୀର ସୂତ୍ର ଧରି ଏହି ମତପ୍ରଦାନ କରିଥିଲେ । ଡ. ବାଗ୍‌ଚୀ କୌଲଜ୍ଞାନ ନିର୍ଣ୍ଣୟ ଗ୍ରନ୍ଥର ମୁଖବନ୍ଧରେ ଏ ବିଷୟରେ ସୁବିସ୍ତୃତ ଆଲୋଚନା କରିଛନ୍ତି । ଏହି ମତର ଭିତ୍ତି ହେଉଛି—ତିବ୍ବତୀରେ ଲୁଇଙ୍କର ନାମ Na lto pa ଓ Nai rgya ma za ba ରୂପେ ଲେଖାଯାଇଛି । ଏହି ନାମ ଦୁଇଟିର ଅର୍ଥ ମତ୍ସ୍ୟୋଦର ଓ ମତ୍ସ୍ୟାନ୍ତ୍ରାଦ । ତିବ୍ବତରେ ମିଳୁଥିବା ସିଦ୍ଧାଚାର୍ଯ୍ୟଗଣଙ୍କ ପ୍ରତିକୃତି ମଧ୍ୟରେ ଲୁଇଙ୍କ ପ୍ରତିକୃତିରେ ସେ ଏକ ବୃହତ ମତ୍ସ୍ୟ ଉପରେ ବସି ମତ୍ସ୍ୟ-ଅନ୍ତ୍ର ଭୋଜନରତ ଥିବା ଅଙ୍କିତ ହୋଇଛି । ଲୁଇପା ଓ ମତ୍ସ୍ୟେନ୍ଦ୍ର ଉଭୟେ ଆଦିସିଦ୍ଧ ରୂପେ ପରିଚିତ । ତାରନାଥଙ୍କ ବିବରଣୀରେ ଯୋଗିନୀକୁଳ ତନ୍ତ୍ରର ପ୍ରବର୍ତ୍ତକ ଭାବେ ଲୁଇପାଦ ନାମ ଥିଲା ବେଳେ କୌଳଜ୍ଞାନ ନିର୍ଣ୍ଣୟରେ ମତ୍ସ୍ୟେନ୍ଦ୍ରନାଥ ନାମ ରହିଛି । ଭାରତୀୟ ପରମ୍ପରାରେ ମତ୍ସ୍ୟେନ୍ଦ୍ର ମୀନ ଗର୍ଭରୁ ଜନ୍ମହେବା ପ୍ରଚଳିତ ଥିବା ସ୍ଥଳେ ତିବ୍ବତରେ ଲୁଇପାଙ୍କର ମତ୍ସ୍ୟୋଦର ନାମ ଦ୍ୱାରା ସେହି ପରମ୍ପରା ସମର୍ଥିତ ହୁଏ । ଲୁଇ, ଲୋହିତ, ରୋହିତମାଛ ମଧ୍ୟରେ ଗଣ୍ୟ ବୋଲି ପରିଗଣିତ ହେଉଥିବାରୁ ମତ୍ସ୍ୟେନ୍ଦ୍ର ତାଙ୍କର ଏକ ବିକଳ୍ପନାମ ହୋଇପାରେ । ଲୁଇ ଶବରୀପାଙ୍କ ଶିଷ୍ୟ । ହଠଯୋଗ ପରମ୍ପରାରେ ଶବରନନ୍ଦଙ୍କ ପରେ ମତ୍ସ୍ୟେନ୍ଦ୍ରଙ୍କ ନାମ ମିଳେ । ତେଙ୍ଗୁର ଗ୍ରନ୍ଥ-ତାଲିକାରେ ଲୁଇପା ମତ୍ସ୍ୟଜୀବୀ କୁଳରେ ଜନ୍ମ ହୋଇ-ଥିଲେ ଏବଂ ମତ୍ସ୍ୟ-ଅନ୍ତ୍ର ଭୋଜନପ୍ରିୟ ଥିବା ଉଲ୍ଲେଖ ଅଛି । Sumpa Mkhan Po ମଧ୍ୟ ଲୁଇଙ୍କୁ ମତ୍ସ୍ୟଜୀବୀ କୁଳର ଗୁରୁରୂପେ ଗ୍ରହଣ କରିଛନ୍ତି । ଲୁଇ ଓ ମତ୍ସ୍ୟେନ୍ଦ୍ର ଉଭୟ ତିବ୍ବତୀ ଓ ଭାରତୀୟ ପରମ୍ପରେ ଧୀବରକୁଳସମ୍ଭୂତ ଭାବେ ପରିଚିତ । ନାଥ ସାହିତ୍ୟର ଗୋବିନ୍ଦଚନ୍ଦ୍ର ଉପାଖ୍ୟାନରେ କାହ୍ନୁପା ହାଡ଼ିପାଙ୍କ (ଜାଳନ୍ଧରୀପାଦ) ଶିଷ୍ୟରୂପେ ବର୍ଣ୍ଣିତ । ଏହି କାହ୍ନୁପା ଚର୍ଯ୍ୟାଗୀତିକାର ଅନ୍ୟତମ ଲେଖକ । ତେଣୁ କେତେକ ସହଜିୟା ସିଦ୍ଧ ଯେ ନାଥଧର୍ମ ସହିତ ଜଡ଼ିତ ଥିଲେ, ଏହା ସହଜରେ ଅନୁମେୟ । ଲୁଇ ଓ ମତ୍ସ୍ୟେନ୍ଦ୍ର ଉଭୟଙ୍କର ଧର୍ମମତ ସହଜସିଦ୍ଧି ନାମରେ ଖ୍ୟାତ । ଏହା ସହିତ ଏକ ପକ୍ଷରେ ବଜ୍ରଯାନ, ମନ୍ତ୍ରଯାନର ଓ ଅନ୍ୟ ପକ୍ଷରେ କୌଳଧର୍ମ, ନାଥଧର୍ମର ଘନିଷ୍ଠ ସମ୍ପର୍କ ପରିଲକ୍ଷିତ ହୁଏ । ଲୁଇ ଓ ଅନ୍ୟାନ୍ୟ ସିଦ୍ଧାଚାର୍ଯ୍ୟଗଣ ଉଭୟ ସଂପ୍ରଦାୟ ସହିତ ଜଡ଼ିତ ଥିବା ଅସମ୍ଭବ ନୁହେଁ । ବର୍ତ୍ତମାନ ଏହି ସମସ୍ତ ପ୍ରମାଣ ଭିତ୍ତିରେ ଲୁଇ ଓ

ମତ୍ସ୍ୟେନ୍ଦ୍ରଙ୍କ ଅଭିନ୍ନ ବୋଲି ଗ୍ରହଣ କଲେ ନାଥସାହିତ୍ୟରୁ ମିଳୁଥିବା ବିବରଣୀ ଅନୁସାରେ ଲୁଇପାଙ୍କର ଜୀବନୀ ଭିନ୍ନ ଭାବରେ ବର୍ଣ୍ଣନା କରାଯାଇ ପାରିବ । କୌଳଜ୍ଞାନ ନିର୍ଣ୍ଣୟ ଅନୁସାରେ ତାଙ୍କର ବାସସ୍ଥାନ ଥିଲା ଚନ୍ଦ୍ରଦ୍ୱୀପ (ଆଧୁନିକ ବାକେରଗଞ୍ଜ-ହରପ୍ରସାଦ; ସନ୍ଦୀପ ଦ୍ୱୀପ ଡ. ବାଗ୍‌ଚୀ) ଏବଂ ସେ ବ୍ରାହ୍ମଣକୁଳରେ ଜନ୍ମ ହୋଇଥିଲେ, କିନ୍ତୁ କର୍ଡିଏର ସାହେବ, ଘ.କୃତ୍ୟାୟନ, ଧର୍ମବୀର ଭାରତୀ ପ୍ରମୁଖ ଏହି ମତ ପୋଷଣ କରନ୍ତି ନାହିଁ । [ଦ୍ରଷ୍ଟବ୍ୟ Ob. R. C-p.393-394 Budhism in Orissa p-165 ଓ ସିଦ୍ଧସାହିତ୍ୟ, ପୃ. ୪୫-୪୮] ।

ଲୁଇପାଙ୍କ ସମୟ ନିରୂପଣ କରିବାରେ ପଣ୍ଡିତମାନଙ୍କ ମଧ୍ୟରେ ମତପାର୍ଥକ୍ୟ ଦେଖାଯାଏ । ଡ ବିନୟତୋଷ ଭଟ୍ଟାଚାର୍ଯ୍ୟ ତାଙ୍କୁ ଖ୍ରୀ. ୬୬୯ ମଧ୍ୟରେ ଅବସ୍ଥାପିତ କରିଛନ୍ତି । ତାଙ୍କର ଯୁକ୍ତି ହେଉଛି ଇନ୍ଦ୍ରଭୂତିଙ୍କ ପୁତ୍ର ପଦ୍ମସମ୍ଭବ ଶାନ୍ତରକ୍ଷିତଙ୍କ ସହ ତିବ୍ଦତରେ ଖ୍ରୀ ୭୪୯ରେ ବ୍-ସମ୍-ୟ୍ୟା (Bsma-Ye) ମଠ ପ୍ରତିଷ୍ଠା କରିଥିଲେ । ସେ ଖ୍ରୀ: ୭୪୭ରେ ତିବ୍ବତ ଯାତ୍ରା କଲାବେଳେ ସହ ୩୦ବର୍ଷ ବୟସ୍କ ହୋଇଥିବେ ଓ ପିତାଙ୍କର ଦ୍ୱିତୀୟ ପୁତ୍ର ହୋଇଥିବା ହେତୁ ତାଙ୍କର ଜନ୍ମବେଳକୁ ଇନ୍ଦ୍ରଭୂତିଙ୍କର ସହ ୩୦ବର୍ଷ ହୋଇଥିବ ବୋଲି ଧରାଯାଏ, ତେବେ ଇନ୍ଦ୍ରଭୂତିଙ୍କର ସମୟ ଖ୍ରୀ: ୬୮୭-୭୧୭ ମଧ୍ୟରେ ନିର୍ଣ୍ଣୟ କରାଯାଇପାରିବ । ତା ପରେ ଏହି ଖ୍ରୀ: ୭୧୭କୁ ମୂଳକରି ପ୍ରତ୍ୟେକଙ୍କ ମଧ୍ୟରେ ବାର ବର୍ଷର ବ୍ୟବଧାନ ରଖି ଗଣନା କଲେ ଗୁରୁ-ପରମ୍ପରା ବିଭିନ୍ନ ସିଦ୍ଧଙ୍କ ସମୟ ଏହିରୂପେ ନିର୍ଦ୍ଧାର୍ଯ୍ୟ ହୋଇପାରିବ—ସରହ ୬୩୩ >ନାଗାର୍ଜୁନ ୬୪୫>ଶବରୀ ୬୫୭> ଲୁଇ ୬୬୯ ଇତ୍ୟାଦି । (J. B. O. R. S. Vol-14, Pt. 3) ଡ. ଶହୀଦୁଲ୍ଲାହ, ଅଧ୍ୟାପକ ଲେଭି ପ୍ରମୁଖ ତାରାନାଥଙ୍କ ବିବରଣୀ ମତ ପ୍ରମାଣ ବଳରେ ଲୁଇଙ୍କୁ ୭ମ ଶତାବ୍ଦୀରେ ଅବସ୍ଥାପିତ କରନ୍ତି । ପଣ୍ଡିତ ସାଙ୍କୃତ୍ୟାୟନଙ୍କ ମତରେ ତାଙ୍କର ସମୟ ୮ମ-୯ମ ଶତାବ୍ଦୀ । ସେ କହନ୍ତି, ତିବ୍ବତୀ ଗ୍ରନ୍ଥରୁ ଜଣାଯାଏ ଯେ ବୁଦ୍ଧଜ୍ଞାନ ଯେ କି ସରହଙ୍କ ଶିଷ୍ୟ ଓ ସହପାଠୀ ଥିଲେ, ସେ ମଧ୍ୟ ହରିଭଦ୍ରଙ୍କ ଶିଷ୍ୟ ଥିଲେ । ହରିଭଦ୍ର ଶାନ୍ତରକ୍ଷିତଙ୍କ ଶିଷ୍ୟ । ଏହି ଶାନ୍ତରକ୍ଷିତଙ୍କର ଖ୍ରୀ: ୮୪୦ ବେଳକୁ ତିବ୍ଦତରେ ଦେହାନ୍ତ ହୋଇଥିଲା । ଏଥିରୁ ମନେହୁଏ, ବୁଦ୍ଧଜ୍ଞାନ ଓ ହରିଭଦ୍ର ମହାରାଜ ଧର୍ମପାଳ (୭୬୯-୮୦୯ଙ୍କ ସମକାଳୀନ ଥିଲେ । ଲୁଇପା ସରହଙ୍କ ଶିଷ୍ୟ ଶବରୀଙ୍କ ଶିଷ୍ୟ ଓ ଧର୍ମପାଳଙ୍କ କାୟସ୍ଥ ଥିଲେ । [ପୁ. ୨. ପୃ.୧୫୫] ଅଧ୍ୟାପକ ନିହାରରଞ୍ଜନ ରାୟ ତାଙ୍କୁ ରାମପାଳଙ୍କର ସମସାମୟିକ ବୋଲି ଉଲ୍ଲେଖ କରିଛନ୍ତି । [ବାଙ୍ଗାଲିର ଇତିହାସ-ପୃ-୬୬୦] । ପଣ୍ଡିତ ହରପ୍ରସାଦ ଶାସ୍ତ୍ରୀଙ୍କ ମତରେ ଲୁଇଙ୍କର ସମୟ ୧୦ମ ଶତାବ୍ଦୀର ଶେଷ ଓ ୧୧ଶ ଶତାବ୍ଦୀର ଆରମ୍ଭକାଳ । ତାଙ୍କର ଯୁକ୍ତି ହେଉଛି ଯେ ଦୀପଙ୍କର ଶ୍ରୀଜ୍ଞାନ ଅଭିସମୟ ବିଭଙ୍ଗ ରଚନାରେ ଲୁଇଙ୍କୁ ସାହାଯ୍ୟ କରିଥିଲେ ବୋଲି ଗ୍ରନ୍ଥର ପୁଷ୍ପିକାରେ ଲେଖାଅଛି । ଏହି ଦୀପଙ୍କର ଖ୍ରୀ: ୧୦୩୮ରେ ୫୮

ବର୍ଷ ବୟସରେ ବକ୍ରମଶୀଳ ବହାରରୁ ଉଦ୍ଧତ ଯାଇଥିଲେ । ଲୁଇ ତାଙ୍କର ସମସାମୟିକ ଥିବା ହେତୁ ତାଙ୍କର ସମୟ ଏପରି ନିରୂପଣ କରାଯାଇପାରିବ । କିନ୍ତୁ ଡ. ସୁକୁମାର ସେନ ଏହି ମତର କଣ୍ଠିତ ସମାଲୋଚନା କରି କହନ୍ତି ଯେ ଦୀପଙ୍କର ଓ ଲୁଇ ସମସାମୟିକ ନ ହୋଇ ପାରନ୍ତି । ଲୁଇଙ୍କର "ଅଭିସମୟ" ଗ୍ରନ୍ଥରେ ପରବର୍ତ୍ତୀ କାଳରେ ଦୀପଙ୍କର ପରିଶିଷ୍ଟ ରୂପେ "ବିଭଙ୍ଗ" ଯୋଗ କରିଛନ୍ତି । ଏଣୁ ଲୁଇ ତାଙ୍କର ପୂର୍ବବର୍ତ୍ତୀ ବା ବର୍ଷୀୟାନ୍ ସମସାମୟିକ ଓ ସେ ୧୦ମ ଶତାବ୍ଦୀରେ ଅବସ୍ଥାପିତ ହେବା ଯୁକ୍ତିଯୁକ୍ତ । (ଚ.ଗୀ.ପ. ମୁଖବନ୍ଧ) । ଡ. ନବୀନକୁମାର ସାହୁଙ୍କ ଗ୍ରନ୍ଥରେ (Budhism in Orissa, P-161) ଆଉ ଏକ ଯୁକ୍ତି ପ୍ରଦତ୍ତ ହୋଇଛି । ଚକ୍ରସମ୍ଭାର ତନ୍ତ୍ରର ଗୁରୁ-ପରମ୍ପରାନୁସାରେ ତିଲୋପା ବଙ୍ଗର ରାଜା ମହୀପାଳ (୯୭୮-୧୦୩୦)ଙ୍କ ସମକାଳୀନ । ତାଙ୍କର ଶିଷ୍ୟ ନାରୋପା ଦୀପଙ୍କର ଶ୍ରୀଜ୍ଞାନଙ୍କ ଗୁରୁ ଏବଂ ସେ ୭୦ବର୍ଷ ବୟସରେ ବିକ୍ରମଶୀଳ ବିହାର ଦୀପଙ୍କର ଅଧୀନରେ ଦେଇ ଚାଲିଯାଇଥିଲେ । ଅଭିସମୟ ବିଭଙ୍ଗ ଅନୁସାରେ ଲୁଇ ଓ ଦୀପଙ୍କର ସମସାମୟିକ ହୋଇଥିବାରୁ ଲୁଇଙ୍କର ସମୟ ୧୦ମ ଶତାବ୍ଦୀ ଗ୍ରହଣୀୟ । ପୁନଶ୍ଚ ସେ କହନ୍ତି, ଓଡ଼ିଶାର ରାଜା ଦାରିକପା ଉଭୟ ଲୁଇପା ଓ ନାରୋପାଙ୍କର ଶିଷ୍ୟ ରୂପେ ପରିଚିତ । ଏଣୁ ନାରୋପା ଓ ଲୁଇ ସମସାମୟିକ ହେବା ସ୍ୱାଭାବିକ ଏବଂ ଲୁଇ ଦୀପଙ୍କର ଶ୍ରୀଜ୍ଞାନଙ୍କର ବୟୋଜ୍ୟେଷ୍ଠ ସମସାମୟିକ ଭାବରେ ଗ୍ରହଣୀୟ । ଡ଼. ବାଗ୍‌ଚୀ ଲୁଇଙ୍କୁ ଚର୍ପଟୀ ଓ ନାଗର୍ଜୁନଙ୍କ ସମସାମୟିକ ଭାବରେ ଓ ଅଭିସମୟ ବିଭଙ୍ଗ ପ୍ରମାଣ ବଳରେ ୧୦ମ ଶତାବ୍ଦୀରେ ନିରୂପିତ କରନ୍ତି ଏବଂ ୧୧ଶ ଶତାବ୍ଦୀରେ ମଧ୍ୟ ଜୀବିତ ଥିବା ମନେକରନ୍ତି ।

ଲୁଇ ଓ ମତ୍ସ୍ୟେନ୍ଦ୍ର ଅଭିନ୍ନ ହେଲେ ନାଥସାହିତ୍ୟର ପ୍ରମାଣ ବଳରେ ମଧ୍ୟ ତାଙ୍କର ସମୟ ନିର୍ଦ୍ଧାରଣ କରାଯାଇ ପାରିବ । ଡ଼. ବାଗ୍‌ଚୀ କୌଲଜ୍ଞାନ ନିର୍ଣ୍ଣୟର ରଚନାକାଳ ୧୧ଶ ଶତାବ୍ଦୀର ମଧ୍ୟଭାଗ ରୂପେ ସ୍ଥିରକରି ତାର ଲେଖକଙ୍କୁ ପୋଥିଗତ ପ୍ରମାଣ ବଳରେ ତାର ଶହେ ବର୍ଷ ପୂର୍ବରେ ଅର୍ଥାତ୍ ୧୦ମ ଶତାବ୍ଦୀରେ ଅବସ୍ଥାପିତ କରିଛନ୍ତି । ଅଭିନବ ଗୁପ୍ତ ତନ୍ତ୍ରାଲୋକରେ ମତ୍ସ୍ୟେନ୍ଦ୍ରଙ୍କର ବନ୍ଦନା କରିଥିବାରୁ ଉକ୍ତ ଗ୍ରନ୍ଥର ରଚନାକାଳ ୧୧ଶ ଶତାବ୍ଦୀର ପ୍ରାରମ୍ଭ ଅନୁସାରେ ଲୁଇଙ୍କର ସମୟ ୧୦ମ ଶତାବ୍ଦୀ ହେବା ସ୍ୱାଭାବିକ । ଚକ୍ରସମ୍ଭାର ତନ୍ତ୍ର ପରମ୍ପରାନୁସାରେ ମଧ୍ୟ ମତ୍ସ୍ୟେନ୍ଦ୍ରଙ୍କର ସମୟ ୧୦ମ ଶତାବ୍ଦୀ ହେବ । କାରଣ ସେଥିରେ ଗୁରୁପରମ୍ପରା ଏପରି ପ୍ରଦତ୍ତ—ଜାଳନ୍ଧର > କୃଷ୍ଣ > ଗୁହ୍ୟ > ବିଜୟପା > ତିଲୋପା > ନାରୋପା । ଜାଳନ୍ଧରୀ ନାରୋପାଙ୍କଠାରୁ ଅନ୍ତତଃ ପଚାଶ ବର୍ଷ ପ୍ରାଚୀନ । ଜାଳନ୍ଧରୀ ଓ ମତ୍ସ୍ୟେନ୍ଦ୍ର ସମସାମୟିକ । ନାରୋପାଙ୍କ ସମୟ ୧୧ଶ ଶତାବ୍ଦୀର ଆଦ୍ୟଭାଗ । ତେଣୁ ମତ୍ସ୍ୟେନ୍ଦ୍ରଙ୍କ ସମୟ ୧୦ମ ଶତାବ୍ଦୀର ଶେଷଭାଗ ହୋଇପାରେ । ପୁଣି ଗୋରଖନାଥ ମତ୍ସ୍ୟେନ୍ଦ୍ରଙ୍କ ଶିଷ୍ୟ । ଗୋରଖଙ୍କ

ସମସ୍ୟ ନିରୂପଣରେ :ଭିନ୍ନ ଭିନ୍ନ ମତ ପରିଦୃଷ୍ଟ ହୁଏ । ତେଣୁ ଏହି ସୂତ୍ର ଅନୁସାରେ କେହି କେହି ଲୁଇଙ୍କୁ ୧୦ମରୁ ୧୨ଶ ଶତାବ୍ଦୀ ମଧ୍ୟରେ ବିଭିନ୍ନ ସମୟରେ ନିରୂପିତକରନ୍ତି । (ଦ୍ରଷ୍ଟବ୍ୟ-Ob. R.C.P.389 ଓ Buddhism in Orissa-P.162)

ମହାରାଷ୍ଟ୍ରୀୟ ସନ୍ଥକବି ଜ୍ଞାନଦେବ ତତ୍ପ୍ରଣୀତ ଜ୍ଞାନେଶ୍ବରୀ ଗ୍ରନ୍ଥରେ ନିଜ ଗୁରୁ-ପରମ୍ପରା ଏହିପରି ପ୍ରଦାନ କରିଛନ୍ତି—ମତ୍ସ୍ୟେନ୍ଦ୍ର>ଗୋରଖ>ନିବୃତ୍ତିନାଥ>ଜ୍ଞାନଦେବ । ଜ୍ଞାନେଶ୍ବରୀ ରଚନାକାଳ ଖ୍ରୀ: ୧୨୯୦ । ଜ୍ଞାନଦେବଙ୍କ ଗୁରୁ ନିବୃତ୍ତିନାଥ ତାଙ୍କର ଜ୍ୟେଷ୍ଠଭ୍ରାତା ଓ ତାଙ୍କର ଜନ୍ମକାଳ ଖ୍ରୀ: ୧୨୭୩ । ଏହି ପରମ୍ପରା ଅନୁସାରେ ମତ୍ସ୍ୟେନ୍ଦ୍ର ୧୨ଶ ଶତାବ୍ଦୀର ମଧ୍ୟଭାଗରେ ପୂର୍ବରେ ଅବସ୍ଥାପିତ ହୋଇପାରିବେ ନାହିଁ । ଡ. ବାଗ୍‌ଚୀ ଏହି ପରମ୍ପରାକୁ ସମାଲୋଚନା କରି କହିଛନ୍ତି ଯେ ଏହି "Relation speaks of a spiritual connection and not of any historical one. (କୌଲଜ୍ଞାନ ନିର୍ଣ୍ଣୟମୁଖବନ୍ଧ, ପୃ. ୨୭) ।

କାଳ ନିରୂପଣରେ ଏରୂପ ବିଭିନ୍ନତା ଦେଖାଯାଉଥିବାରୁ କେହି କେହି ଦୁଇଜଣ ଲୁଇପା ଥିବାର ଅନୁମାନ କରନ୍ତି । ଲୁଇପା ଯେ କି ମତ୍ସ୍ୟେନ୍ଦ୍ରଙ୍କଠାରୁ ଅଭିନ୍ନ ବୋଲି ମନେହୁଏ, ସେ କନିଷ୍ଠ ଲୁଇ । ତାଙ୍କର ଜନ୍ମସ୍ଥାନ ଚନ୍ଦ୍ରଦ୍ବୀପ । ସେ ନାଥଧର୍ମର ଆଦସିଦ୍ଧ ଯୋଗିନୀକୁଳତନ୍ତ୍ରର ପ୍ରବର୍ତ୍ତକ ଏବଂ ଚର୍ଯ୍ୟାଗୀତିକା ଲେଖକ । ଦୀପଙ୍କର ଶ୍ରୀଜ୍ଞାନ ଏହାଙ୍କର ସମସାମୟିକ ଥିଲେ । ଅନ୍ୟ ପକ୍ଷରେ ଶବରୀପାଙ୍କ ଶିଷ୍ୟ ଜ୍ୟେଷ୍ଠ ଲୁଇ । ସେ ଉତ୍କଳୀୟ ରାଜା ବଜ୍ରଘଣ୍ଟଙ୍କ ଗୁରୁ । ଶାନ୍ତରକ୍ଷିତଙ୍କ ଅଭିସମୟ ମଞ୍ଜରୀରେ ଏହାର ଉଲ୍ଲେଖ କରାଯାଇଛି । (ଦ୍ର: Buddhism in Orissa p. 162, 164) । ସିଦ୍ଧସାହିତ୍ୟ ମାଧ୍ୟମରେ ପରିଚିତ କେତେକ ନାମରେ (ଯଥା—ସରହ, ଶବର, କାହ୍ନୁ, ଶାନ୍ତିଦେବ, ଶାନ୍ତିରକ୍ଷିତ, ଦୀପଙ୍କର ଇତ୍ୟାଦି) ଏକାଧିକ ବ୍ୟକ୍ତି ଥିବାର ସନ୍ଧାନ ମିଳୁଥିବାରୁ ଦୁଇଜଣ ଲୁଇ ଥିବା ମତ ହୁଏ ତ ଭିତ୍ତିହୀନ ପରିକଳ୍ପନା ନ ହୋଇପାରେ । (New Indian Antiquary, Vol. No. 1, Budhist Sanskrit Literture of Bengal).

ଲୁଇପାଙ୍କର ଜୀବନୀ ଓ ସମୟ ନିରୂପଣରେ ଉପରୋକ୍ତ ସମସ୍ତ ବିରୋଧ ସତ୍ତ୍ବେ ସିଦ୍ଧ ଓ ନାଥସମ୍ପ୍ରଦାୟରେ ସେ ଜଣେ ପ୍ରଧାନ ବ୍ୟକ୍ତି ଭାବରେ ସ୍ବୀକୃତ । ସେ ଯୋଗୀନୀକୁଳ ତନ୍ତ୍ରର ପ୍ରତିଷ୍ଠାତା ଭାବରେ ସୁପ୍ରସିଦ୍ଧ । ସିଦ୍ଧାଚାର୍ଯ୍ୟମାନଙ୍କ ମଧ୍ୟରେ ଦାରିକ, ଡେଙ୍ଗୀପା, ଡୋମ୍ବୀପା ଓ ବଜ୍ରଘଣ୍ଟ ତାଙ୍କର ପ୍ରଧାନ ଶିଷ୍ୟ । ତାଙ୍କର ଅନେକ ରଚନାର ସନ୍ଧାନ ମିଳେ । ସଂସ୍କୃତରେ ବଜ୍ରସତ୍ତ୍ବ ସାଧନ, ବୁଦ୍ଧୋଦୟ, ଶ୍ରୀ ଭଗବଦାଭିସମୟମ୍, ସତ୍ତ୍ବସମୟ ବିଭଙ୍ଗ ଏବଂ ଲୌକିକ ଭାଷାରେ ତତ୍ତ୍ବସ୍ବଭାବ ଦୃଷ୍ଟିଦୋହାକୋଷ ଗୀତିକା, ଲୁଇପାଦ ଗୀତିକା ପ୍ରଭୃତି ବର୍ତ୍ତମାନ ଦୃଷ୍ଟିଗୋଚର ହୋଇଛି । ସେ ଦୁଇଟି ଚର୍ଯ୍ୟାଗୀତିକା ଲେଖିଛନ୍ତି

ନ: ୧ ଓ ନ: ୬୧ । ସାଂକୃତ୍ୟାୟନଙ୍କ ଦୋହାକୋଷ [ପୃ. ୩୬୮]ରେ ଲୁଇଗୀତି ନାମରେ ଏକ ଚଉପଦବିଶିଷ୍ଟ ରଚନା ଦେଖାଯାଏ । ଡ଼. ସୁକୁମାର ସେନ୍ ତାଙ୍କର ରଚନାରୀତି ସମ୍ପର୍କରେ ମନ୍ତବ୍ୟ ପ୍ରକାଶ କରି କହିଛନ୍ତି ଯେ ଲୁଇଙ୍କର ରଚନାରେ ସନ୍ଧା-ଭାଷାର ଆଶ୍ରୟ ନାହିଁ । ସେ ସର୍ବଦା ଶ୍ଳେଷ କରି ରୂପକ ଦେଇଛନ୍ତି । ପାରିଭାଷିକ ଶବ୍ଦ ଆଦୌ ବ୍ୟବହାର କରିନାହାନ୍ତି । ଧ୍ରୁବ ପଦରେ ଓ ଶେଷ ପଦରେ ଦୁଇ ସ୍ଥଳରେ ତାଙ୍କ ଗୀତିକାରେ ଭଣିତା ପରିଦୃଷ୍ଟ ହୁଏ । (ଚ.ଗୀ.ପ.-ଭୂମିକା) ଚର୍ଯା ୬୧ ଟୀକାରେ ମୀନ-ନାଥଙ୍କର ଦୁଇପଦ ଗୀତ ଉଦ୍ଧୃତ ହୋଇଛି । ଏହା ଲୁଇଙ୍କର ରଚନା ହୋଇପାରେ—"କହନ୍ତି ଗୁରୁପରମାର୍ଥେର ବାଟ, କର୍ମକୁରଙ୍ଗ ସମାଧିକ ପାଟ ।। କମଲ ବିକସିଲ କହିହଣ ଜମରା, କମଲ ମଧୁ ପିବିବି ଧୋକେ ନ ଭମରା ।।"

## ପରିଶିଷ୍ଟ :—

ଲୁଇ ଉଡ୍ଡୀୟାନ-ବାସୀ ଥିଲେ । ଏହି ଉଡ୍ଡୀୟାନ ଯେ ଓଡ଼ିଶା ଏହା ବର୍ତ୍ତମାନ ଏକ ସୁପ୍ରମାଣିତ ଅଭିମତ । (ଦ୍ର: Budhism in Orissa, p.152) ଓଡ଼ିଶାର ରାଜା ଦାରିକ ଓ ତାଙ୍କର ମନ୍ତ୍ରୀ ଡେଙ୍ଗୀପା ଏବଂ ଅନ୍ୟ ଜଣେ ରାଜା ବଜ୍ରଘଣ୍ଟ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ତାଙ୍କର ଗୁରୁ ଶବରୀପା ଉତ୍କଳୀୟ ବୋଲି ମଧ୍ୟ ପ୍ରମାଣ ମିଳେ । ଲୁଇ ଓଡ଼ିଶା ରାଜାଙ୍କର କାୟସ୍ଥ ଭାବେ କାର୍ଯ୍ୟ କରୁଥିଲାବେଳେ ଶବରୀପାଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିବା ସମୀଚୀନ ବୋଧହୁଏ । ଓଡ଼ିଶାରେ ତାଙ୍କର ପ୍ରଭାବ ଓ ପ୍ରତିଷ୍ଠାନର ଅନ୍ୟାନ୍ୟ ପ୍ରମାଣ ପରବର୍ତ୍ତୀକାଳୀନ ଓଡ଼ିଆ ସାହିତ୍ୟରୁ ମିଳେ । ଅଚ୍ୟୁତାନନ୍ଦଙ୍କ ଶୂନ୍ୟ-ସଂହିତାରେ ପ୍ରାଚୀନଦୀ କୂଳରେ ଅବସ୍ଥାନ କରୁଥିବା ସିଦ୍ଧମାନଙ୍କ ମଧ୍ୟରେ ଲୋହିଦାସ ଅନ୍ୟତମ ଥିଲେ ବୋଲି ଉଲ୍ଲେଖ କରାଯାଇଛି । ଅନନ୍ତଦାସଙ୍କ ଗୁପ୍ତଗୀତାରେ ସିଦ୍ଧମାନଙ୍କ ନାମ-ତାଲିକାରେ ଲୋହିଙ୍କର ନାମ ମିଳେ ଏବଂ ତାଙ୍କର ହେତୁଦୟ ଭାଗବତରେ ପ୍ରଦତ୍ତ ମତ୍ସ୍ୟେନ୍ଦ୍ରନାଥଙ୍କ ବିବରଣୀ ସହ ସାଦୃଶ୍ୟ ମିଳିଯାଏ । ଲୋହିଗୀତା ନାମରେ ଖଣ୍ଡିଏ ପ୍ରାଚୀନ ପୋଥି ମଧ୍ୟ ବର୍ତ୍ତମାନ ଦୃଷ୍ଟିଗୋଚର ହୋଇଛି । ଲୁଇଙ୍କର ନାମ ଲୁହି, ଲୋହି, ଲୋହିତ ଭାବରେ ଲେଖାଯାଇ ଥାଏ ବୋଲି ଡ. ବାଗଚୀ ସ୍ୱୀକାର କରନ୍ତି (କୌଲଜ୍ଞାନ ନିର୍ଣ୍ଣୟ, ପୃ: ୨୨) । ପଣ୍ଡିତ ବିନାୟକ ମିଶ୍ର ଏ ସମ୍ପର୍କରେ ଆଉ ଏକ ବଳିଷ୍ଠ ଯୁକ୍ତି ପ୍ରଦାନ କରନ୍ତି । ମୟୂରଭଞ୍ଜରେ ଏବେ ସୁଦ୍ଧା ପ୍ରଚଳିତ ଲୁଇପୂଜା ଲୁଇପାଙ୍କର ଉତ୍କଳ ସହିତ ନିବିଡ଼ ସମ୍ପର୍କ ଥିବା ପ୍ରମାଣ କରେ । (ଦ୍ର: ଓଡ଼ିଆ ଭାଷାର ଇତିହାସ) । ହରପ୍ରସାଦ ଶାସ୍ତ୍ରୀ ମଧ୍ୟ ଏହା ଉଲ୍ଲେଖ କରିଯାଇଛନ୍ତି । ଲୁଇଙ୍କୁ ସେ ରାଢ଼ଦେଶୀୟ ଲୋକ ବୋଲି କହି ପଶ୍ଚାତ୍ତରେ ମୟୂରଭଞ୍ଜ ଅଧିବାସୀ ବୋଲି ସ୍ୱୀକାର କରିଯାଇଛନ୍ତି । କାରଣ ପ୍ରାଚୀନ ରାଢ଼ମଣ୍ଡଳ ମଧ୍ୟରେ ମୟୂରଭଞ୍ଜ ଅନ୍ତର୍ଗତ ଥିଲା । ସର୍ବୋପରି ଲୁଇଙ୍କର ଦୁଇଟି ଚର୍ଯାଗୀତିକା ଆଲୋଚନାରୁ ଏହାର ଭାଷା ଉପରି ଓଡ଼ିଆ ଭାଷାର ନିକଟବର୍ତ୍ତୀ, ତାହା ସହଜରେ ଉପଲବ୍ଧି କରିହୁଏ । ଏ ସମସ୍ତ କାରଣରୁ ଅନ୍ୟାନ୍ୟ କେତେକ ଚର୍ଯା-ଲେଖକମାନଙ୍କ ପରି ଲୁଇ ମଧ୍ୟ ଉତ୍କଳୀୟ ଥିଲେ ବୋଲି କୁହାଯାଇ ପାରିବ ।

# —ଗୀତିକା—

ମୂଳ:—

## —ନ.୧ (କାୟା-ତରୁଚର୍ଯ୍ୟା)—

### ରାଗ—ପଟ୍ଟମଞ୍ଜରୀ

କାଆ ତରୁବର ପଞ୍ଚ ବି ଡାଲ ।
ଚଞ୍ଚଳ ଚୀଏ ପଇଠା କାଳ । ୧ ।

ଦିଢ଼ କରିଅ ମହାସୁହ ପରିମାଣ ।
ଲୁଇ ଭଣଇ ଗୁରୁ ପୁଚ୍ଛିଅ ଜାଣ ॥ ଧ୍ରୁ ॥

ସଅଳ ସମାହିଅ କାହି କରିଅଇ ।
ସୁଖ ଦୁଃଖେତେଁ ନିଚିତ ମରିଅଇ ॥ ୨ ॥ ଧ୍ରୁ ॥

ଏଡ଼ିଏଉ ଛାନ୍ଦକ ବାନ୍ଧ କରଣ କପଟେର ଆସ ।
ସୁନୁପାଖ ଭିଡ଼ି ଲେହୁରେ ପାସ ॥ ୩ ॥ (ଧ୍ରୁ)

ଭଣଇ ଲୁଇ ଆମ୍ହେ ଝାଣେ ଦିଠା ।
ଧମଣ ଚମଣ ବେଣି ପିଣ୍ଡି ବଇଠା ॥ ୪ ॥ (ଧ୍ରୁ)



## ପାଠାନ୍ତର:—

୧. (ଖ) ପାଞ୍ଚ ୨. (କ,ଖ,ଘ,) ପଇଠୋ ୪. (ଙ) ଭଣଇ ଲୁଇ ୫. (ଘ) ସକଳ (ଙ) ସମାହି ୬. (ଚ) ସୁଖଦୁଖେତେ ୭. (ଖ,ଚ) ଏଡ଼ି ଏଉ, (କ,ଗ,ଘ) କରଣକ ପାଟେର, (ଖ) ଛାନ୍ଦ ବାନ୍ଧ କରଣ କପଟେର ୮. (କ,ଗ) ଭିତି ୯. (ଖ,ଘ) ଝାଣେ ୧୦. (ଙ) ଧବନ ଚବଣ (ଖ,ଘ,ଚ) ପାଣ୍ଡି, ପୁ.ନ. ବଇଣ ।

## ଆଧୁନିକ ରୂପାନ୍ତର:—

କାୟା-ତରୁବର ପାଞ୍ଚ ବି ଡାଳ
ଚଞ୍ଚଳ ଚିତ୍ତେ ପ୍ରବିଷ୍ଟ କାଳ ।
ଦୃଢ଼ କରିଣ ମହାସୁଖ ପରିମାଣ
ଲୁଇ ଭଣଇ ଗୁରୁ ପୁଚ୍ଛି ଣ ଜାଣ ।
ସକଳ ସମାଧିରେ କଣ କରାଯାଏ ?
ସୁଖ ଦୁଃଖରେ ନିଶ୍ଚିତ ମୃତ୍ୟୁ ହୁଏ ।
ଏଡ଼ି ଏନ୍ତୁ ଛାନ୍ଦର ବନ୍ଧକରଣ କପଟର ଆଶ
ଶୂନ୍ୟ ପାଖ ଭିଡ଼ି ନିଅ ରେ ପାଶ ।
ଭଣଇ ଲୁଇ ଆମ୍ଭେ ଦେଖିଲୁ ଧ୍ୟାନେ
ଧମଣ ଚମଣ ବେନି ପିଣ୍ଡି ଆସନେ ।

## ମର୍ମାର୍ଥ :—

ଶରୀର ଏକ ବୃକ୍ଷ ସଦୃଶ । ଏଥିରେ ପାଞ୍ଚଟି ଶାଖା । ଚର୍ଯ୍ୟାର ଟୀକାକାରଙ୍କର ମତରେ ଏହି ପଞ୍ଚଶାଖା ହେଉଛି "ରୂପାଦୟଃ ପଞ୍ଚସ୍କନ୍ଧାଃ"। ପୁନଶ୍ଚ ତାଙ୍କ ମତରେ ମନ ସହିତ ପଞ୍ଚଜ୍ଞାନେନ୍ଦ୍ରିୟ ଜାଗତିକ ବିଷୟ-ସୁଖ-ଲାଲସାରେ ନିରନ୍ତର ଚଞ୍ଚଳତା ପ୍ରକାଶ କରୁଥିବା ହେତୁ ପଲ୍ଲବ ସ୍ୱରୂପ ଗ୍ରହଣୀୟ । (କିନ୍ତୁ ମଣୀନ୍ଦ୍ର ମୋହନ ବସୁ, ତାରାପ୍ରସନ୍ନ ଭଟ୍ଟାଚାର୍ଯ୍ୟ ପ୍ରମୁଖ କେତେକ ଆଧୁନିକ ଟୀକାକାରଙ୍କ ମତରେ ପଞ୍ଚଶାଖା ହେଉଛି ପଞ୍ଚେନ୍ଦ୍ରିୟ । କାହ୍ନୁପାଦ ମଧ୍ୟ ମନକୁ ତରୁ ଓ ପଞ୍ଚେନ୍ଦ୍ରିୟକୁ ତାର ଶାଖାରୂପେ ଗ୍ରହଣ କରି ଲେଖିଛନ୍ତି "ମଣତରୁ ପଞ୍ଚଇନ୍ଦି ତସୁ ସାହା" । ନ. ୪୫ ତାନ୍ତ୍ରିକ ବୌଦ୍ଧ ସିଦ୍ଧାନ୍ତରେ ପଞ୍ଚସ୍କନ୍ଧ ପଞ୍ଚେନ୍ଦ୍ରିୟ, ପଞ୍ଚବିଷୟ ଆଦି ପରସ୍ପର ଜଡ଼ିତ ଥିବାରୁ ଉଭୟ ଅର୍ଥରେ ତତ୍ତ୍ୱଗତ ବିରୋଧ ନାହିଁ) ଶାଖାପତ୍ରର ଦ୍ରୁତ ସଞ୍ଚାଳନ ଫଳରେ ବୃକ୍ଷର ମୂଳ ଦୋହଲିଗଲେ ତାହା ଯେପରି ଧୀରେ ଧୀରେ ମୃତ୍ୟୁ ଲାଭ କରେ, ସେହିପରି ବିଷୟ ଲୋଭରେ ନିରନ୍ତର ପ୍ରଧାବିତ ଇନ୍ଦ୍ରିୟଗଣର ଚପଳତାବଶତଃ ଚିତ୍ତର ଦୃଢ଼ତା ନଷ୍ଟ ହୁଏ ଓ ଶରୀର କ୍ରମଶଃ କାଳ-କବଳିତ ହୁଏ । ତେଣୁ ଲୁଇ ଉପଦେଶ ଦିଅନ୍ତି ଯେ ଗୁରୁଙ୍କୁ ଜିଜ୍ଞାସା କରି ତାଙ୍କଠାରୁ ଚିତ୍ତର ଚାଞ୍ଚଲ୍ୟନାଶକ ଉପାୟ ଶିକ୍ଷା କରି ଏବଂ ତଦ୍ଦ୍ୱାରା ଚିତ୍ତର ଦୃଢ଼ତା ସମ୍ପାଦନ କରି ମହାସୁଖ ଉପଭୋଗ କର । ଏହି ଉପାୟ କଷ୍ଟକର ନୁହେଁ, ସହଜ । ଏଥିପାଇଁ ଦୁଃସାଧ୍ୟ ସାଧନା କିମ୍ବା ବିସ୍ତୃତ ଯୋଗ, ଧ୍ୟାନ, ସମାଧିର ଆବଶ୍ୟକତା ନାହିଁ । ପ୍ରକୃତ ପକ୍ଷେ ମଧ୍ୟ ଯୋଗସମାଧି ଦ୍ୱାରା ଚିତ୍ତରେ ପୂର୍ଣ୍ଣ ପ୍ରଶାନ୍ତି ଆସେ ନାହିଁ । କାରଣ ସମାଧି ଅବସ୍ଥାରେ ଯେଉଁ

ସୁଖ ଓ ଶାନ୍ତି ଉପଲବ୍ଧ ହୁଏ, ତାହା ସମାଧିରୁ ଉତ୍ଥିତ ହେବାମାତ୍ରେ ନଷ୍ଟ ହୋଇଯାଏ। ଫଳତଃ ସାଧକ ପର୍ଯ୍ୟାୟକ୍ରମେ ସୁଖ ଓ ଦୁଃଖ ଭୋଗ କରି ପରିଶେଷରେ ମୃତ୍ୟୁମୁଖରେ ପଡ଼େ । ତେଣୁ ବିଭିନ୍ନ ମୁଦ୍ରା, ଆସନ, ବନ୍ଧ ଆଦି ସାଧନ ପ୍ରକରଣ ଦ୍ୱାରା ମହାସୁଖ ଲାଭ କରିବାର କପଟ ଆଶା ପରିତ୍ୟାଗ କର । (ଭିନ୍ନମତେ—ବାସନାର ବନ୍ଧନ ଓ ଇନ୍ଦ୍ରିୟ ପରିପାଟୀର ଆଶା ପରିତ୍ୟାଗ କର । ସେନ, ବସୁ ଓ ଭଟ୍ଟାଚାର୍ଯ୍ୟଙ୍କ ଦ୍ୱାରା ଗୃହୀତ) ଏକମାତ୍ର ସହଜ ଉପାୟ ଶୂନ୍ୟପନ୍ଥା ଅବଲମ୍ବନ । ନିଜକୁ ଦୃଢ଼ଭାବରେ ସେହି ମାର୍ଗରେ ପ୍ରତିଷ୍ଠା କରି ଚିତ୍ତରେ ଅଖଣ୍ଡ ପ୍ରଶାନ୍ତିଲାଭ ସଙ୍ଗେ ସଙ୍ଗେ ମହାସୁଖ ଆସ୍ୱାଦନ କର । ଶେଷରେ ଲୁଇ କହନ୍ତି—ଧମଣ ଚମଣ ବା ଶ୍ୱାସପ୍ରଶ୍ୱାସବାହୀ ନାଡ଼ିଦ୍ୱୟ ରୂପକ ଆସନ ପୀଠିକା ଉପରେ ବସି ଅର୍ଥାତ୍ ପ୍ରାଣାୟାମ ଯୋଗରେ ଧ୍ୟାନସ୍ଥହୋଇ ସେ ମହାସୁଖ ଲାଭର ଏହି ସହଜ ଉପାୟ ପ୍ରତ୍ୟକ୍ଷଭାବେ ଉପଲବ୍ଧ କରିଛନ୍ତି । ଚିତ୍ତର ଅସ୍ଥିରତା ଦୂରକରି କାୟା-ତରୁବରକୁ କାଳ କବଳରୁ ରକ୍ଷା କରିବାପାଇଁ ଏହା ହିଁ ସହଜ ଉପାୟ ॥

## ବିଶେଷ ଅର୍ଥ :—

### ପଞ୍ଚସ୍କନ୍ଧ —

ବୌଦ୍ଧ ଦର୍ଶନାନୁସାରେ ମନୁଷ୍ୟ ଶରୀର ପଞ୍ଚସ୍କନ୍ଧ ସମାହାର । ଏହି ପଞ୍ଚସ୍କନ୍ଧ ହେଉଛି-(୧) ରୂପ (ସ୍ଥୂଳ ଶରୀର) ୨-ବେଦନା (ଅନୁଭବ ଶକ୍ତି) ୩-ସଂଜ୍ଞା-(ବୋଧଶକ୍ତି ବା ଧାରଣାଶକ୍ତି) ୪-ସଂସ୍କାର (ଅନୁଭୂତି ସମୁଚ୍ଚୟ) ୫-ବିଜ୍ଞାନ (ଚେତନା ବା ବିଚାରଶକ୍ତି) । ହିନ୍ଦୁ ଦର୍ଶନର ପଞ୍ଚଭୂତ ଧାରଣା ସମ୍ଭବତଃ ପଞ୍ଚସ୍କନ୍ଧ ପରିକଳ୍ପନାର ଭିତ୍ତି । ଏହାଦ୍ୱାରା ଏକ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ମନୁଷ୍ୟର ସମଗ୍ର ସତ୍ତାକୁ ବିଶ୍ଳେଷିତକରି ତାହାକୁ ପାଞ୍ଚଟି ସ୍ତରରେ ବିଭକ୍ତ କରାଯାଇଛି । ବୁଦ୍ଧ-ବାଣୀରେ ପ୍ରକାଶିତ ହୋଇଛି ଯେ ଏହି ପଞ୍ଚସ୍କନ୍ଧ ମାଧ୍ୟମରେ ଜୀବ ଜଗତ ସହ ଜଡ଼ିତ, ସେ ହେତୁ ସ୍କନ୍ଧ ଦୁଃଖର କାରଣ । (ନତ୍ଥି ଖନ୍ଧାଦିସା ଦୁକ୍ଖାର୍ଗ ଧମ୍ମପଦ, ସୁଖବର୍ଗ,୬,ଶ୍ଳୋକ) ସ୍କନ୍ଧର ବନ୍ଧନ ଛିନ୍ନ କଲେ ଜୀବ ନିର୍ବାଣ ଲାଭ କରେ । (ପଞ୍ଚଛିନ୍ଦେପଞ୍ଚ ଜହେ ପଞ୍ଚ ଚୂତ୍ତରି ଭାବୟେ, ପଞ୍ଚସଙ୍ଗାତି ଗୋ ଭିକ୍ଷୁ ଓଘତିଣୋତ୍● ବୁଚ୍ଚତି—ଭିକ୍ଷୁବର୍ଗ, ୧୧ ଶ୍ଳୋକ) ।

ସିଦ୍ଧାଚାର୍ଯ୍ୟ ସରହପାଙ୍କ ଭାଷାରେ ସଂସାର "ଖନ୍ଧଭୂଅ ଆଅତଣ ଇନ୍ଦୀ ବିସଅ ବିଆରୁ" (ସ୍କନ୍ଧଭୂତ ଆୟତନ ଇନ୍ଦ୍ରିୟ ବିଷୟ ବିକାର । ଏହି ଉକ୍ତିଟି ବ୍ୟାଖ୍ୟାକଲେ ଦେଖାଯାଏ ପଞ୍ଚବିଷୟ, ଯଥା—ରୂପ, ରସ, ଗନ୍ଧ, ଶବ୍ଦ ଓ ସ୍ପର୍ଶ; ପଞ୍ଚମହାଭୂତ, ଯଥା—କ୍ଷିତି, ଅପ, ତେଜ ବାୟୁ ଓ ଆକାଶରୁ ପ୍ରକାଶିତ ଏବଂ ପଞ୍ଚଜ୍ଞାନେନ୍ଦ୍ରିୟ, ଯଥା—ଚକ୍ଷୁ, କର୍ଣ୍ଣ, ନାସା, ଜିହ୍ୱା ଓ ତ୍ୱକ୍; ପଞ୍ଚବିଷୟ ଲୋଭରେ ଇନ୍ଦ୍ରିୟର ପ୍ରଧାବିତ । ପଞ୍ଚବିଷୟ ଓ ପଞ୍ଚେନ୍ଦ୍ରିୟ

ତାନ୍ତ୍ରିକ ବୌଦ୍ଧଧର୍ମରେ ପଞ୍ଚସ୍କନ୍ଧରେ ପଞ୍ଚଧ୍ୟାନବୁଦ୍ଧ, ପଞ୍ଚେନ୍ଦ୍ରିୟ ଆଦି କଳ୍ପିତ କରାଯାଇଛି । ଯଥା:—

| | | | | | | | | |
|---|---|---|---|---|---|---|---|---|
| ରୂପ | ଆକାଶ | ଶବ୍ଦ | କର୍ଣ୍ଣ | ମସ୍ତିଷ୍କ | ବୈରୋଚନ | ଧ୍ୟାନବୁଦ୍ଧ | ଚକ୍ରପାଣି | ବୋଧିସତ୍ତ୍ୱ |
| ବେଦନା | ତେଜ | ରୂପ | ଚକ୍ଷୁ | ନାଭି | ରତ୍ନସମ୍ଭବ | " | ରତ୍ନପାଣି | " |
| ସଂଜ୍ଞା | ଜଳ | ରସ | ଜିହ୍ୱା | ମୁଖ | ଅମିତାଭ | | ପଦ୍ମପାଣି | " |
| ସଂସ୍କାର | କ୍ଷିତି | ଗନ୍ଧ | ନାସା | ପାଦ | ଅମୋଘସିଦ୍ଧି | " | ବିଶ୍ୱପାଣି | " |
| ବିଜ୍ଞାନ | ମରୁତ୍ | ସ୍ପର୍ଶ | ତ୍ୱକ୍ | ହୃଦୟ | ଅକ୍ଷୋଭ୍ୟ | " | ବଜ୍ରପାଣି | " |

ଦ୍ରଷ୍ଟବ୍ୟ:—An Introduction to Tantric 'Budhism—Dr. S. B. Dasgupta, Calcutta University 1950, (page-97)

ସମ୍ପର୍କ ପଞ୍ଚବିଜ୍ଞାନ, ଯଥା—ଚକ୍ଷୁ, ଶ୍ରୋତ୍ରିୟ, ଘ୍ରାଣ, ରସନା ଓ ତ୍ୱକ୍‌ବିଜ୍ଞାନ ରୂପେ ପରିଚିତ । ଏହା ସହିତ ମନୋବିଜ୍ଞାନକୁ ଯୁକ୍ତ କରି ଷଡ଼ବିଜ୍ଞାନ ସ୍ଥିରୀକୃତ ହୋଇଛି । ପ୍ରତ୍ୟେକ ବିଜ୍ଞାନର ଦୁଇଟି ଆୟତନ—ବିଷୟ ଏବଂ ଇନ୍ଦ୍ରିୟ ଆୟତନ, ଯଥା—ଚକ୍ଷୁ-ବିଜ୍ଞାନର ବିଷୟ ଆୟତନ ସୁନ୍ଦର ଦୃଶ୍ୟ ଓ ଇନ୍ଦ୍ରିୟ ଆୟତନ ଚକ୍ଷୁ । ଏହି ଦୃଷ୍ଟିରୁ ଷଡ଼ବିଜ୍ଞାନ ଓ ଦ୍ୱାଦଶ ଆୟତନ ପରିଦୃଷ୍ଟ ହୁଏ । ଏ ସକଳର ସମଷ୍ଟି ଅଷ୍ଟାଦଶ ଧାତୁ ରୂପେ ପରିଗଣିତ । ସଂସାର ଏହି ଅଷ୍ଟାଦଶ ଧାତୁରେ ବିନିର୍ମିତ । ପଞ୍ଚସ୍କନ୍ଧରେ ଜାଗତିକ ବସ୍ତୁ ସକଳର ଧର୍ମ ବର୍ଗୀକୃତ ହୋଇଛି ।

ଚର୍ଯ୍ୟାଗୀତିକାର ବହୁ ସ୍ଥଳରେ ପଞ୍ଚସ୍କନ୍ଧ ମିଳେ । ବିରୁବା ଓ କାହ୍ନୁପାଙ୍କର ଏହି ଦୁଇଟି ପଦ ଏଠାରେ ବିଚାର୍ଯ୍ୟ—

ସହଜେ ଥିର କରି ବାରୁଣୀ ସାନ୍ଧେ । ଜୈଅଜରାମର ହୋଇ ଦିଢ଼ କାନ୍ଧେ । (ବିରୁବା ୩), ତିଅ ସହଜେ ଶୂନ୍ୟ ସମ୍ପୁନ୍ନା, କାନ୍ଧ ବିୟୋଏ ମା ହୋହି ବିସନ୍ନା । (କାହ୍ନୁ-୪୨) । ଏହି ଦୁଇଟି ଉକ୍ତିରେ ଯଥାକ୍ରମେ ସ୍କନ୍ଧର ଦୃଢ଼ୀକରଣ ଓ ବିନାଶକରଣ ବିଷୟ ଉଲ୍ଲେଖ କରାଯାଇଛି । ତାନ୍ତ୍ରିକ ସିଦ୍ଧଗଣ କାୟାସାଧକ ବା ଷଡ଼ାଙ୍ଗଯୋଗ ସାଧକ ଥିବାରୁ ଶରୀରର ଦୃଢ଼ତା ଓ ପରିପକ୍ୱତା ବିନା ସିଦ୍ଧିଲାଭ ଅସମ୍ଭବ ବୋଲି ଉପଲବ୍ଧି କରିଥିଲେ । କାୟାଭାବେ ନ ସିଦ୍ଧି ନ ଚ ପରମ ସୁଖଂ ପ୍ରାପ୍ୟତେ ଜନ୍ମନୀହ (ଶ୍ରୀକାଳଚକ୍ର ତନ୍ତ୍ର) ଦେହାଭାବେ କୁତଃ ସୌଖ୍ୟମ୍ (ହେବଜ୍ରତନ୍ତ୍ର) ଦେହ ସରିସଅ ତିତ୍ଥ ମଇଁ ସୁହ ଅଣ୍ଣଣ ଦିଠୋ (ସରହ ଦୋହାକୋଷ) । ସହଜ ସାଧନାରେ ଶରୀର ମୁଖ୍ୟଭୂମି । ସହଜାତପ୍ରବୃତ୍ତି ସମୂହର ପରିତୃପ୍ତି ବିଧାନ ମାଧ୍ୟମରେ ଯୋଗୀ ଅପାର୍ଥିବ ସୁଖ ଲାଭକରେ । ଅନ୍ୟ ପକ୍ଷରେ ମହାସୁଖରେ ପ୍ରତିଷ୍ଠିତ ଯୋଗୀ ନିକଟରେ ସମସ୍ତ ଜଗତ ଶୂନ୍ୟବତ୍ ପ୍ରତୀତ ହୁଏ । ସ୍ଥୂଳ ଶରୀରର ସତ୍ତା ମଧ୍ୟରେ ସେ ବିସ୍ମୃତ ହୁଏ । ଶରୀରର ମାଧ୍ୟମରେ ଅଶରୀରୀ ସୁଖର ସନ୍ଧାନ ସହଜ ସାଧନାର ବୈଶିଷ୍ଟ୍ୟ ।

ଲୁଇପା ଆଲୋଚ୍ୟ ଗୀତିକାରେ ପଞ୍ଚସ୍କନ୍ଧର ଉଲ୍ଲେଖ କରି ଏକ ପକ୍ଷରେ ପଞ୍ଚ-ଶାଖାର ବିସ୍ତାର ଦ୍ୱାରା କାୟାବୃକ୍ଷର ସଂସାର ମଧ୍ୟରେ ପ୍ରତିଷ୍ଠା ଲାଭ ଓ ଅନ୍ୟ ପକ୍ଷରେ ପୁଣି ଏହି ଶାଖା ହେତୁ ମୁକ୍ତିଲାଭ କିପରି ସଂଘଟିତ ହୁଏ, ତାହାର ସୂଚନା ଦେଇଛନ୍ତି ।

## ଚିତ୍ତ—

ଚିତ୍ତ ଶରୀରର ସାରସତ୍ତା, ସାଧନାର ଆଧାର । ଏହା ପ୍ରକୃତିବଶତଃ ଚଞ୍ଚଳ-ସ୍ୱଭାବବିଶିଷ୍ଟ । ଏଥିରେ ସହଜ ସମ୍ବୋଧି ଜାଗ୍ରତ ନ ହେବାଯାଏ ଚାଞ୍ଚଲ୍ୟଭାବ ଦୂର ହୁଏ ନାହିଁ । ନୈରାତ୍ମଜ୍ଞାନ ଲାଭପୂର୍ବକ ପ୍ରଜ୍ଞା ଓ ଉପାୟ ସମନ୍ୱିତ ହେଲେ ଏହା ବଜ୍ରରୂପ ବା ସହଜରୂପ ଗ୍ରହଣ କରେ ।

ସଂସାର ଚିତ୍ତର ଭ୍ରାନ୍ତି । ଚିତ୍ତ ଭ୍ରାନ୍ତିମୁକ୍ତ ହେଲେ ସଂସାରର ବାସ୍ତବ ସ୍ୱଭାବ ସ୍ପଷ୍ଟ ଉପଲବ୍ଧ ହେବ । ସୁତରାଂ ଚିତ୍ତକୁ ଭବଜାଲରୁ ମୁକ୍ତକରି କରୁଣା ସମନ୍ୱିତ କରି ସାଧନା ପଥରେ ଅଗ୍ରସର ହେବାକୁ ନିର୍ଦ୍ଦେଶ ଦିଆଯାଇଛି । ଏହା ଚିତ୍ତସମୁତ୍ପାଦ, ଚିତ୍ତବିଶୋଧନ, ଚିତ୍ତହନନ ଆଦି ରୂପେ ପରିଚିତ ।

ଶୂନ୍ୟତା ଓ କରୁଣା, ପ୍ରଜ୍ଞା ଓ ଉପାୟ କିମ୍ବା ପୁରୁଷ ଓ ସ୍ତ୍ରୀର ସମନ୍ୱୟରେ ବୋଧିଚିତ୍ତ ଉତ୍ପାଦିତ ହୁଏ । ନାଭିମଣ୍ଡଳର ନିର୍ମାଣ ଚକ୍ରରେ ଏହା ପ୍ରଥମେ ଆବିର୍ଭୂତ ହୁଏ ଓ ସାଧାରଣ ଚଞ୍ଚଳ ଅବସ୍ଥା ହେତୁ ସମ୍ବୃତି ବୋଧିଚିତ୍ତ ଭାବେ ପରିଚିତ ହୁଏ । ଯୋଗୀ ଏହାକୁ ବାମ ବା ଦକ୍ଷିଣକୁ ନ ନେଇ କିବା ନିମ୍ନକୁ ନିପତିତ ନ କରାଇ ହଠଯୋଗଦ୍ୱାରା ଊର୍ଦ୍ଧ୍ୱକୁ ଉତ୍ତୋଳିତ କରେ । ବିଭିନ୍ନ କାୟା ଓ ଚକ୍ର ମଧ୍ୟ ଦେଇ, ବିଭିନ୍ନ ଆନନ୍ଦ ଲାଭକଲା ଶେଷରେ ଏହା ଉଷ୍ଣୀଷ କମଳରେ ସହଜ କାୟରେ ପ୍ରବେଶ କରେ ଓ ମହାସୁଖ ବା ସହଜାନନ୍ଦ ଉପଲବ୍ଧି କରେ । ଏହି ସ୍ଥିର, ସୁଖମୟ, ଶାନ୍ତ ଅବସ୍ଥାରେ ଏହା ବିବୃତି ବା ପାରମାର୍ଥିକ ବୋଧିଚିତ୍ତ ଭାବେ ପରିଚିତ ହୁଏ । ବୌଦ୍ଧତାନ୍ତ୍ରିକ ଗ୍ରନ୍ଥରେ ନିମ୍ନୋକ୍ତ ଭାବେ ବୋଧିଚିତ୍ତର ବର୍ଣ୍ଣନା କରାଯାଇଛି—ଅନାଦିନିଧାନଂ ଶାନ୍ତଂ ଭାବାଭାବ କ୍ଷୟଂ ବିଭୁମ – ଶୂନ୍ୟତା କରୁଣାଭିନ୍ନଂ ବୋଧିଚିତ୍ତମିତି ସ୍ମୃତମ୍ (ଶ୍ରୀଗୁହ୍ୟସମାଜ) ନିତ୍ୟଂ ପ୍ରଭାସ୍ୱରଂ ଶୁଦ୍ଧିଂ ବୋଧିଚିତ୍ତଂ ଜିନାଲୟମ୍ — ସର୍ବ ଧର୍ମମୟଂ ଦିବ୍ୟଂ ନିଖିଲାସ୍ପଦ କାରଣମ୍ (ପ୍ରଜ୍ଞୋପାୟ ବିନିଶ୍ଚୟ ସିଦ୍ଧି) ।

ବୋଧିଚିତ୍ତ ସମ୍ପ୍ରାଦ ନିମନ୍ତେ ସାଧକର ମୁଦ୍ରାସହ ମଣ୍ଡଳ ମଧ୍ୟରେ ମିଳନ ସହଜିୟା ସାଧନାରେ ଅନୁମୋଦିତ । ଏହା ତାନ୍ତ୍ରିକ ଭାବେ ଓ ସଦ୍ଗୁରୁର ସମନ୍ୱୟ ଭାବରେ ବର୍ଣ୍ଣିତ ହୁଏ । କିନ୍ତୁ ଏ ପ୍ରକାର ଯୌନ-ଯୋଗରେ ସ୍ଥୂଳ ଶରୀରର ସୁଖ କାମ୍ୟ ନୁହେଁ । ଯୋଗୀଚିତ୍ତର ଚାଞ୍ଚଲ୍ୟ ଦୂରକରି ଶୁକ୍ରଧାରଣ କରିବାଦ୍ୱାରା ବୋଧିଚିତ୍ତକୁ ଊର୍ଦ୍ଧ୍ୱକୁ ଉତ୍ତୋଳିତ କରିବାକୁ ସମର୍ଥ ହୁଏ । ଚିତ୍ତର ଚଞ୍ଚଳତା ଦୂରୀକରଣ ବିନା କାୟାକୁ କାଳ କବଳରୁ ରକ୍ଷାକରାଯାଇ ପାରିବ ନାହିଁ । ଲୁଇପାଦ ଆଲୋଚ୍ୟ ଗୀତିକାରେ ଏହା ହିଁ ଉଲ୍ଲେଖ କରିଛନ୍ତି । ଚର୍ଯ୍ୟାଗୀତିକାରେ ଅନୁରୂପ ଉପଦେଶ ବହୁସ୍ଥଳରେ ଦେଖାଯାଏ । ବିଶେଷତଃ କାହ୍ନୁପାଦଙ୍କର ଏହି ଉକ୍ତିଟି ଏଠାରେ ଉଲ୍ଲେଖଯୋଗ୍ୟ । କାଅଣାବଜ୍ଜି ଖାଣ୍ଟି ମଣ କେଡୁଆଲ । ସଦ୍‌ଗୁରୁ ବଅଣେ ଧର ପତବାଲ ॥ ଚୀଅ ଥିରକରି ଧର ହୁରେ ନାଇ । ଆନ ଉପାସ୍ତେ ପାରଣ ଣ ଜାଇ ॥ (ଚର୍ଯ୍ୟା-୩୮) ।

## ମହାସୁଖ—

ତାନ୍ତ୍ରିକ ସହଜିୟା ସିଦ୍ଧମାନଙ୍କ ସାଧନାର ଚରମ ଲକ୍ଷ୍ୟ ମହାସୁଖ । ସଂକ୍ଷେପତଃ ଏହି ମହାସୁଖ ବୌଦ୍ଧଧର୍ମର ନିର୍ବାଣ, ହିନ୍ଦୁଧର୍ମର ମୋକ୍ଷ ଓ ତାନ୍ତ୍ରିକ ସାଧନାର ସମରସ ପର୍ଯ୍ୟାୟବାଚୀ । କିନ୍ତୁ ମହାସୁଖର ସାଧନା [illegible] ପ୍ରକାଶ କରି

ସିଦ୍ଧାଚାର୍ଯ୍ୟଗଣ ଏହାକୁ ଉଚ୍ଚସ୍ଥାନ ପ୍ରଦାନ କରନ୍ତି । ସାଧାରଣତଃ ଜୀବନଚର୍ଯ୍ୟା ମଧ୍ୟରେ ପ୍ରବୃତ୍ତିମାର୍ଗରେ ଗତିକରି ବିନା କଷ୍ଟ କଳ୍ପନାରେ ସାଧକ ଏହା ଉପଲବ୍ଧି କରିପାରେ । ଏଥିପାଇଁ ନାନା ମୁଦ୍ରା, ବନ୍ଧ, ଆସନ ଦ୍ୱାରା ଅଷ୍ଟାଙ୍ଗଯୋଗ ସାଧନା ପରିବର୍ତ୍ତେ କେବଳ ମହାଅନୁରାଗମୟ ସାଧନା ଆବଶ୍ୟକ ।

ପ୍ରଜ୍ଞାଉପାୟ, ଶୂନ୍ୟତା କରୁଣା ବା ଶ୍ୱାସପ୍ରଶ୍ୱାସବାହୀ ନାଡ଼ିଦ୍ୱୟର ମିଳନରେ ନାଭିମଣ୍ଡଳସ୍ଥ ନିର୍ମାଣ ଚକ୍ରରେ ସଂଜାତ ବୋଧିଚିତ୍ତକୁ ମଧ୍ୟମ ନାଡ଼ି ଅବଧୂତିକା ମାର୍ଗରେ ଊର୍ଦ୍ଧ୍ୱକୁ ଉଦ୍ବେଳିତ କରି ଶୀର୍ଷଦେଶସ୍ଥ ଉଷ୍ଣୀଷ କମଳରେ ଅବସ୍ଥାପିତ କରିବା ଦ୍ୱାରା ସାଧକ ମହାସୁଖ ଲାଭ କରେ । ଉଷ୍ଣୀଷ କମଳର ଅନ୍ୟାନ୍ୟ ସଂଜ୍ଞା—ବଜ୍ରକାୟ ସହଜକାୟ ମହାସୁଖଚକ୍ର, ମହାସୁଖ କମଳ, ସର୍ବଶୂନ୍ୟ ଇତ୍ୟାଦି । ଶରୀରରେ ଗୁରୁଚକ୍ର, ଗୁରୁକାୟ, ଗୁରୁଶୂନ୍ୟ, ଗୁରୁପଦ୍ମ ଇତ୍ୟାଦି ନିର୍ଣ୍ଣୟ କରିବା ସଙ୍ଗେ ଗୁରୁ ଆନନ୍ଦର ଉଲ୍ଲାସ କରାଯାଏ । ବୋଧିଚିତ୍ତକୁ ଊର୍ଦ୍ଧ୍ୱକୁ ଉଦ୍ବେଳିତ କରିବା ସମୟରେ ସାଧକ କ୍ରମାନ୍ୱୟରେ ଆନନ୍ଦର ପରମାନନ୍ଦ, ବିରମାନନ୍ଦ, ସହଜାନନ୍ଦ ଉପଲବ୍ଧିକରେ । ସହଜାନନ୍ଦ ମହାସୁଖ ସ୍ୱରୂପ ପ୍ରଜ୍ଞା ଓ ଉପାୟଯୋଗ ମଣ୍ଡଳ ସାଧନାରେ ମହାମୁଦ୍ରା ସହ ସାଧକର ଯୌନ-ଯୋଗ ମାଧ୍ୟମରେ ସଂଘଟିତ ହୁଏ । କିନ୍ତୁ ଏହି ଅବସ୍ଥାରେ ବିନ୍ଦୁରୂପ ବୋଧିଚିତ୍ତର ନିମ୍ନଗତି ପରିହାର କରି ସ୍ଥୂଳ ଯୌନସୁଖ ପରିବର୍ତ୍ତେ ମହାସୁଖ ଲାଭ ନିମିତ୍ତ ସାଧକର ସଂଯମ ଓ ଚିତ୍ତସ୍ଥିରତା ଏକାନ୍ତ ଆବଶ୍ୟକ । ଏଥିପାଇଁ କାୟାସାଧନା ବା ଷଡ଼ଙ୍ଗ ଯୋଗ ସାଧନାର ସାହାଯ୍ୟ ଗ୍ରହଣୀୟ । ତଦ୍ୱାରା ସାଧକ ଶ୍ୱାସ, ପ୍ରଶ୍ୱାସ ରୁଦ୍ଧକରି ପ୍ରାଣବାୟୁକୁ ଊର୍ଦ୍ଧ୍ୱକୁ ଉଦ୍ବେଳନ କରିବା ସଙ୍ଗେ ସଙ୍ଗେ ସ୍ଥୂଳ ଇନ୍ଦ୍ରିୟସୁଖ ବନ୍ଧନମୟରେ ମହାସୁଖର ଅଧିକାରୀହୁଏ । ବାମ ଦାହିଣ ଗୁପୀ ମିଳ ମିଳ ମାଙ୍ଗା—ବାଟତ ମିଲିଲ ମହାସୁଖ ସାଙ୍ଗା (କମ୍ବଳାମ୍ବର-୮) ।

ମହାସୁଖର ସ୍ୱରୂପ ବର୍ଣ୍ଣନାତ୍ମକ ଏହି ଉକ୍ତିଗୁଡ଼ିକ ପ୍ରଣିଧେୟ—(୧) ଆଇଣ ଅନ୍ତ ଣ ମଝ୍ଝ ଣ ଣଉ ଭବଣଉ ଣିବ୍‌ବାଣ-ଏହୁ ସେ ପରମ ମହାସୁହ ଣଉ ପର ଣଉ ଅପ୍‌ପାଣ -ହେବଜ୍ରତନ୍ତ୍ର (୨) ଯହିଁ ମଣ ମରଇ ପବଣ ହୋ ଖୟଅ ଯାଇ—ଏହୁ ସେ ପରମ ମହାସୁହ ରହଅ କହିଁପି ନ ଯାଇ; ଘୋରାନ୍ଧାରେଁ ଚନ୍ଦମଣି ଜିମ ଉଜ୍‌ଜୋଅ କରେଇ—ପରମ ମହାସୁହ ଏକକୁଖଣ୍ଡେ ଦୁରିଆଶେଷ ହରେଇ—ସରହ ଦୋହାକୋଷ (୩) ଭେଦ୍ୟ ଭେଦକ ନିର୍ଲକ୍ଷଂ ଅଦ୍ୱୟଂ ରୁ ମହାସୁଖମ୍; ପ୍ରଜ୍ଞୋପାୟ ମହାକରୁଣା ସମରସାକାର ଏକତଃ ଉପ୍ସ୍ନ ନିଷ୍ପଦ୍ୟତେ ଜ୍ଞାନଂ ଅଦ୍ୱୟଂ ମହାସୁଖମ୍ ॥ ରୂପ ଶବ୍ଦ ରସାଗତଂ ଗନ୍ଧସ୍ପର୍ଶାଦି ବର୍ଜ୍ଜିତମ୍ । ଧର୍ମଧାତୁମୟଂ ଶୁଦ୍ଧଂ ଜ୍ଞାନଂ ଉତ୍ତମମ୍—ଗୁହ୍ୟସିଦ୍ଧି ।

ଚର୍ଯ୍ୟାଗୀତିକାରେ ୮, ୧୩, ୧୮, ୨୨, ୨୮, ୪୧, ୫୦ ସଂଖ୍ୟକ ଗୀତିକା-ମାନଙ୍କରେ ମହାସୁଖର ଉଲ୍ଲେଖ ମିଳେ । ଲୁଇପାଦ ମଧ୍ୟ ୨୧ ସଂଖ୍ୟକ ଚର୍ଯ୍ୟାରେ ଏହାର ସ୍ୱରୂପ ବର୍ଣ୍ଣନା କରିଛନ୍ତି ।

## ଗୁରୁ—

ସହଜ ସାଧନାର ତତ୍ତ୍ୱ ଗୁହ୍ୟାତ୍ ଗୁହ୍ୟମ୍ । ବିନା ଗୁରୁରେ ସିଦ୍ଧିଲାଭ ଅସମ୍ଭବ । ଏଣୁ ସିଦ୍ଧାଚାର୍ଯ୍ୟଗଣ ପ୍ରତ୍ୟେକ ସ୍ଥଳରେ ବଜ୍ରଗୁରୁ, ବଜ୍ରଗୁରୁ ବା ସଦ୍‌ଗୁରୁଙ୍କର ନିର୍ଦ୍ଦେଶ ଗ୍ରହଣ ପୂର୍ବକ ସାଧନାରେ ପ୍ରବୃତ୍ତ ହେବାକୁ ଉପଦେଶ ପ୍ରଦାନ କରିଛନ୍ତି । ନ ବିନା ବଜ୍ର ଗୁରୁଣା ସର୍ବକ୍ଳେଶ ପ୍ରହାଣକଂ—ନିର୍ବାଣଂ ଚ ପଦଂ ଶାନ୍ତମବୈବର୍ତ୍ତିକମାପ୍ନୁୟାତ୍ (ଶ୍ରୀ ସମାଜତନ୍ତ୍ର) । ଚର୍ଯ୍ୟାଗୀତିକାରେ ଏହି ଉକ୍ତିଗୁଡ଼ିକ ଗୁରୁବାଦର ଗୁରୁତ୍ୱ ପ୍ରମାଣ କରେ—ସଦ୍‌ଗୁରୁ ବୋହେଁ ଜିତେଲ ଭବବଲ (୧୨) ସଦ୍‌ଗୁରୁ ପାଅ ପାଏଁ ଜାଇବୁ ପୁଣୁ ଜିଣଉରା (୧୪) ସଦ୍‌ଗୁରୁ ବୋହେ କରିହ ସୋ ନିଚଳ (୧୧) ସଦ୍‌ଗୁରୁ ବୋହେଁ ବୁଝିରେ କାସୁ କାହାଣୀ (୧୩) ଏ ପ୍ରସଙ୍ଗରେ ୨୮, ୩୫, ୩୯, ୪୦, ୪୫, ସଂଖ୍ୟକ ଚର୍ଯ୍ୟା ମଧ୍ୟ ଦ୍ରଷ୍ଟବ୍ୟ।

ତାନ୍ତ୍ରିକ ବିଧି ଅନୁସାରେ ସାଧକ ପ୍ରଥମେ ଗୁରୁଙ୍କୁ ବରଣ କରି ପୂଜା ଅର୍ଚ୍ଚନା ଓ ଉପହାରାଦି ଦ୍ୱାରା ତାଙ୍କର ବନ୍ଦାପନା କରି ଶିଷ୍ୟଭାବେ ଅଭିଷିକ୍ତ ହୁଅନ୍ତି । ତତ୍ପରେ ମହାମୁଦ୍ରା ସହ ମଣ୍ଡଳରେ ପ୍ରବେଶ କରି ଗୁରୁଙ୍କ ନିର୍ଦ୍ଦେଶକ୍ରମେ ସାଧନାରେ ପ୍ରବୃତ୍ତ ହୋଇ ସହଜାନନ୍ଦ ଲାଭ କରିବାକୁ ସମର୍ଥ ହୁଅନ୍ତି । ସହଜ ସାଧନା ଜଟିଳ ସାଧନା । ବାସ୍ତବ କାର୍ଯ୍ୟରେ ସିଦ୍ଧି ପ୍ରତିଫଳିତ ହୁଏ । ସୁତରାଂ ଗୁରୁ ଉପଦେଶ ବିନା ପରିଣାମରେ ଏହା କ୍ଷତିକାରକ ହୋଇପାରେ ।

## ସମାଧି ଓ ଛନ୍ଦବନ୍ଧ--

ସମାଧି ଯୋଗ ସାଧନାର ଶେଷ ଅଙ୍ଗ ବା ଚରମ ଅବସ୍ଥା । ଏହି ଅବସ୍ଥାରେ ସାଧକ ଏକ ଆତ୍ମସମାହିତ ନିର୍ବିକଳ୍ପ ଭାବରେ ପ୍ରତିଷ୍ଠିତ ହୋଇ ଅଖଣ୍ଡ ଅଚ୍ଛିଦ୍ର ସୁଖ ଉପଲବ୍ଧି କରେ ଏବଂ ଭବବନ୍ଧନରୁ ମୁକ୍ତିଲାଭ କରେ । ହିନ୍ଦୁ ଯୋଗଦର୍ଶନରେ ତଥା ତାନ୍ତ୍ରିକ ସାଧନାରେ ସମାଧିର ମହତ୍ତ୍ୱ ସମଭାବେ ସ୍ୱୀକୃତ । ତେବେ ଏଥିପାଇଁ ଷଡ଼ାଙ୍ଗ, ସପ୍ତାଙ୍ଗ ଓ ଅଷ୍ଟାଙ୍ଗ ଯୋଗର ଆବଶ୍ୟକତା ଭିନ୍ନ ଭିନ୍ନ ମତାନୁସାରେ ନିର୍ଣ୍ଣିତ ହୋଇଛି । ପୁଣି କାୟାସାଧନା ବା ହଠ ଯୋଗରେ ନାନା ମୁଦ୍ରାବନ୍ଧ, ଆସନ,ପ୍ରାଣାୟାମ ବିଧାନ କରାଯାଇଛି । ଯଥା—ବଜ୍ରୋଲୀ, ସହଜୋଲୀ, ଆମୋରୋଲୀ, ଖେଚରୀ, ଅଶ୍ୱିନୀ ଆଦି ମୁଦ୍ରା; ଉଡ୍‌ଡୀୟାନ, ଜାଲନ୍ଧର, ମୂଳବନ୍ଧ, ମହାବନ୍ଧ, ଆଦିବନ୍ଧ; ପଦ୍ମ, ମୟୂର, ଶୀର୍ଷ ଆଦି ଆସନ, ପୂରକ, ରେଚକ, କୁମ୍ଭକ, ଅଙ୍ଗନ୍ୟାସ, କରନ୍ୟାସ ଆଦି ପ୍ରାଣାୟାମ । ଶରୀରରେ ବାୟୁସଞ୍ଚାଳନର ସ୍ୱାଭାବିକ ଗତିପଥ ରୁଦ୍ଧ କରିବା କ୍ଷମତା ଲାଭ ଉଦ୍ଦେଶ୍ୟରେ ସମସ୍ତ କରଣୀୟ ।

ସହଜଜଣ୍ଟା ସାଧକଗଣ ବୋଧିଚନ୍ଦ୍ରର ନିମ୍ନଗାମୀ ପ୍ରବାହ ରୁଦ୍ଧ କରିବାପାଇଁ କାୟ-ସାଧନାକୁ ସହାୟକ ପନ୍ଥାଭାବେ ଗ୍ରହଣ କରିଥିଲେ ହେଁ ଏହି ମାର୍ଗରେ ମହାସୁଖ ଲାଭ ଦୁର୍ଲଭ ବୋଲି ବିଶ୍ବାସ କରନ୍ତି । ହଠଯୋଗର ଏ ସମସ୍ତ ବହିରଙ୍ଗ ଜଟିଳ ବିଧିବ୍ୟବସ୍ଥା ସହଜସାଧନାର ପରିପନ୍ଥୀ । ତେଣୁ ସିଦ୍ଧାଚାର୍ଯ୍ୟଗଣଙ୍କ ରଚନାରେ ଏ ପ୍ରକାରି ସାଧନ ମାର୍ଗର ତୀବ୍ର ସମାଲୋଚନା ପରିଦୃଷ୍ଟ ହୁଏ । ସରହପାଦଙ୍କ ନିମ୍ନୋକ୍ତ ପଦଗୁଡ଼ିକ ଉଲ୍ଲେଖ-ଯୋଗ୍ୟ—ଘରହି ବଇସୀ ଦୀବା ଜାଲି । କୋଣହି ବଇସୀ ଘଣ୍ଟା ଚାଲି ।। ଅକ୍ଖି ଣିବେସୀ ଆସଣ ବାନ୍ଧୀ । କଣ୍ଣେହିଁ ଖୁସଖୁସାଇ ଜଣ ଧନ୍ଧୀ ।। (ଦୋହା) । ଝାଣେଁ ମୋହିଅ ସଅଲ ବି ଲୋଅ । ଣିଅ ସହାବ ଣହି ଲକ୍ଖଇ କୋଅ ।। (ଦୋହା), ସରହ ଭଣଇ ବଢ଼ ଜାଣହ ଅପ୍ପା । ଣଉସୋ ଧେଅ ଣ ଧାରଣ ଜପ୍ପା ।। ଦୋହା) ଉଜୁରେ ଉଜୁଛାଡ଼ି ମା ଲେହୁରେ ବାଙ୍କ—ନିଅଡ଼ି ବୋହି ମା ଯାହୁରେ ଲାଙ୍କ ।। ହାଥେର କଙ୍କଣ ମା ଲେଉ ଦାପଣ—ଆପଣେ ଅପା ବୁଝ୍ ତୁ ନିଅମଣ ।। (ଚର୍ଯ୍ୟା-୩୨) । ଦାରିକାପାଦ ମଧ୍ୟ କହିଛନ୍ତି—କନ୍ତ୍ରୋ ମନ୍ତ୍ରେ କନ୍ତ୍ରୋ ତନ୍ତ୍ରେ କନ୍ତ୍ରୋରେ ଝାଣ ବଖାଣେ—ଅପଇଠାନ ମହାସୁହଲୀଳେଁ ଦୁଲକ୍ଖ ପରମନିବାଣେ (ଚର୍ଯ୍ୟା-୩୪) । ସହଜ ସାଧନାର ବୈଶିଷ୍ଟ୍ୟ ହେଉଛି ସାଧାରଣ ଜୀବନ-ଚର୍ଯ୍ୟା ମଧ୍ୟରେ ଅନିର୍ବଚନୀୟ ନିର୍ବିକଳ୍ପ ମହାସୁଖଲାଭ । କ୍ଷୁଧା ଓ ଯୌବନଲାଳସା ରୂପକ ଦୁଇଟି ମୌଳିକ ସହଜାତ ପ୍ରବୃତ୍ତିର ବିନାଶ ସାଧନା ଶକ୍ତିପୂର୍ବକ ନିରୋଧ ଅପେକ୍ଷା ସ୍ୱାଭାବିକ ଭାବେ ପରିତୃପ୍ତି ମଧ୍ୟରେ ସହଜକର । ଚର୍ଯ୍ୟାଗୀତିକାର ଟୀକାକାର ଏହି ସାଧନାକୁ ମହାରାଗନୟଚର୍ଯ୍ୟା ବା ମହାଅନୁରାଗ ସମାଧିରୂପେ ଉଲ୍ଲେଖ କରିଛନ୍ତି । ଇନ୍ଦ୍ରିୟ-ସୁଖ ସାଧନା ମଧ୍ୟରେ ମହାରାଗ ସାଧନା ସାର୍ଥକ ହୁଏ । ଭୋଗ ମଧ୍ୟରେ ବୈରାଗ୍ୟ ସୃଷ୍ଟି ଏହାର ବୈଶିଷ୍ଟ୍ୟ । ତାନ୍ତ୍ରିକ ଗ୍ରନ୍ଥରୁ ନିମ୍ନୋଦ୍ଧୃତ ଶ୍ଳୋକର ଉକ୍ତିରେ ସେ ଏହା ପ୍ରମାଣ କରିଛନ୍ତି ।

ହେବଜ୍ର—ରାଗେଣବଧ୍ୟତେ ଲୋକୋରାଗେଣୈବ ବିମୁଚ୍ୟତେ
ବିପରୀତ ଭାବନା ହ୍ୟେଷା ନ ଜ୍ଞାତା ବୁଦ୍ଧତୀର୍ଥିକୈଃ ।
ଶ୍ରୀସମାଜ—ପଞ୍ଚକମାନ୍ ପରିତ୍ୟଜ୍ୟ ତପୋଭିର୍ନ୍ନ ଚ ପୀଡ଼ୟେତ୍
ସୁଖେନ ସାଧୟେଦ୍ ବୋଧିଂ ଯୋଗତନ୍ତ୍ରାନୁସାରତଃ ।

ଏହି ପ୍ରସଙ୍ଗ ଆଲୋଚନାରେ ଡ. ଶଶିଭୂଷଣ ଦାଶଗୁପ୍ତଙ୍କ ଦ୍ୱାରା ଉଦ୍ଧୃତ ଏହି ଶ୍ଳୋକ ଦୁଇଟି ମଧ୍ୟ ଏ ସ୍ଥଳେ ସ୍ମରଣୀୟ—ରାଗେଣୋତ୍ପଦ୍ୟତେ ଲୋକୋ ରାଗକ୍ଷୟାତ୍ କ୍ଷୟଂ ଗତଃ । ବଜ୍ରରାଗ ପରିଜ୍ଞାନାତ୍ ବଜ୍ରସତ୍ତ୍ୱା ଭବେତ୍ ମନଃ ।। ଏବଂ ରାଜ୍ୟତେ ରାଗ ଚଣ୍ଡେନ ରାଗବେଗେନ ମୁଚ୍ୟତେ । ( An Introduction to Tantric Budhisim page 136,137)

ଏହି ଅଲୋଚନାରୁ ପ୍ରତୀୟମାନ ହୁଏ ଯେ ଦେହକଷ୍ଟ ସହ ସମାଧି ସାଧନା କରିବା ଅପେକ୍ଷା ସହଜଯୋଗ ଦ୍ୱାରା ମହାସୁଖ ଲାଭ ଶ୍ରେୟସ୍କର ବୋଲି ସିଦ୍ଧାଚାର୍ଯ୍ୟ ଲୁଇ ଆଲୋଚ୍ୟ ଗୀତିକାରେ ସକଳ ସମାଧିର ବ୍ୟର୍ଥତା, ଛନ୍ଦବନ୍ଧର ଅନାବଶ୍ୟକତା ଦର୍ଶାଇ ଦେଇଛନ୍ତି ।

## ଶୂନ୍ୟପକ୍ଷ—

ସହଜିଆ ସିଦ୍ଧମାନେ ଶୂନ୍ୟବାଦୀ । ବୌଦ୍ଧଧର୍ମର ଶୂନ୍ୟବାଦ ଓ ବୁଦ୍ଧବାଣୀ ସର୍ବଂ ଅନିତ୍ୟଂ ସର୍ବଂ ଅନାତ୍ମଂ ନିର୍ବାଣଂ ଶାନ୍ତମ୍—ଏମାନଙ୍କ ଶୂନ୍ୟବାଦର ଭିତ୍ତି । ନାଗାର୍ଜୁନଙ୍କ ମାଧ୍ୟମିକ ଦର୍ଶନ, ଅଶ୍ୱଘୋଷଙ୍କ ତଥତାବାଦ, ଅସଙ୍ଗ, ବସୁବନ୍ଧୁଙ୍କ ବିଜ୍ଞାନବାଦ ବା ଯୋଗାଚାର ଦର୍ଶନରେ ମୌଳିକ ଶୂନ୍ୟବାଦର ବ୍ୟାପକ ବିକାଶ ଓ ବିସ୍ତାର ସଂଘଟିତ ହେଲା । ଶୂନ୍ୟର ପ୍ରତିଶବ୍ଦ ରୂପେ ବଜ୍ର ଗୃହୀତ ହୋଇ ବଜ୍ରଯାନ ନାମରେ ଏକ ଶୂନ୍ୟବାଦୀ ସିଦ୍ଧାନ୍ତର ପ୍ରତିଷ୍ଠା ହେଲା । ଶୂନ୍ୟର ସତ୍ତା ସ୍ୱୀକାର ପୂର୍ବକ ତାର ସ୍ୱରୂପ ନିର୍ଣ୍ଣୟ କରାଗଲା । ଯାହାକି ବଜ୍ରସତ୍ତ୍ୱ ବା ବୋଧିଚିତ୍ତ ନାମରେ ପରିଚିତ । ଶୂନ୍ୟତା ବଜ୍ରଂ ଇତ୍ୟୁକ୍ତଂ ଆକାର ସତ୍ତ୍ୱଂ ଉଚ୍ୟତେ (ଜ୍ୱାଳାବଳୀ ବଜ୍ରମାଳାତନ୍ତ୍ର). ଅଦ୍ୱୟ ବଜ୍ରସଂଗ୍ରହ ଅନୁସାରେ ଦୃଢ଼ଂ ସାରଂ ଅସୌଶୀର୍ଯ୍ୟଂ ଅଚ୍ଛେଦ୍ୟା ଭେଦ୍ୟ ଲକ୍ଷଣମ୍-ଅଦାହି ଅବିନାଶୀ ଚ ଶୂନ୍ୟତା ବଜ୍ରଂ ଉଚ୍ୟତେ । ତନ୍ତ୍ରର ଶକ୍ତିତତ୍ତ୍ୱ ପ୍ରଭାବରେ ବଜ୍ରସହ ପଦ୍ମର ବା ଶୂନ୍ୟ ସହ କରୁଣାର ଆରୋପ କରି ବଜ୍ରସତ୍ତ୍ୱର ଯୁଗନଦ୍ଧରୂପ ପରିକଳ୍ପିତ ହେଲା । ବଜ୍ରଯାନର ଶୂନ୍ୟ, କରୁଣା ଓ ବଜ୍ରସତ୍ତ୍ୱ ତାନ୍ତ୍ରିକ ସହଜିଆମାନଙ୍କ ଦୃଷ୍ଟିରେ ଯଥାକ୍ରମେ ପ୍ରଜ୍ଞା, ଉପାୟ ଓ ବୋଧିଚିତ୍ତ । ଏହି ବୋଧିଚିତ୍ତ ବଜ୍ରସତ୍ତ୍ୱ ମୂର୍ତ୍ତିମନ୍ତ ଶୂନ୍ୟ ଓ ମହାସୁଖର ସମ୍ପାଦକ । ତେଣୁ ତାଙ୍କର ବନ୍ଦନା ଏ ପ୍ରକାର କରାଯାଇଛି—ବଜ୍ରସତ୍ତ୍ୱଂ ନମସ୍କୃତ୍ୟ ପ୍ରଜ୍ଞୋପାୟ ସ୍ୱରୂପିଣମ୍, ମହାସୁଖାଦ୍ୱୟଂ ଭକ୍ଷେ ବସ୍ତୁତତ୍ତ୍ୱଂ ସମାସତଃ । (ଅଦ୍ୱୟବଜ୍ରସଂଗ୍ରହ) ।

ନାଗାର୍ଜୁନପାଦ ଶୂନ୍ୟର ଚତୁର୍ବର୍ଗ ନିର୍ଣ୍ଣୟ କରିଛନ୍ତି-ଶୂନ୍ୟଂ ଚ ଅତିଶୂନ୍ୟଂ ଚ ମହାଶୂନ୍ୟଂ ତୃତୀୟକମ୍—ଚତୁର୍ଥଂ ସର୍ବଶୂନ୍ୟଂ ଚ ଫଳହେତୁ ପ୍ରଭେଦତଃ (ପଞ୍ଚକ୍ରମ) । ସିଦ୍ଧାଚାର୍ଯ୍ୟଗଣଙ୍କର ଗୀତିକାରେ ଏତାଦୃଶ ବର୍ଗୀକରଣ ବହୁସ୍ଥଳରେ ପରିଷ୍ଫୁଟ । (ଶବରୀପାଙ୍କ ୫୦ ସଂଖ୍ୟକ ଚର୍ଯ୍ୟା ଦ୍ରଷ୍ଟବ୍ୟ) । ସର୍ବଶୂନ୍ୟ ହେଉଛି ବିଶୁଦ୍ଧଜ୍ଞାନ, ଚରମସତ୍ୟ ଓ ପରମତତ୍ତ୍ୱ । ଏହାର ଆଦି-ଅନ୍ତ-ମଧ୍ୟ ନାହିଁ; ଭାବ-ଅଭାବ ନାହିଁ; ଦୋଷଗୁଣ ନାହିଁ ଅଥଚ ସବୁ ଅଛି । ଏହାର ଅନ୍ୟ ନାମ ସହଜଶୂନ୍ୟ । ଏହା ଅବଧୂତୀର ନିବାସସ୍ଥଳୀ । ମହାସୁଖକାୟରେ ପ୍ରବେଶ କରି ସାଧକ ଶୂନ୍ୟତାର ଐକାନ୍ତିକ ଉପଲବ୍ଧି କରିବାକୁ ସମର୍ଥ ହୁଏ ।

ସାଧକ ଶୂନ୍ୟପକ୍ଷ ସମର୍ଥନ କରିବାଦ୍ୱାରା ଅର୍ଥାତ୍ ଶୂନ୍ୟବାଦ ଗ୍ରହଣ ଦ୍ୱାରା ଜାଗତିକ ବସ୍ତୁସକଳର ଅସ୍ତିତ୍ୱ ଅସ୍ୱୀକାର କରିବାକୁ ଶିକ୍ଷାକରେ ଓ ଅବିଦ୍ୟା ସଂବୃତ୍ତ ଚିତ୍ତକୁ ଭବବନ୍ଧରୁ ମୁକ୍ତ କରିବାକୁ ସମର୍ଥ ହୁଏ । ବାସନାବଧି ତ ଚିତ୍ତ ଶୂନ୍ୟତାଜ୍ଞାନ ଯୋଗେ

ସକଳ ବନ୍ଧନ ଛିନ୍ନକରି ଊର୍ଦ୍ଧ୍ୱକୁ ଗତିକରେ । ଶୂନ୍ୟତା ଏଥିପାଇଁ ପ୍ରଜ୍ଞାରୂପେ ଆଖ୍ୟାତ । ପ୍ରଜ୍ଞା ବା ବିଶୁଦ୍ଧ ଜ୍ଞାନ ସହ ଉପାୟ ବା କରୁଣାର ସଂଯୋଗରେ ସାଧକ ମହାସୁଖ ଲାଭ କରେ । ଜନ୍ମମୃତ୍ୟୁ ଭବ-ଅଭାବ, ସୁଖଦୁଃଖ ବିରହିତ ହୋଇ ନିର୍ବିକାର ଚିତ୍ତରେ ଜୀବନ-ଯାପନ କରେ । ସରହପାଦଙ୍କ ଭାଷାରେ—ପୁଣ୍ଣ କରୁଣା ଜଇ ଯୋଇଣ୍ଣ ସକ୍କଇ । ଶତ୍ତ ଭବେ ଣିଂ ଉ ଣିକ୍କାଣେ ଥାକ୍କଇ ।

## ଧମଣ ଚମଣ—

ସହଜସ୍ଥା ସିଦ୍ଧଗଣ ବୋଧିଚିତ୍ତର ଅସ୍ଥିରତା ଓ ନିମ୍ନଗତି ନିବାରଣ କରିବା ନିମିତ୍ତ ହଠଯୋଗ ବା କାୟାସାଧନା ଅନୁମୋଦନ କରନ୍ତି । ତେଣୁ ତନ୍ତ୍ରର ନାଡ଼ି ଓ ଚକ୍ରତତ୍ତ୍ୱ ଚର୍ଯାଗୀତିକାରେ ପରିଦୃଷ୍ଟ ହୁଏ । ହିନ୍ଦୁତନ୍ତ୍ରାନୁରୂପ ଏମାନେ ମଧ୍ୟ ଶରୀର ମଧ୍ୟରେ ୭୨୦୦୦ ନାଡ଼ି ଓ ତନ୍ମଧ୍ୟରେ ୩୨ଟି ପ୍ରଧାନ ବୋଲି ନିର୍ଦ୍ଦିଷ୍ଟ କରନ୍ତି । ଏଥିମଧ୍ୟରୁ ପୁଣି ୩ଟି ନାଡ଼ି ଶ୍ରେଷ୍ଠ । ଏହି ତିନୋଟି ହିନ୍ଦୁ ଓ ବୌଦ୍ଧତନ୍ତ୍ରରେ ଯଥାକ୍ରମେ ଇଡ଼ା, ପିଙ୍ଗଳା, ସୁଷୁମ୍ନା ଓ ଲଳନା, ରସନା, ଅବଧୂତୀ । ମେରୁଦଣ୍ଡର ବାମ ଭାଗରେ ଲଳନା, ଦକ୍ଷିଣରେ ରସନା ଓ ମଧ୍ୟରେ ଅବଧୂତୀର ଅବସ୍ଥିତି । ଲଳନା କଣ୍ଠଦେଶରୁ ବାହାରି ବାମପାର୍ଶ୍ୱରୁ ନାଭିମଣ୍ଡଳରେ ପ୍ରବେଶ କରିଛି ଏବଂ ରସନା ନାଭିମଣ୍ଡଳରୁ ବାହାରି ଦକ୍ଷିଣ ପାର୍ଶ୍ୱରୁ କଣ୍ଠ-ଦେଶରେ ପ୍ରବେଶ କରିଛି । ଶରୀରରେ ଏମାନେ ଚାରି ଚକ୍ରର ନିରୂପଣ କରିଛନ୍ତି । ନାଭି-ମଣ୍ଡଳରେ ନିର୍ମାଣଚକ୍ର, ହୃଦୟରେ ଧର୍ମଚକ୍ର, କଣ୍ଠରେ ସମ୍ଭୋଗଚକ୍ର ଓ ମସ୍ତିଷ୍କରେ ମହାସୁଖଚକ୍ର । ବୁଦ୍ଧଙ୍କର ଚାରି କାୟା ଏହି ଚକ୍ର ଚତୁଷ୍ଟୟ ମଧ୍ୟରେ ପ୍ରକାଶିତ । ପ୍ରତ୍ୟେକ ଚକ୍ରରେ ଏକ ଏକ ପଦ୍ମ ଓ ମହାସୁଖ ଚକ୍ରରେ ଉଷ୍ଣୀଷ କମଳ ବିକଶିତ । ଏତଦ୍‌ବ୍ୟତୀତ ଚାରି ଚକ୍ରରେ ଚାରିକ୍ଷଣ (ବିଚିତ୍ର, ବିପାକ; ବିମର୍ଦ୍ଦ, ବିଲକ୍ଷଣ), ଚାରିମୁଦ୍ରା (କର୍ମ, ଧର୍ମ, ମହା, ସମୟ) ଚାରି ଆନନ୍ଦ (ଆନନ୍ଦ, ପରମାନନ୍ଦ, ବିରମାନନ୍ଦ, ସହଜାନନ୍ଦ)' ଉଲ୍ଲେଖ କରାଯାଏ ।

ବୌଦ୍ଧ ତାନ୍ତ୍ରିକଗଣ ଷଡ଼ାଙ୍ଗ ଯୋଗସାଧକ । ପ୍ରତ୍ୟାହାର,ଧ୍ୟାନ,ପ୍ରାଣାୟାମ, ଧାରଣା ଅନୁସ୍ମୃତି ଓ ସମାଧି ଯୋଗର ଷଡ଼ାଙ୍ଗ । ପ୍ରତ୍ୟାହାରରେ ବାହ୍ୟ ରୂପାଦିରେ ଅପ୍ରବୃତ୍ତି, ଶୈଧାତୁକ ବୁଦ୍ଧବିମ୍ବ ଦର୍ଶନ; ଧ୍ୟାନରେ ସର୍ବଧର୍ମ-ଶୂନ୍ୟତାରେ ଚିତ୍ତ ପ୍ରବୃତ୍ତି; ପ୍ରାଣାୟାମରେ ଲଳନା ରସନା ମାର୍ଗ ନିରୋଧପୂର୍ବକ ମଧ୍ୟ ମାର୍ଗ ଅବଧୂତିରେ ପ୍ରାଣବାୟୁ ସଞ୍ଚାଳନ; ଧାରଣାରେ ବିନ୍ଦୁର ପ୍ରାଣ ପ୍ରବେଶ; ଅନୁସ୍ମୃତିରେ ଇଷ୍ଟଦେବଙ୍କ ପ୍ରତିବିମ୍ବାକାର ଦର୍ଶନ ଓ ସମାଧିରେ ପ୍ରଜ୍ଞା ଓ ଉପାୟର ଅଦ୍ୱୟସ୍ୱରୂପ ଦର୍ଶନ ଷଡ଼ାଙ୍ଗ ଯୋଗସାଧନାର ସିଦ୍ଧି । ଏହି ସାଧନା ଦ୍ୱାରା ନିର୍ମାଣ ଚକ୍ରରେ ଶୁକ୍ରରୂପେ ଅବସ୍ଥିତ ବୋଧିଚିତ୍ତକୁ ଊର୍ଦ୍ଧ୍ୱକୁ ଉତ୍ତୋଳିତ କରାଯାଏ । ପ୍ରାଣାୟାମ ଦ୍ୱାରା ପ୍ରାଣ (ଊର୍ଦ୍ଧ ବାୟୁ) ଓ ଅପାନ (ନିମ୍ନବାୟୁ) ନିୟନ୍ତ୍ରଣ କରିବା

ଦ୍ୱାରା ଚିତ୍ତ ବିଶୋଧନ ବା ଚିତ୍ତ ସ୍ଥିରକରାଯାଏ । ପ୍ରାଣବାୟୁକୁ ବାମରେ ଗ୍ରହଣ କରି ଦକ୍ଷିଣରେ ପରିତ୍ୟାଗ କରିବା ଓ ଦକ୍ଷିଣରେ ଗ୍ରହଣ କରି ବାମରେ ପରିତ୍ୟାଗ କରିବା ପ୍ରକ୍ରିୟା ଦ୍ୱାରା ନାଡ଼ି ପବିତ୍ର ହୁଏ । ତତ୍ପରେ ବାୟୁ ବାମ ବା ଦକ୍ଷିଣରେ ପରିତ୍ୟାଗ ନକରି ମଧ୍ୟନାଡ଼ିରେ ଉଦ୍ବେଳିତ କରିବା ପ୍ରାଣାୟାମ ଯୋଗ ଲକ୍ଷ୍ୟ । ସହଜିୟାମାନଙ୍କ ଏଥିପାଇଁ ମଧ୍ୟମପନ୍ଥୀ କୁହାଯାଏ । କୁଣ୍ଡଳିନୀ ଶକ୍ତିର ଅନୁରୂପ ନିର୍ମାଣଚକ୍ରରେ ଏମାନେ ଡୋମ୍ବୀ, ଚଣ୍ଡାଳୀ ବା ନୈରାତ୍ମା ଶକ୍ତିର ଆରୋପ କରନ୍ତି ।

ବୌଦ୍ଧତନ୍ତ୍ରରେ ନାଡ଼ୀତ୍ରୟ ବହୁବିଧ ନାମରେ ପରିଚିତ । ଯଥା:—

ବାମନାଡ଼ୀ—(ଇଡ଼ା) ପ୍ରଜ୍ଞା, ଲଲନା, ଚନ୍ଦ୍ର, ଶଶୀ, ଅପାନ, ଆଲି, ନାଦ, ଗଙ୍ଗା, ଶୁକ୍ର, ତମଃ, ଅଗ୍ରାହ, ପ୍ରକୃତି, ଗ୍ରାହକ, ସ୍ୱର, ଏ, ସ୍ଥୂଳ, ଅସ୍ଥିର, ଅପର, ଅଭେଦ, ଅଚିତ୍ତ, ଅବିଦ୍ୟା, ସମ୍ଭୋଗକାୟ, ଶୂନ୍ୟତା, ଧମଣ ।

ଦକ୍ଷିଣନାଡ଼ୀ—(ପିଙ୍ଗଳା) ଉପାୟ; ରସନା, ସୂର୍ଯ୍ୟ, ରବି, ପ୍ରାଣ, କାଳି, ବିନ୍ଦୁ, ଯମୁନା, ରକ୍ତ, ରଜଃ, ଗ୍ରାହ, ପୁରୁଷ, ଗ୍ରାହ୍ୟ ବ୍ୟଞ୍ଜନ, ବଂ, ଅଗ୍ନି, ସୂକ୍ଷ୍ମ, ସ୍ଥିର, ପର, ଭେଦ, ଚିତ୍ତ, ବିଦ୍ୟା, ନିର୍ମାଣକାୟ, କରୁଣା, ଚମଣ ।

ମଧ୍ୟନାଡ଼ୀ—(ସୁଷୁମ୍ନା) ଅବଧୂତୀ, ନୈରାତ୍ମା, ସହଜସୁନ୍ଦରୀ, ଯୋଗିନୀ, ବଧୂ, ଡୋମ୍ବୀ (ପରିଶୁଦ୍ଧାର୍ଥ), ଚଣ୍ଡାଳୀ (ଅପରିଶୁଦ୍ଧାର୍ଥ) ।

ଡ଼. ବାଗ୍‌ଚୀ ଧମଣ ଚମଣ ଶବ୍ଦ ଦୁଇଟିର ବ୍ୟୁତ୍ପତ୍ତି କହିଛନ୍ତି—ଧମଣ

> "from √dhama which indicates a forward or outward movement, whereas ଚମଣ may be derived from on √cam which means "to eat" i.e. taking in."(Studies in"the Tantras Page.65)

ଡ଼. ଶହୀଦୁଲ୍ଲାହ୍ ମଧ୍ୟ ଇଂରାଜୀ ଅନୁବାଦରେ ଧମଣ ଅର୍ଥରେ inhalation ଓ ଚମଣ ଅର୍ଥରେ exhalation ଲେଖିଛନ୍ତି (Budhist Mystic Songs) । ଏହା ଦ୍ୱାରା ପୂରକ ଓ ରେଚକ ଅର୍ଥ ମଧ୍ୟ ସୂଚିତ ହେଉଛି ।

ମୂଳ:—                    —ନ ୨୯ (ସହଜ-ତତ୍ତ୍ୱଚର୍ଯ୍ୟା)

ରାଗ-ପଟମଞ୍ଜରୀ

ଭାବ ନ ହୋଇ ଅଭାବ ନ ଜାଇ
ଅଇସ ସଂବୋହେ କୋ ପତିଆଇ ॥ ୧ ॥
ଲୁଇ ଭଣଇ ବଢ଼ ଦୁଲକ୍ଖ ବଣାଣା ।
ତିଅ ଧାଏ ବିଳସଇ ଉହ ଲାଗେ ଣା ॥ ଧ୍ରୁ ॥
ଜାହେର ବାଣ ଚହ୍ନ ରୁବ ନ ଜାଣୀ ।
ସୋକଇସେ ଆଗମ ବେଏଁ ବଖାଣୀ ॥ ୨ ॥ (ଧ୍ରୁ)
କାହେରେ କସ ଭଣି ମଇ ଦିବ ପିରିଚ୍ଛା ।
ଉଦକ ଚାନ୍ଦ ଜିମ ସାଚ ନ ମିଚ୍ଛା ॥ ୩ ॥ (ଧ୍ରୁ)
ଲୁଇ ଭଣଇ (ମଇ) * ଭାଇବ କସ ।
ଜା ଲଇ ଅଚ୍ଛମ ତାହେର ଉହ ଣ ଦିସ ॥ ॥ (ଧ୍ରୁ)

* ଟୀକା ଅନୁସାରେ ଏହା ଆକାଂକ୍ଷିତ ।

ପାଠାନ୍ତର:—

୨. (କ, ଘ) ଆଇସ ସବୋହେଁ ୩. (କ, ଗ, ଘ, ପୁ.ନ) ବଟ ୪. (ଘ) ନ ଠାଣା/ ନ ଜାଣା ୭. (ଚ) ଭଣି ଆଇ ୯. (ଖ,ଚ) ଭାବଇ; ବିକାଧା—୪. ତିଧାରୁଏ ୫. ବର୍ଣ୍ଣ ଚହ୍ନରୁଅ ୭. ଦିବପିଚ୍ଛା ୯. ମଇଭାବଇଁ ।

ଶ୍ରୀ ଅନାଥ ନାଥ ବସୁ ତିବତୀ ଅନୁବାଦ ଅନୁସାରେ (From Section Tshi of Rgyud Hgrel of Bstan Hgyur) ଏହି ଗୀତିକାଟିରେ ପାଠ ଓ ଅର୍ଥ ପ୍ରଦାନ କରିଛନ୍ତି । ସେ ଲେଖିଛନ୍ତି ଯେ ସେଥିରେ ଏହି ଚର୍ଯ୍ୟାଟିର ନାମ ଦିଆଯାଇଛି "ତତ୍ତ୍ୱସ୍ୱଭାବ ଦୃଷ୍ଟି ଗୀତିକା ଦୋହା ।" ମଙ୍ଗଳାଚରଣରେ ଲେଖାଅଛି— ଶ୍ରୀ ହେରୁକଙ୍କୁ ନମସ୍କାର, ତଥାଗତମାନଙ୍କୁ ପ୍ରଣାମ ପୂର୍ବକ ସମସ୍ତଙ୍କର ମଙ୍ଗଳ ପାଇଁ ପ୍ରକୃତ ସତ୍ୟ, ଦର୍ଶନ ଓ ଆଚରଣ ସ୍ୱରୂପ ଉପର ପ୍ରକାଶିତ ହୁଏ, ତାହା କହୁଛି ଇତ୍ୟାଦି । ଏଥିରେ ଦେଖାଯାଏ ଯେ ଧ୍ରୁବପଦଟି (୩ୟ-୪ର୍ଥ ଧାଡ଼ି) ପ୍ରତ୍ୟେକ ପଦ ଶେଷରେ ପୁନରାବୃତ୍ତି ହୋଇଛି । ଏଥିରେ ନିମ୍ନଲିଖିତ ରୂପେ ପାଠ ବ୍ୟତିକ୍ରମ ଦେଖାଯାଏ—୨. ସ୍ୱଭାବ (ସବୋହେ ସ୍ଥଳେ) ୩. ବଢ଼ ନାହିଁ । ଶେଷ ପଦଟି ନାହିଁ ।

## ଆଧୁନିକ ରୂପାନ୍ତରଃ—

ଭାବ ନ ହୋଇ ଅଭାବ ନ ଯାଇ
ଏସନ ସଂବୋଧେ କଏ ପ୍ରତ୍ୟାଇ । (ପରତେ କରଇ)
ଲୁଇ ଭଣଇ ବଢ଼ ଦୁର୍ଲକ୍ଷ୍ୟ ବିଜ୍ଞାନ
ତ୍ରିଧାତୁରେ ବିଳସଇ ଚିହ୍ନି ଲଗେ ନା (ନ ହୁଏ ଲଗ୍ନ)
ଯାହାର ବର୍ଣ୍ଣ ଚିହ୍ନ ରୂପ ନ ଜାଣି
ତା କେସନେ ଆଗମ ବେଦେ ବଖାଣି ?
କାହାରେ କିସ ଭଣି ମୁଇ ଦେବି ପରୀକ୍ଷା ?
ଉଦକ ଚନ୍ଦ୍ର ଯେମିତ ସତ୍ୟ ନା ମିଥ୍ୟା !
ଲୁଇ ଭଣଇ ମୁଁ ଭାବିବି କିସ ?
ଯାହା ନେଇଅଛୁ ମୁଁ ତାହାର ଉହନା ଦିଶ ?

## ସରଳାର୍ଥ :—

ଲୁଇପାଦ ଏହି ଗୀତିକାରେ ସହଜ, ବୋଧିଚିତ୍ତ, ଶୂନ୍ୟସତ୍ତ୍ୱ ମହାସୁଖ ଆଦି ସହଜିଆ ସାଧନାର ଚରମତତ୍ତ୍ୱର ବିଚିତ୍ର ସ୍ୱରୂପ ସମ୍ପର୍କରେ ସୂଚନା ଦେଇ କହୁଛନ୍ତି ଯେ ଏହାର ସ୍ୱରୂପ ଅସ୍ତ୍ୟାତ୍ମକ ବା ନାସ୍ତ୍ୟାତ୍ମକ କୌଣସି ଭାବରେ ବ୍ୟାଖ୍ୟା କରିହେବ ନାହିଁ । ଜଗତର ପ୍ରତ୍ୟେକ ବିଷୟ ବା ବସ୍ତୁରେ ସହଜସ୍ୱଭାବ ନିହିତ । କିନ୍ତୁ କୌଣସି ଏକ ପିଣ୍ଡ ଗ୍ରହଣପୂର୍ବକ ତାକୁ ଅଣୁ-ପରମାଣୁ ଭେଦରେ ବ୍ୟବଚ୍ଛେଦ କଲେ ମଧ୍ୟ ସହଜଭାବ ବା ସତ୍ତାର ଉପଲବ୍ଧି ହୁଏ ନାହିଁ । ଅନ୍ୟ ପକ୍ଷରେ ସହଜ ସତ୍ତାର ଅଭାବରେ କୌଣସି ବସ୍ତୁ ଥାଇ ନ ପାରେ । "ସହଜଂ ଜଗତ ସର୍ବଂ ସହଜଂ ସ୍ୱରୂପଂ ଉଚ୍ୟତେ"—ସମଗ୍ର ଜଗତ ସହଜ ଓ ସହଜ ହିଁ ସକଳର ସ୍ୱରୂପ । କିନ୍ତୁ "ଦେହସ୍ଥୋଽପି ନ ଦେହଜଃ"—ଦେହରେ ଥାଇ ମଧ୍ୟ ଏହା ଦୈହିକ ନୁହେ । (ହେବଜ୍ରତନ୍ତ୍ର) । ଏଥିରେ ଭବ ଓ ନିର୍ବାଣ ଅସ୍ତି ଓ ନାସ୍ତି ଉଭୟ ସନ୍ନିବେଶିତ । ସହଜ ସମ୍ପର୍କରେ ଅନ୍ୟାନ୍ୟ ସିଦ୍ଧାଚାର୍ଯ୍ୟଗଣ ମଧ୍ୟ ଅନୁରୂପ ମନ୍ତବ୍ୟ ପ୍ରଦାନ କରିଛନ୍ତି । ତିଲୋପା କହନ୍ତି—ସହଜେ ଭାବାଭାବ ଣ ପୁଚ୍ଛଇ ଓ ସରହପାଙ୍କ ମତରେ—ସହଜ ସହାବ ନ ଭାବାଭାବ ।

ଭୁସୁକ ୩୪ ସଂଖ୍ୟକ ଗୀତିକାରେ ସହଜର ସ୍ୱରୂପ ବର୍ଣ୍ଣନା କରି କହୁଛନ୍ତି ଯେ ଜାଇ ନ ଆବଇରେ ବା ତହିଁ ଭାବାଭାବ (ସହଜ ଅବସ୍ଥାରେ ଆଗମନ ବା ପ୍ରତ୍ୟାଗମନ ନାହିଁ, ଅସ୍ତିତ୍ୱ ବା ନାସ୍ତିତ୍ୱ ନାହିଁ) । ସୁତରାଂ ଏତାଦୃଶ ବିଚିତ୍ର ତତ୍ତ୍ୱକୁ କିଏ ପ୍ରତ୍ୟୟ କରିପାରିବ ? କିଏ ବା ତର୍କ ଓ ନ୍ୟାୟ ସାହାଯ୍ୟରେ ଏହି ଜ୍ଞାନର ଉପଲବ୍ଧି କରିପାରିବ ?

ଲୁଇ ତେଣୁ କହନ୍ତି ଯେ ସହଜତତ୍ତ୍ୱ ବଡ ଦୁର୍ଲକ୍ଷ୍ୟ ତତ୍ତ୍ୱ ଏହା ଇନ୍ଦ୍ରିୟାତୀତ ହେତୁ ଏହାର ସ୍ୱରୂପ ନିର୍ଣ୍ଣୟ ଏକ ଦୁଃସାଧ କାର୍ଯ୍ୟ ।

ଏହା କାୟ ବାକ୍ ଚିତ୍ତ ରୂପକ ତିନିଟି ଧାତୁରେ ବିଳାସ କରେ ବା ପ୍ରତ୍ୟେକ ପିଣ୍ଡରେ ପ୍ରକାଶିତ; ଅଥଚ ଏହା ସେହି ପିଣ୍ଡରେ ଲିପ୍ତ ନୁହେଁ । ଦେହଜ ହୋଇ ମଧ୍ୟ ଏହା ଦେହାତୀତ । ସରହପାଦଙ୍କ ଉକ୍ତି—କାଅ ବାଅ ମଣ୍ ଯାବଣ ଭିଜ୍ଜଇ । ସହଜେ ସହବେ ତାବଣ ରଜ୍ଜଇ (ଦୋହା) ଓ କାହ୍ନୁପାଦଙ୍କ ଉକ୍ତି—ଭଣ କଇସେଁ ସହଜ ବୋଲି ବା ଜାଅ । କାଅ ବାକ୍ ଚିଅ ଜସୁ ଣ ସମାଅ (ଚର୍ଯ୍ୟା-୪୦) ଏଠାରେ ସ୍ମରଣୀୟ । ପୁନଶ୍ଚ ବେଦ ଆଗମ ବା ଶାସ୍ତ୍ରପୁରାଣର ବିସ୍ତୃତ ବ୍ୟାଖ୍ୟାନ ମଧ୍ୟରେ ଏହା ଅବର୍ଣ୍ଣନୀୟ । ଯାହାର ବର୍ଣ୍ଣ ନାହିଁ, ଚିହ୍ନ ନାହିଁ, ରୂପ, ନାହିଁ, ତାର ବର୍ଣ୍ଣନା ବା କିପରି କରାଯାଇ ପାରିବ ? ହେବଜ୍ର-ତନ୍ତ୍ରରେ କୁହାଯାଇଛି ଯେ—ନାନ୍ୟେନ କଥ୍ୟତେ ସହଜଂ ନ କସ୍ମିନ୍ ଅଭିଲପ୍ୟତେ ଓ ସରହପା କହନ୍ତି ଯେ—ଝାଣ ରହିଅକ କାଅଇ ଝାଣେ । ଜୋ ଅବାଚ ତହିଁ କାହିଁ ବଖାଣେଁ ।। (ଦୋହା) ।। ତାଡକପାଦ ୩୭ ସଂଖ୍ୟକ ଚର୍ଯ୍ୟାରେ ସହଜାନୁଭବ ବିଷୟରେ କହିଛନ୍ତି – ବାଣ୍ଡ କୁରୁଣ୍ଡ ସନ୍ତାରେ ଜାଣୀ ବାକ ପଥାତୀତ କାହିଁ ବଖାଣୀ ଅର୍ଥାତ୍ ମନୁଷ୍ୟର ଗୁହ୍ୟାଙ୍ଗ ପର୍ଯ୍ୟନ୍ତ ସମସ୍ତ ବିଶେଷରେ ଯଥା ଜଳରେ ପଶି ପାରହେବା ସମୟରେ ଜଣା ପଡ଼ିଯାଏ କିନ୍ତୁ ଗୁହ୍ୟାତିଗୁହ୍ୟ ସହଜ ଅଜ୍ଞେୟ; ତେଣୁ ଅନିର୍ବଚନୀୟ । ସରହଙ୍କ ଦୋହାରେ ସେ ଆଉ ଏକ ସୁନ୍ଦର ଦୃଷ୍ଟାନ୍ତ ଦେଇ ଲେଖିଛନ୍ତି ଯେ ଅବିବାହିତା କନ୍ୟାକୁ ଯୌନସୁଖ ବିଷୟରେ ଯେପରି ବୁଝାଇ ହେବନାହିଁ, ସହଜର ସ୍ୱରୂପ ସେପରି ସାଧାରଣ ଜନ ବୁଝି-ପାରିବେ ନାହିଁ, (ସୋ ପରମେସରୁ କାସୁ କହିଜ୍ଜଇ—ସୁରଅ କୁମାରୀ ଜିମ ପଡ଼ିଜ୍ଜଇ) ।।

ଏପରି ଅବସ୍ଥାରେ ମୋତେ ସେହି ତତ୍ତ୍ୱ ବ୍ୟାଖ୍ୟା କରିବାକୁ କହିଲେ ବା ସେ ସମ୍ପର୍କରେ ପ୍ରଶ୍ନ କଲେ, ମୁଁ କି ଉତ୍ତର ଦେଇ ପ୍ରଶ୍ନକର୍ତ୍ତାର ମନରେ ପ୍ରତ୍ୟୟ ଆଣିପାରିବ ? (ତୁଳନୀୟ – ଜଉ ତଁ ବାଅହି ଘୁରୁ କହ ଣଉ ତଁ ବୁଜ୍‌ଝଇ ଶୀଶ—ସହଜ ବଟ୍‌ଠୋ ଅମିଅ ରସ କାସୁ କହିଜ୍ଜଇ କୀସ—ସରହ) ଜଳରେ ପ୍ରତିବିମ୍ବିତ ଚନ୍ଦ୍ର ଯେପରି ସତ୍ୟ ନୁହେଁ କି ମିଥ୍ୟା ନୁହେଁ, ସହଜର ସ୍ୱରୂପ ମଧ୍ୟ ସେପରି ପ୍ରତିଭାତ । ବୁଝିଲେ ଅଛି ନ ବୁଝିଲେ ନାହିଁ —ଏହା ହିଁ ତାର ମର୍ମ । ତେଣୁକରି କେଉଁପରି ଭାବନା କରି ମୁଁ ଏହାକୁ ବୁଝାଇବି ? ଏହା ସ୍ୱସଂବେଦ୍ୟ ତତ୍ତ୍ୱ । ଜ୍ଞେୟ, ଜ୍ଞାତା, ଜ୍ଞାନ ବା ଭାବ୍ୟ-ଭାବକ-ଭାବନା—ଏହି ତ୍ରିକୋଟି ମଧ୍ୟରେ ଏହାର ଆଲୋଚନା ଅସମ୍ଭବ । ମୁଁ ନିଜେ ତ ସହଜିୟା ମାର୍ଗରେ ରହି ସହଜତତ୍ତ୍ୱକୁ ମୂଳକରି ଜୀବନ ଧାରଣ କରିଥିଲେ ବି ଅଦ୍ୟାବଧି ତାର ସନ୍ଧାନ ପାଇ ନାହିଁ ।

## (ଖ) ବିଶେଷ ଅର୍ଥ—

### ସହଜ—

ଆକ୍ଷରିକ ଭାବେ ସହଜର ଅର୍ଥ ଯାହା ସହଜାତ – ସହ-ଜାୟତେ ଇତି ସହଜଃ । ତେଣୁ ସହଜତତ୍ତ୍ୱ ହେଉଛି ଅବିକୃତ ଆତ୍ମତତ୍ତ୍ୱ । ଯେଉଁ ସାଧକଗଣ ଧର୍ମସାଧନାର ସମସ୍ତ

ପାରମ୍ପରିକ ଜଟିଳ ବିଧିବ୍ୟବସ୍ଥାକୁ ଅସ୍ୱୀକାର କରି ସହଜ ପଦ୍ଧତିରେ ଏହି ତତ୍ତ୍ୱର ଉପଲବ୍ଧି ପାଇଁ ସାଧନା କରନ୍ତି, ସେମାନଙ୍କୁ ସହଜିଆ ସାଧକ କୁହାଯାଏ ଓ ସେମାନଙ୍କର ପଦ୍ଧତିକୁ ସହଜଯାନ କୁହାଯାଏ । ବଜ୍ରଯାନରୁ ସହଜଯାନ ବିକଶିତ । କେତେକ ତତ୍ତ୍ୱଗତ ପାର୍ଥକ୍ୟ ହେତୁ ବିଶେଷତଃ ବିସ୍ତାରିତ ସାଧନା ପଦ୍ଧତି ପରିବର୍ତ୍ତେ ସହଜମାର୍ଗ ଅବଲମ୍ବନ ହେତୁ ଏହା ଏକ ସ୍ୱତନ୍ତ୍ର ଧର୍ମସଂସ୍ଥା ରୂପେ ଗୃହୀତ (ଦ୍ର. ପ୍ରଥମ ଭାଗ—୮)

ସହଜ, ମହାସୁଖ, ବୋଧିଚିତ୍ତ, ପ୍ରଜ୍ଞୋପାୟ, ମିଳନ ଇତ୍ୟାଦି ସଂଜ୍ଞାଗତ ପାର୍ଥକ୍ୟ ସତ୍ତ୍ୱେ ଭାବଦୃଷ୍ଟିରୁ ସମାନ । ବୌଦ୍ଧମାନଙ୍କର ଚରମ ଲକ୍ଷ୍ୟ ନିର୍ବାଣ ଠାରୁ ସହଜକୁ ଉଚ୍ଚତର ସ୍ଥାନ ଦିଆଯାଏ । ସିଦ୍ଧାଚାର୍ଯ୍ୟଗଣ ନାନାଭାବରେ ସହଜ ତତ୍ତ୍ୱର ପ୍ରକାଶ କରିଛନ୍ତି । ସରହ ଦୋହାରେ ଏହିପରି ତାର ବର୍ଣ୍ଣନା ପ୍ରଦତ୍ତ ହୋଇଛି—

ନ ଶୁଣଇ ଶୋଣାଉ ଘାଣଇ ନ ଆଣେଁ ॥
ପବନ ବହନ୍ତେ ଣଉ ସୋ ହଲ୍ଲଇ
ଜଳନ ଜଳନ୍ତେ ଣଉ ସୋ ଉଜ୍‌ଝଇ ॥
ଘଣ ବରିସନ୍ତେ ଣଉ ସୋ ତିମ୍ମଇ
ଣଉ ବଢ୍ଢଇ ଣଉ ଖଅହି ପଇ ସସ୍‌ଇ ॥
ଣଉ ବଟ୍‌ଟଇ ଣ ତଣ୍ଣନ୍ତେ ଣ ବଢଇ
ସମରସ ସହଜାନନ୍ଦ ଜାଣି ଜନ୍‌ଇ ॥

———

## ୨. ଶବରୀପା

ଶବରୀପା ତେଙ୍ଗୁର ଗ୍ରନ୍ଥତାଲିକାରେ ଶବରପା, ଶବରୀଶ୍ୱର, ଶବରେଶ୍ୱର, ମହାଶବର ଇତ୍ୟାଦି ନାମରେ ପରିଚିତ ଓ ସିଦ୍ଧ, ଆଚାର୍ଯ୍ୟ, ମହାଚାର୍ଯ୍ୟ, ମହାସିଦ୍ଧାଚାର୍ଯ୍ୟ ଭାବରେ ବର୍ଣ୍ଣିତ । ସେ ପୁଣି ନବସରହ ଭାବରେ ଲାମା ତାରାନାଥଙ୍କ ବିବରଣୀରେ ଆଖ୍ୟାତ । ସିଦ୍ଧ ପରମ୍ପରାରେ ତାଙ୍କର ସ୍ଥାନ ଏହିପରି—ସରହ > ନାଗାର୍ଜୁନ > ଶବରୀ > ଲୁଇ ଇତ୍ୟାଦି । ପାଗ୍-ସମ୍-ଜୋନ୍-ଜାଙ୍ଗରେ ସେ ବଙ୍ଗାଳ ବା ଭଙ୍ଗଳ ଦେଶର ପାର୍ବତ୍ୟ ଅଞ୍ଚଳର ଶିକାରୀ ଜାତୀୟ ଲୋକ ବୋଲି ବର୍ଣ୍ଣିତ; କିନ୍ତୁ ତାରାନାଥ କହନ୍ତି ଯେ ସେ ପୂର୍ବ ଭାରତର କୌଣସି ନର୍ତ୍ତକଜାତିର ଲୋକ । ନାଗାର୍ଜୁନଙ୍କଠାରୁ ଦୀକ୍ଷାଗ୍ରହଣ କରି

ସେ ଶ୍ରୀପର୍ବତକୁ (ଆନ୍ଧ୍ର) ସାଧନା କରିବା ନିମିତ୍ତ ଯାଇଥିଲେ । ତାଙ୍କର ଦୁଇ ମୁଦ୍ରା ଥିଲେ ଲୋକୀ ଓ ଗୁଣି; ଏ ଦୁହେଁ ଭଗ୍ନୀ, ଏହାଙ୍କର ଚର୍ଯା। ନାମ ଥିଲା ଡାକିନୀ, ପଦ୍ମାବତୀ ଓ ଜ୍ଞାନବତୀ । ସଂକେତ ମିଳେ ଯେ ଏ ଦୁହେଁ ଶବରୀପାଙ୍କ ସହୋଦରା ଭଗ୍ନୀ । ତେଣୁ ଏ ଦୁହିଁଙ୍କୁ ମହାମୁଦ୍ରା ରୂପେ ଗ୍ରହଣ କରିବା ଦ୍ୱାରା ବାହ୍ୟଦୃଷ୍ଟିରେ ସେ ପାପମୟ ଜୀବନଯାପନ କରି ନିନ୍ଦିତ ହୋଇଥିଲେ । (ସିଦ୍ଧସାହିତ୍ୟ, ପୃ. ୫୦)

ପଣ୍ଡିତ ରାହୁଲ ସାଂକୃତ୍ୟାୟନଙ୍କ ମତରେ ତାଙ୍କର ଜାତି କ୍ଷତ୍ରିୟ । ଦେଶ— ବିକ୍ରମଶୀଳ (ପୁ.ନି.ପୃ. ୧୪୮) କିମ୍ବା ମଗଧ (ଗଙ୍ଗା-ପୂର୍ବତଟ୍ଟାଙ୍କ) । ସେ ଶବରମାନଙ୍କପରି ଶ୍ରୀପର୍ବତରେ ଜୀବନଯାପନ କରୁଥିବାରୁ ପରେ ଶବରୀପା ନାମରେ ଆଖ୍ୟାତ ହୋଇଥିଲେ । ତାଙ୍କର ଶିଷ୍ୟ ଲୋଗୀପା ଓ ସର୍ବଭକ୍ଷପା ।

ଡ. ବିନୟତୋଷ ଭଟ୍ଟାଚାର୍ଯ୍ୟ ଶବରୀପାଙ୍କର ସମୟ ନିର୍ଣ୍ଣୟ କରିଛନ୍ତି ଖ୍ରୀ.୬୫୭ । ପଣ୍ଡିତ ସାଂକୃତ୍ୟାୟନଙ୍କ ମତରେ ସେ ରାଜା ଧର୍ମପାଳଙ୍କ (୭୭୧—୮୦୯) ସମସାମୟିକ । ତାଙ୍କର ଗୁରୁ ନାଗାର୍ଜୁନ ଶୂନ୍ୟବାଦୀ ଆଚାର୍ଯ୍ୟ ନାଗାର୍ଜୁନ ନୁହନ୍ତି । ରାଜା ଧର୍ମପାଳ ବାରେନ୍ଦ୍ର ଅଞ୍ଚଳରେ ଅବସ୍ଥାନ କରୁଥିବା ସମୟରେ ସେ ସେଠାକୁ ଯାଇ ତାଙ୍କର କରଣ ଲୁଇପାଙ୍କୁ ଦୀକ୍ଷାଦାନ କରିଥିଲେ । ବୌଦ୍ଧିଗବର ସମ୍ପ୍ରଦାୟର ଅନ୍ୟତମ ଆଚାର୍ଯ୍ୟ ଅଦ୍ୱୟବଜ୍ରଙ୍କୁ ଶବରୀପା ଦୀକ୍ଷା ଦେଇଥିବାର ଉଲ୍ଲେଖ ମିଳୁଥିବାରୁ ପଣ୍ଡିତ ସାଂକୃତ୍ୟାୟନ ମନେ କରନ୍ତି ଯେ ଦଶମ ଶତାବ୍ଦୀରେ ଅନ୍ୟ ଏକ ଶବରୀପାଙ୍କର ଆବିର୍ଭାବ ହୋଇଥିଲା । ମୈତ୍ରୀପା ଓ ଅବଧୂତପା ତାହାଙ୍କର ଶିଷ୍ୟ । ଏହି ପ୍ରସଙ୍ଗରେ ଡ. ଧର୍ମବୀର ଭାରତୀ ମନ୍ତବ୍ୟ ଦିଅନ୍ତି ଯେ ପ୍ରକୃତରେ ଅଦ୍ୱୟ ବଜ୍ର ଶବରୀପାଙ୍କୁ କେବଳ କାଳ୍ପନିକ ଐନ୍ଦ୍ରଜାଲିକ ରୂପରେ ଦେଖିଥିଲେ, ସେ ତାଙ୍କର ସମସାମୟିକ ନ ଥିଲେ । (ସିଦ୍ଧସାହିତ୍ୟ—ପୃ. ୫୦)

ଶବରୀପା ଇନ୍ଦ୍ରଭୂତି ଓ ତାଙ୍କ କନ୍ୟାଙ୍କ ଦ୍ୱାରା ପ୍ରବର୍ତ୍ତିତ ବଜ୍ରଯୋଗିନୀ ସାଧନା ସମ୍ପ୍ରଦାୟର ଅନୁଗାମୀ ଥିଲେ । ସାଧନମାଲାରୁ ଜଣାଯାଏ—ସେ ରକ୍ତବର୍ଣ୍ଣର ଦେବୀପୂଜା ଓ ବଜ୍ରଯୋଗିନୀ ପୂଜାର ପ୍ରବର୍ତ୍ତକ। (ଏବଂ ଇନ୍ଦ୍ରାବର୍ତ୍ତେନ ସିଦ୍ଧ ଶବର-ପାଦାଦ୍ୟ ମତ ବଜ୍ରଯୋଗିନ୍ୟାରାଧନବିଧିଃ—ସାଧନମାଳା, ୨ୟ, ପୃ. ୪୫୭) ସେ ନ. ୧୮୫-କୁରୁକୁଲ୍ଲା ସାଧନାର ରଚୟିତା । ଏଥିରେ ତାଙ୍କ ଭଣିତାଯୁକ୍ତ ଏକ ଦୋହା ଅଛି,—ଗୁରୁ ବଅଣେ ଦିଢ଼ କରି ମାଣହୁ । ଭଣନ୍ତି ସବରପା ବସଢ଼ା କରେ ହ୍ରାଣ ହୁ ॥

ତେଙ୍ଗୁରରେ ଶବରୀପାଙ୍କ ଅନୂଦିତ ଗ୍ରନ୍ଥସଂଖ୍ୟା ୨୬ । ସେଥିରୁ ଦଶଖଣ୍ଡି ବଜ୍ରଯୋଗିନୀ ଗ୍ରନ୍ଥ ସମେତ ଷୋଳଖଣ୍ଡି ତାଙ୍କର ମୌଳିକ ରଚନା ବୋଲି ଜଣାଯାଏ । ତାଙ୍କର କେତେ ଖଣ୍ଡ ପ୍ରଧାନ ରଚନା ହେଲା—ବଜ୍ରଯୋଗିନୀ ସାଧନ, ମହା-ମୁଦ୍ରା

ବଜ୍ରଗୀତ, ଶୂନ୍ୟତା ଦୃଷ୍ଟି, ଚତ୍ୱସୁଦ୍ଧ୍ୟ ଗମ୍ଭୀରାର୍ଥ ଗୀତ, ଷଡଙ୍ଗଯୋଗ, ସହଜ ଶଂକର ସ୍ୱାଧିଷ୍ଠାନ, ସହଜୋପଦେଶ ସ୍ୱାଧିଷ୍ଠାନ । ଚର୍ଯାଗୀତିକାରେ ତାଙ୍କର ଦୁଇଟି ଗୀତିକା ସଂକଳିତ ହୋଇଛି-ନ. ୨୮ ଓ ୫୦ ।

ଡ. ସୁକୁମାର ସେନଙ୍କ ମତରେ ଚର୍ଯାଗୀତିକାର ଲେଖକ ଶବରୀପା ନୁହନ୍ତି । ଏଥିରେ "ଶବର" ନାମଟିକୁ ଭଣିତା ରୂପେ ଅନୁମାନ କରିବା ପକ୍ଷରେ କୌଣସି ଯୁକ୍ତି ନାହିଁ । ଏପରି କି କୁରୁକୁଲ୍ଲା ସାଧନାରେ ମିଳୁଥିବା ଦୋହାଟି ମଧ୍ୟ ତାଙ୍କର କୌଣସି ଭକ୍ତ ବା ପରବର୍ତ୍ତୀ ସାମ୍ପ୍ରଦାୟିକ ଶିଷ୍ୟର ରଚନା । କିନ୍ତୁ ଏ କଥା ନିଶ୍ଚିତ ଯେ ଶବର ନାମରେ ଏକ ବା ଅଧିକ ସିଦ୍ଧାଚାର୍ଯ୍ୟ ଥିଲେ । (ଚ. ଗୀ. ପ. ପୃ. ୧୭)

**ପରିଶିଷ୍ଟ** :—ଶବରୀପାଙ୍କର ଉତ୍କଳୀୟତା ତାଙ୍କର ଦୁଇଟି ଗୀତିକାରେ ବର୍ଣ୍ଣିତ ଶବର-ଜୀବନ-ଚିତ୍ରଣକୁ ଭିତ୍ତିକରି ପ୍ରମାଣ କରିବା ଯୁକ୍ତିଯୁକ୍ତ ନୁହେଁ । ଯେହେତୁ ଓଡ଼ିଶା ଏକମାତ୍ର ଶବର ଅଧ୍ୟୁଷିତ ଅଞ୍ଚଳ ନୁହେଁ; କିନ୍ତୁ ତାଙ୍କର ବ୍ୟବହୃତ ଶବ୍ଦାବଳୀ ମଧ୍ୟରେ ଉତ୍କଳୀୟତା ସ୍ପଷ୍ଟ ପ୍ରତିଭାତ ହୁଏ । "ଦାଣ୍ଡ, ତଇଲ, ଜହ୍ନା, ହଣ୍ଡିଇ, ଲେଉ଼ବ, କାନ୍ଦଇ" ଇତ୍ୟାଦି ଦୃଷ୍ଟାନ୍ତସ୍ୱରୂପ ଗ୍ରହଣୀୟ । ଶ୍ରୀପର୍ବତ ଯାହା ବ୍ୟପଦେଶରେ ଏବଂ ତାନ୍ତ୍ରିକ ସାଧନ ପୀଠ ଓଡ଼ିୟାନର ଆକର୍ଷଣରେ ଓଡ଼ିଶା ଅଞ୍ଚଳ ସହିତ ତାଙ୍କର ଯୋଗାଯୋଗ ଘଟିଥିବା ସୁନିଶ୍ଚିତ । ପୁନଶ୍ଚ ଶବରୀପାଦ ଗୋଟିଏ କୁରୁକୁଲ୍ଲା ସାଧନାର ରଚୟିତା । ଏହି କୁରୁକୁଲ୍ଲା ଦେବୀମୂର୍ତ୍ତି କେବଳ ଓଡ଼ିଶାରୁ ଆବିଷ୍କୃତ ହୋଇଛି । (Budhism in Orissa-P,153, 164 ଦ୍ରଷ୍ଟବ୍ୟ) । ତେଣୁ ଓଡିଶା ତାଙ୍କର ସାଧନପୀଠ ଥିଲା ବୋଲି ଅନୁମାନ କରାଯାଇପାରେ ।

ନ. ୨୮ (ଶବର ଶବରୀ—ପ୍ରେମଚର୍ଯ୍ୟା)
ରାଗ—ବଲାଡ୍ଡି

## ମୂଳ :—

ଉଁଚ ଉଁଚ ପାବତ ତହିଁ ବସଇ ସବରୀ ବାଳୀ ।
ମୋରଙ୍ଗୀ ପୀଛ ପରହିଣ ସବରୀ ଗିବତ ଗୁଞ୍ଜରୀ ମାଳୀ ॥ ୧ ॥ ଧ୍ରୁ

ଉମତ ସବରେ ପାଗଳ ସବରେ ମାକର ଗୁଲୀ ଗୁହାଡ଼ ତୋହୋରି ।
ଣିଅ ଘରଣୀ ନାମେ ସହଜ ସୁନ୍ଦାରୀ (ଧ୍ରୁ)
ନାନା ତରୁବର ମୌଲିଲରେ ଗଅଣତ ଲଗେଲୀ ଡ଼ାଳୀ ।
ଏକେଲୀ ସବରୀ ଏ ବଣ ହିଣ୍ଡଇ କର୍ଣ୍ଣକୁଣ୍ଡଳ ବଜ୍ରଧାରୀ ॥ ୨ ॥ (ଧ୍ରୁ)

ତିଅଧାଉ ଖାଟ ପାଡ଼ିଲ ସବରେ ମହାସୁହେ ସେଜି ଛାଇଲୀ ।
ସବରେ ଭୁଜଙ୍ଗ ନୈରାମଣୀ ଦାରୀପେମ୍ହ ରାତି ପୋହାଇଲୀ ॥ ୩॥ (ଧ୍ରୁ

ହିଅ ତାଁବୋଲା ମହାସୁହେ କାପୂର ଖାଇ ।
ସୁନ ନୈରାମଣି କଣ୍ଠେ ଲଇଆ ମହାସୁହେ ରାତି ପୋହାଇ ॥ ୪ ॥ (ଧ୍ରୁ)

ଗୁରୁବାକ୍ ପୁଞ୍ଛିଆ ବିନ୍ଧ ଣିଅମଣ ବାଣେ
ଏକେ ଶର ସନ୍ଧାନେ ବିନ୍ଧହ ବିନ୍ଧହ ପରମଣିବାଣେ ॥ ୫ ॥ (ଧ୍ରୁ)

ଉମତ ସବରା ଗରୁଆ ରୋଷେ
ଗିରିବର ସିହର ସନ୍ଧି ପଇସନ୍ତେ ସବରୋ ଲୋଡ଼ିବ କଇସେ ॥ ୬ ॥

## ପାଠାନ୍ତର :—

୩ । (କ, ଘ) ତୋହୋରି, (ଖ) ଗୁଳୀ ଗୁହାଏ ୪ । (ଖ) ତୋହୋର ଣିଅ ଘରଣୀ ୬. (ଚ) ପଡ଼ିଲ ୮. (ଖ) ପେମ୍ଭ ୯. (ଙ) ଥିଏ ୧୧. (ଚ) ପୁଛିଆ, (ଖ) ଧନୁଆ, (ଗ) ପୁଚ୍ଛୁଆ; (ଖ, ଘ) ମର୍ଣେ ବାଣେଁ ୧୩. (ଘ) ଗରୁ ଆସ ରୋଷେ ।

ପୁ. ନ.—ମାକର ଘୁଲା ଗୁହାଡ଼ା ।
ତୋ ହୋଁଉଣିଅ ଘରଣୀ ନାମେ ସହଜ ସୁନ୍ଦାରୀ ॥

ହକାଧା—୬. ପରହୁଣ ୭. ସେକ ଗୁଇଲା ୮. ପେକ୍‌ଖ ୯. ଚଅ ତାଁବୋଲା ୧୧. ଗୁରୁବାକ୍ ଫଞ୍ଜଆ; ଦୋହାକୋଷ (ପୃ. ୨୪) ଗୀତକାଟି ସରହ ବରଚତ ବୋଲ ହଙ୍କୃତ ।

## ଆଧୁନିକ ରୂପାନ୍ତର :—

ଉଞ୍ଚା ଉଞ୍ଚା ପବତ ତହିଁ ବସଇ ଶବରୀ ବାଳୀ
ମୟୂରପୁଚ୍ଛ ପରହୁଣ ଶବରୀ ଗ୍ରୀବାରେ ଗୁଞ୍ଜର ମାଳୀ ॥
ଉନ୍ମତ୍ତ ଶବର ପାଗଳ ଶବର ନ କର ଗୋଳ
ତୋହୋରେ ଗୁହାର ନଜ ଘରଣୀ ନାମେ ସହଜ-ସୁନ୍ଦରୀ ॥
ନାନା ତରୁବର ମୌଳିଲ ରେ ଗଗନରେ ଲଗିଲ ଡାଳୀ
ଏକଲ ଶବରୀ ଏ ବଣ ହଣ୍ଡଇ କର୍ଣ୍ଣକୁଣ୍ଡଳ ବଜ୍ରଧାରୀ ॥
ତନଧାତୁ ଖଟ ପଡ଼ିଲ, ଶବର ମହାସୁଖେ ଶେଯ ବଛାଇଲ
ଶବର ଭୁଜଙ୍ଗ ନୈରାମଣି ଦାରୀ ପ୍ରେମେ ରାତ୍ର ପୁହାଇଲ ॥
ହୃଆ ତାମ୍ବୁଲ ମହାସୁଖେ କପୂର ଖାଇ (ଲେ)
ଶୂନ୍ୟ ନୈରାମଣି କଣ୍ଠେ ନେଇଣ ମହାସୁଖେ ରାତ୍ର ପୁହାଇ (ଲେ) ॥
ଗୁରୁ ବାକ୍ୟ (ସର) ପୁଙ୍ଖ କର ନଜ ମନ ବାଣେ
ଏକ ଶର ସନ୍ଧାନେ ବନ୍ଧ ବନ୍ଧ ପରମ ନର୍ବାଣେ ॥
ଉନ୍ମତ୍ତ ଶବର ଗୁରୁଆ ରୋଷେ
ଗିରି ବର ଶିଖର ସନ୍ଧ ପଶନ୍ତେ ଶବରେ ଲୋଡ଼ିବ କେସନେ ?

## ତାତ୍ପର୍ଯ୍ୟ ଅର୍ଥ :—

ଉଚ୍ଚ ପର୍ବତମାଳା—ତା ଉପରେ ବାସକରେ ଗୋଟିଏ ଶବରବାଳିକା । ତାର ପରିଧାନ ମୟୂରପୁଚ୍ଛ, କଣ୍ଠରେ ଗୁଞ୍ଜମାଳା । ତାର ପ୍ରଣୟ-ପାଗଳ ଶବର ଯୁବକର ଚକ୍ଷୁରେ ଦ୍ୱନ୍ଦ୍ୱ ଦେଖି ସେ ତାକୁ କହିଲା—ହେ ପାଗଳ ଶବର, ତୋତେ ମୋର ଗୁହାରି ଓ ମିଛରେ ଧନ୍ଦ ହୋଇ ଗୋଳମାଳ କରନାହିଁ । ଥରେ ମତେ ଦେଖ, ମୁଁ ହିଁ ତୋର ସ୍ତ୍ରୀ, ସହଜ-ସୁନ୍ଦରୀ । ଏହା ଶୁଣି ଶବରର ଚେତନା ଫେରିଲା । ତାର ପ୍ରାଣରେ ପ୍ରୀତିର ପ୍ରସ୍ରବଣ ଫୁଟିପଡ଼ିଲା । ସେହି ନିରସ ପାର୍ବତ୍ୟଭୂମି ତାର ପ୍ରେମରେ ପ୍ଲାବିତ ହେଲା । ବୃକ୍ଷମାନଙ୍କରେ ନାନାଜାତିର ପୁଷ୍ପ ଫୁଟିଗଲା, ଶାଖାପ୍ରଶାଖା ଆକାଶ ଛୁଇଁଲା । ସେତେବେଳେ

ଶବରବାଳିକା ସେହି ସୁନ୍ଦର ବନଭୂମିରେ କର୍ଣ୍ଣରେ କୁଣ୍ଡଳ, ବଳାଦ ଭୂଷିତ ହୋଇ ଏକାକୀ ବୁଲୁଥାଏ । ପ୍ରେମିକ ଶବର ଯୁବକ ମନର ଦ୍ୱନ୍ଦ୍ୱ ଦୂରକରି ତାକୁ ସଙ୍ଗିନୀ ରୂପେ ଗ୍ରହଣ କଲା । ସେ ତିନି ଧାତୁରେ ନିର୍ମିତ ଗୋଟିଏ ଖଟ ପକାଇ ତା ଉପରେ ମହାସୁଖକର ଶଯ୍ୟା ବିଛାଇଦେଲା । ତା ପରେ ପ୍ରେମିକା ଶବର-ବାଳିକା ସହିତ ସମ୍ଭୋଗ ବିଳାସରେ ରାତି ଯାପନ କଲା । ହୃଦୟସ୍ଥ ଆନନ୍ଦରେ ମହାସୁଖରେ ତାମ୍ବୁଲ ଓ କର୍ପୂର ସେବନ କଲା ଏବଂ ପ୍ରେମିକାକୁ କଣ୍ଠାଶ୍ଳେଷ କରି ରାତି ବିତେଇ ଦେଲା ।

## ଗୁହ୍ୟ ଅର୍ଥ :—

ସାଧକର ମେରୁଦଣ୍ଡର ଶୀର୍ଷଦେଶରେ ମହାସୁଖଚକ୍ରରେ ନୈରାତ୍ମା ଅଧିଷ୍ଠିତା । ବିଷୟବିହ୍ୱଳ ସାଧକ ନାନା ବିକଳ୍ପ ଆବରଣି ଦ୍ୱାରା ଅଛନ୍ନ ହୋଇ ଏବଂ ଗୁହ୍ୟମନ୍ତ୍ରର ମର୍ମାନଭିଜ୍ଞ ହୋଇ ନୈରାତ୍ମାର ଉପଲବ୍ଧି କରିପାରେ ନାହିଁ, କିନ୍ତୁ ନୈରାତ୍ମା ନିଜେ ସାଧକକୁ ଚେତେଇ ଦିଅନ୍ତି ଯେ କ୍ଷୁଦ୍ର ବିଷୟ ସୁଖରେ ବିହ୍ୱଳ ନ ହୋଇ ମହାସୁଖସ୍ୱରୂପିଣୀ ନୈରାତ୍ମାର ସାଧନା କର । ଅବିଦ୍ୟା ପ୍ରଭାବରୁ ଜାଗତିକ ବାହ୍ୟ ବିଷୟ ସକଳ ଲୋଭନୀୟ ଦିଶେ ଏବଂ ରୂପ ବେଦନା, ସଂଜ୍ଞାଦି ପଞ୍ଚସ୍କନ୍ଧ ପ୍ରଭାବରୁ ଜଗତ ଶୂନ୍ୟ, ଏହି ତଥ୍ୟ ଉପ-ଲବ୍ଧି ହୁଏ ନାହିଁ । ଫଳରେ ପ୍ରକ୍ଷେପାସ୍ତ ମୃଗନାଭି ରୂପେ ଅବସ୍ଥିତା ଜ୍ଞାନମୁଦ୍ରା ନୈରାତ୍ମା ସହିତ ସାଧକର ମିଳନ ସଂଘଟିତ ହୁଏ ନାହିଁ । ଯେତେବେଳେ ସାଧକ ନୈରାତ୍ମାର ଏହି ଚେତନା ବାଣୀ ଶୁଣେ; ସେ କାୟ, ବାକ୍, ଚିତ୍ତ ବିଷୟକ ଧାରଣାର ଊର୍ଦ୍ଧ୍ୱରେ ମହାସୁଖର ବିସ୍ତାର ଅନୁଭବ କରେ । ସାଧନା ଦ୍ୱାରା ନୈରାତ୍ମା ସହିତ ମିଳିତ ହୋଇ ଅବିଦ୍ୟା ଦୋଷ ଦୂରକରେ । ତାର ଚିତ୍ତ ଅଚିତ୍ତରେ ଲୀନ ହୁଏ । ସେ ଶୁକ୍ରର ନିମ୍ନଗାମୀ ପ୍ରବାହକୁ ରୁଦ୍ଧ କରି ଅବଧୂତୀ ମାର୍ଗରେ ମହାସୁଖରେ ପ୍ରବେଶ କରେ । ତାର କଣ୍ଠଦେଶସ୍ଥ ସମ୍ଭୋଗଚକ୍ରରେ ନୈରାତ୍ମା ସହ ବୋଧିଚିତ୍ତର ମିଳନ ସାଧିତ ହେବାଦ୍ୱାରା ସମସ୍ତ କ୍ଳେଶ ଅପନୋଦିତ ହୁଏ । ସାଧକମାନଙ୍କୁ ଉପଦେଶ—ସେମାନେ ଗୁରୁବାକ୍ୟକୁ ଭକ୍ତିକରି ସ୍ୱଚିତ୍ତର ସାଧନାରେ ପ୍ରବୃତ୍ତ ହେଲେ ପରମ ନିର୍ବାଣ ଲାଭ କରିବାକୁ ସମର୍ଥ ହେବେ । ସହଜାନନ୍ଦ-ପ୍ରମତ୍ତଚିତ୍ତ ପରମ ରାଗରେ ନୈରାତ୍ମା ସହ ମିଳିତ ହୋଇ ମହାସୁଖଚକ୍ରରେ ପ୍ରବେଶ କଲେ ଆଉ ପୁନର୍ଜନ୍ମ ଦୋଷ ରହିବ ନାହିଁ । ସାଧକର ଚିତ୍ତ ଶବର ସଦୃଶ । ଶବର ଯେପରି ଶରସନ୍ଧାନ କରେ, ସେହିପରି ସାଧକ, ଗୁରୁବାକ୍ୟ ରୂପ ଧନୁରେ ନିଜ ମନରୂପ ବାଣ ସନ୍ଧାନ କରି ପରମ ନିର୍ବାଣକୁ ଅଧିକାର କରେ । ଶବର ଯେପରି ଉନ୍ମତ୍ତ ହୋଇ ପର୍ବତ ଶିଖରରେ ପ୍ରବେଶ କଲେ ତାକୁ ଆଉ ଖୋଜି ବାହାର କରିଯାଇପାରେ ନାହିଁ, ସେହିପରି ସହଜା-ନନ୍ଦରେ ପ୍ରମତ୍ତଚିତ୍ତ ପରମ ରାଗରେ ମହାସୁଖଚକ୍ରରେ ପ୍ରବେଶ କଲେ ତାହା ଆଉ ଭବବନ୍ଧନରେ ପଡ଼େ ନାହିଁ ।

## ପଦ୍ୟ ଅର୍ଥ :—

ଉଞ୍ଚାଉଞ୍ଚା ପର୍ବତ—ସାଧକର ସ୍ୱକାୟ କଙ୍କାଳଦଣ୍ଡର ଶୀର୍ଷରେ ଅବସ୍ଥିତ ମହାସୁଖଚକ୍ର ତୁ: ବରଗିର ଶିହର ଉତୁଙ୍ଗ ମୁଣି ସବରେ ଜହିଁ କଅ ବାସ, ଣଉ ସୋ ଲଂଘିଅ ପଞ୍ଚାଣନେ କରିବର ଦୂରିଅ ଆସ ( କାହ୍ନ-ଦୋହା. ୨୮ )

ଶବରୀ—ନୈରାତ୍ମା, ସହଜ ସୁନ୍ଦରୀ !
ମୟୂରପୁଚ୍ଛ—ବିଭିନ୍ନ ଭାବବିକଳ୍ପ
ଗ୍ରୀବା—ସମ୍ଭୋଗଚକ୍ର
ଗୁଞ୍ଜାମାଳୀ—ଗୁହ୍ୟମନ୍ତ୍ର
ଶବର—ବଜ୍ରଧର ସାଧକ
ଉନ୍ମତ୍ତ···ବିଷୟବିହ୍ୱଳ ଚିତ୍ତ
ତରୁ—ଅବିଦ୍ୟା
ଡ଼ାଳ—ପଞ୍ଚସ୍କନ୍ଧ
ଗଗନ—ପ୍ରଭାସ୍ୱର ଶୂନ୍ୟ
କୁଣ୍ଡଳ—ଜ୍ଞାନାଦି ପଞ୍ଚମୁଦ୍ରା
ବଜ୍ର—ପ୍ରଜ୍ଞା ଓ ଉପାୟର ଯୁଗନଦ୍ଧରୂପ ବା ଶୂନ୍ୟ
ତ୍ରିଧାତୁ—କାୟ ବାକ୍ ଚିତ୍ତ । ଦାର୍ଶନିକ ବୌଦ୍ଧଧର୍ମରେ କାମଧାତୁ (Sensuous world) ରୂପଧାତୁ ( fine-material world ) ଓ ଅରୂପ ଧାତୁ ( immaterial world )
ବାଣ—ଯେ କ୍ଲେଶ ବିଦାରଣ କରେ
ଖଟ—ପ୍ରଜ୍ଞୋପାୟ ବିକଳ୍ପ
ତାମ୍ବୁଲ—ପରିଶୁଦ୍ଧ ଚିତ୍ତ
କର୍ପୂର—ଶୂନ୍ୟ, ଯୁଗନଦ୍ଧରୂପ (ଶୂନ୍ୟଂ କର୍ପୂରକ ମତମ୍—ହେବଜ୍ରତନ୍ତ୍ର)
କଣ୍ଠ—ସମ୍ଭୋଗଚକ୍ର
ଖଟ—କାୟକ୍ଲେଶାନ୍ଧକାର
ଉନ୍ମତ୍ତ ଶବର—ମହାଜ୍ଞାନାନନ୍ଦପାନ ପ୍ରମତ୍ତ ସାଧକର ଚିତ୍ତ
ବଜ୍ର
ଗରୁଆ ରୋଷ—ଜ୍ଞାନାନୁରାଗ
ଗିରିବର ସିହର ସନ୍ଧି—ମହାସୁଖଚକ୍ର ନଳିନୀବନ ।

## —ନ. ୫୦ (ମନ୍ତ୍ରଶବର—ମୃତ୍ୟୁଚର୍ଯ୍ୟା)

ରାଗ-ରାମକ୍ରୀ

**ମୂଳ—**

ଗଅଣତ ଗଅଣତ ତଇଲା ବାଡ଼ୀ ହେଞ୍ଚେ କୁରାଡ଼ୀ ।
କଣ୍ଠେ ନୈରାମଣି ବାଲ ଜଗନ୍ତେ ଉପାଡ଼ୀ ।। ୧ ।।
ଛାଡ଼ୁ ଛାଡ଼ୁ ମାଆମୋହା ବିଷମ ଦୁନ୍ଦୋଲୀ ।
ମହାସୁହେ ବିଲସନ୍ତି ଶବରୋ ଲଇଆ ସୁଣ ମେହେଲୀ ।। ଧ୍ରୁ ।।
ହେରି ସେ ମେରି ତଇଲା ବାଡୀ ଖସମେ ସମତୁଲା
ଷୁକଡ଼ ଏ ସେ ରେ କପାସୁ ଫୁଟିଲା ।। ୨ ।। । ଧ୍ରୁ ।
ତଇଲା ବାଡ଼ିର ପାସେର ଜୋହ୍ନାବାଡ଼ୀ ଉଏଲା ।
ଫିଟେଲି ଅନ୍ଧାରେରେ ଆକାଶ ଫୁଲିଆ ।। ୩ ।। । ଧ୍ରୁ ।
କଙ୍ଗୁରିନା ପାକେଲରେ ଶବରା ଶବରୀ ମାତେଲା ।
ଅଣୁଦିନ ଶବରୋ କିମ୍ପି ନ ଚେବଇ ମହାସୁହେଁ ଭୋଲା ।।୪।। ।ଧ୍ରୁ ।
ଚାରିବାସେଁ ଭାଇଲରେ ଦିଆ ଚଞ୍ଚାଳୀ ।
ତହିଁ ତୋଲି ଶବରୋ ଡ଼ାହ କଏଲା କାନ୍ଦଇ ସଗୁଣ ଶିଆଳୀ ।।୫।। ।ଧ୍ରୁ ।
ମାରିଲ ଭବମତ୍ତାରେ ଦହ ଦିହେ ଦଧଲି ବଳୀ ।
ହେରି ସେ ଶବର ନିରେବଣ ଭଇଲା ଫିଟିଲ ସବରାଳୀ ।।୬।। ।ଧ୍ରୁ ।

**ପାଠାନ୍ତର:—**

୧. (ଖ, ଗ, ଘ) ହୁଏଁ କୁସାଡ଼ୀ (ଚ) ହେଞ୍ଚେ (=ହେଉଂ) (ପୁ.ନ.) ବାଉସ୍ଥି ୨. (ଘ, O.B.L.T ) ଜାଗନ୍ତେ ସୁପାଡ଼ୀ ୩. (କ, ଗ) ଗ୍ରୁଡ଼ୁ ଗ୍ରୁଡ଼ୁ, (ଚ) ଗ୍ରୁଡ଼ୁ ଗ୍ରୁଡ଼ୁ (ଙ) ଗ୍ରୁଡ଼ ଗ୍ରୁଡ଼ (ଖ, ଘ, ପୁ.ନ) ବିସନେ, ୫. ମୂଳ—ଖଃସତମ (ପୁ.ନ) ହେରସେ (ଖ) ମୋର ୬. (ଖ) ସୁକଲ ଏ ମୋରେ (ଘ,O.B,L.T.) ସୁକଡ଼ ଏବେ ୭. (କ,ଘ, ପୁ.ନ, O.B.L T.) ଭାଏଲା ୮. (ଖ, O.B.L.T.) ଆକାଶ ଫୁଲିଲ ୯. (କ, ପୁ.ନ) କଙ୍ଗୁରିନା (ଚ) କଙ୍ଗୁରି, (କ, ଖ, ଘ, ପୁ.ନ) ଶବରି ୧୦ (ଘ) ଭେଲା ୧୧. (କ, ଗ, ଘ, ପୁ.ନ) ଗ୍ରହବାସେ, (ଖ) ବାଁସେ, (JDL) ଗ୍ରହ ପାଶେଁ, (କ, ଖ, ଗ, ଘ,) (O·B.L.T·) ଗଢ଼ିଲରେ, (JDL) ଛୁଇଲା, [ଶହୀଦୁଲାହ ମନେ କରନ୍ତି ମୂଳ ପାଠ ଥିଲା ଚୌଡ଼ିଲା](କ,ଖ,ଘ, ପୁ.ନ) ଦିଆଁ ୧୨. (କ.ପୁ.ନ) ହୁକ ଏଲା କାନ୍ଦଣ, (O.B·L·T.) ଦାହ କାଏଲା ୧୩. (ଖ) ଦଲ୍ଲୀବଲୀ ୧୪. (ଖ) ନିବ୍‌ବାଣ କମ୍ମା ବଚେଜଣ, (ଘ) ଅବସଲା ।

## ଆଧୁନିକ ରୂପାନ୍ତର:—

ଗଗନେ ଗଗନେ ତଇଲା ବାଡ଼ି ହାଣେ କୁରାଢ଼ି
କଣ୍ଠେ ନୈରାମଣୀ ବାଳୀ ଜାଗନ୍ତେ ଉପାଡ଼ି ।
ଛାଡ଼ ଛାଡ଼ ମାୟାମୋହ ବିଷମ ଧନ୍ଦୋଳି
ମହାସୁଖେ ବିଳସନ୍ତି ଶବର ନେଇଣ ଶୂନ୍ୟ-ମାହେଳୀ ।
ହେର ସେ ମୋର ତଇଲା ବାଡ଼ି ଖସମ ସମତୁଲା
ଶୁକଲ ଏହ ସେ, ରେ କପାସୁ ଫୁଟିଲା ।
ତଇଲା ବାଡ଼ିର ପାଶେଁର ଜହ୍ନା ବାଡ଼ି ଉଏଁଲା
ଫିଟିଲା ଅନ୍ଧାରରେ—(କବା) ଆକାଶ ଫୁଟିଲା ।
କଙ୍ଗୁଚିନା ପାଚିଲା ରେ ଶବର ଶବରୀ ମାତିଲା
ଅନୁଦିନ ଶବର କିଛୁ ନ ଚେତଇ ମହାସୁଖେ ଭୋଳା ।
ଚାରି ବାଆଁଶେ ଭେଇଲା ରେ ଦେଇ ଚଞ୍ଚାଳୀ
ତହିଁ ତୋଳି ଶବର ଡାହ କଲା କାନ୍ଦଇ ଶାଗୁଣା ଶିଆଳୀ ।।
ମାରିଲା ଭବମତ୍ତାରେ ଦଶଦିଗେ ଦେଲା ବଳୀ
ହେରଇ ସେ ଶବର ନିର୍ବାଣ ହୋଇଲା ଫିଟିଲା ଶବରାଳି ।।

## ସରଳାର୍ଥ:—

ଏହି ଗୀତିକାରେ ପାର୍ବତ୍ୟଭୂମିରେ ବାସକରୁଥିବା ଶବର ଶବରୁଣୀଙ୍କ ଜୀବନ-ଚିତ୍ର ସହିତ ରୂପକ କରି ସାଧକର ଚିତ୍ତ କପରି ନୈରାତ୍ମା ସହ ମିଳିତ ହୁଏ, ତାହା ବର୍ଣ୍ଣିତ ହୋଇଛି ।

ଶବର କୁରାଢ଼ିରେ କାଟି କାଟି ପାହାଡ଼ ଉପରେ ଆକାଶରେ କପା-ତଇଲା ତିଆରି କରେ । ସାଧକ ସେପରି ବୋଧିଚିତ୍ତ ରୂପକ କୁଠାର ଦ୍ୱାରା ଶୂନ୍ୟ, ଅତିଶୂନ୍ୟ ଓ ମହାଶୂନ୍ୟ ତୃତୀୟ ଶୂନ୍ୟର ଦୋଷ ଖଣ୍ଡନ କରେ । ଶବରୁଣୀ ସେ ତଇଲା ଭୂଇଁରୁ ଘାସମାସ ଉପାଡ଼ି ଦେବାରେ ଶବରକୁ ସାହାଯ୍ୟ କରେ । ସାଧକର ସମ୍ଭୋଗଚକ୍ରରେ ନୈରାତ୍ମା ଜାଗ୍ରତ ହେଲେ ସେ ସେହିପରି ସମସ୍ତ ଦୋଷ ଉତ୍ପାଟନ କରିବାରେ ସହାୟକ ହୁଅନ୍ତି । ଶବରୀପାଦ କହନ୍ତି —ହେ ସାଧକଗଣ ! ସମସ୍ତ ଦ୍ୱନ୍ଦ୍ୱର ମୂଳ ଯେଉଁ ମାୟା ଓ ମୋହ, ତାହା ପରିତ୍ୟାଗ କର । ଶବରଶବରୁଣୀ ଯେପରି ଏକମନ ହୋଇ ସୁଖମୟ ଦାମ୍ପତ୍ୟଜୀବନ ଯାପନ କରନ୍ତି, ସେହିପରି ଶୂନ୍ୟତା ରୂପ ନାରୀ ସହିତ ଏକାତ୍ମ ହୋଇ ମହାସୁଖରେ ବିଳାସ କର । ଦେଖ, ଶବରର ତଇଲା ବାଡ଼ିରେ କ୍ରମେ କପାଗଛ ସବୁ ଶାଖାପତ୍ରରେ ଶ୍ୟାମାୟିତ ହୋଇ ଆକାଶ ଦେହରେ ମିଶିଗଲା ଏବଂ ତାର କିଛିଦିନ ପରେ ସେଥିରେ ଶୁକ୍ଳବର୍ଣ୍ଣର କପା ଫୁଟିଗଲା ।

ସେପରି ତୁମେ ତୃତୀୟ ଶୂନ୍ୟରେ ଅଧିଷ୍ଠିତ ହେଲେ ଚିତ୍ତ ଖସମ ବା ଶୂନ୍ୟମୟ ହୋଇଯିବ ଏବଂ ଚତୁର୍ଥ ଶୂନ୍ୟର ନିର୍ମଳ ପ୍ରଭା ଫୁଟିଉଠିବ । ପୁଣି ଏଇ ଦେଖ, ଶବରର କପା ତଇଲ ପାଖରେ ମକ୍ଚା ଗଛ ସବୁ ଉଠି ଆସୁଛି । ସେଥିରେ ଫୁଲ ଫୁଟିବାରୁ ଆକାଶରେ ଫୁଲ ଫୁଟିଲ ପରି ଦିଶୁଛି । ସେହିପରି ସାଧକର ଚିତ୍ତରେ ତୃତୀୟ ଶୂନ୍ୟ ନିକଟରେ ଜ୍ଞାନରୂପ ଚନ୍ଦ୍ରମଣ୍ଡଳ ଉଦିତ ହେଲେ ଅବିଦ୍ୟା-ଅନ୍ଧକାର ଦୂର ହୋଇଯିବ ଏବଂ ଚତୁର୍ଥ ଶୂନ୍ୟ ପ୍ରସ୍ଫୁଟିତ ହେବ । ମାଣ୍ଡିଆ ଚିନା ପାଚିଲେ ଶବରଶବରୀ ଶସ୍ୟସଂଗ୍ରହ କରି ଆନନ୍ଦରେ ମାତାଲ ହୁଅନ୍ତି । ସେତେବେଳେ ଶବର ଆନନ୍ଦରେ ବିଭୋର ହୋଇ ଆଉ କିଛି ଚିନ୍ତା କରେ ନାହିଁ । ସେହିପରି ସାଧକର ଚିତ୍ତ ଚତୁର୍ଥ ଶୂନ୍ୟରେ ପ୍ରବେଶ କଲେ ସେ ଜ୍ଞାନାସବ ପାନରେ ପ୍ରମତ୍ତ ହୁଏ, ଚିତ୍ତରେ ଆଉ କୌଣସି ବିକଳ୍ପ ଭାବ ଜାତ ହୁଏ ନାହିଁ । ଏହିପରି ଭାବରେ ଜୀବନ ଯାପନ କରି ଶବର ଯେତେବେଳେ ମୃତ୍ୟୁବରଣ କରେ, ଶବରୁଣୀ ଘର ଖଣ୍ଡ ବାଉଁଶରେ ଗୃହର ସଜାଇ ଶବ-ଶଯ୍ୟା ତିଆରି କରେ । ତାହା ଉପରେ ଶବରର ମୃତଦେହକୁ ରଖି ଦାହ କରିଦିଏ । ଶାଗୁଣା-ଶିଆଳ ସବୁ ଚିତ୍କାର କରୁଥାଆନ୍ତି । ସାଧକ ସେପରି ଚତୁର୍ଥାନନ୍ଦ ଉପଲବ୍ଧି କରିବା ଦ୍ୱାରା ଇନ୍ଦ୍ରିୟ ସମୂହ ଦଗ୍ଧ କରେ । ସେତେ-ବେଳେ କେବଳ ତାର ସଗୁଣ-ଚିତ୍ତ ଦୁଃଖପ୍ରକାଶ କରେ । ଶବଦାହ ପରେ ଶବରୁଣୀ ଦଶ ଦିଗରେ ପିଣ୍ଡଦାନ କରେ । ତାର ସ୍ୱାମୀ ଶବର-ଜନ୍ମରୁ ଉଦ୍ଧାର ପାଇ ପରଲୋକରେ ପ୍ରବେଶ କରେ । ସାଧକ ସେପରି ଭବମାୟାକୁ ଛିନ୍ନକରି ଦଶଦିଗପାଳ ବୁଦ୍ଧଙ୍କର ସନ୍ତୋଷ-ବିଧାନ କରେ ଏବଂ ପରମ ନିର୍ବାଣ ଲାଭ କରିବାଦ୍ୱାରା ଚିତ୍ତର ଅଶୁଦ୍ଧତା ଦୋଷ ଦୂର କରେ ।

## ସନ୍ଧ୍ୟା ଅର୍ଥ:—

ଗଅଣ ଗଅଣ—ପ୍ରଥମ ଶୂନ୍ୟ ଓ ଦ୍ୱିତୀୟ ଶୂନ୍ୟ, (ଦ୍ର: ଚର୍ଯ୍ୟା-୨୬ ଟୀକା)
ତଇଲା ବାଡ଼ି—ତଲ୍ଲଗ୍ନ ତୃତୀୟ ମହାଶୂନ୍ୟ
ନୈରାମଣି—ନୈରାତ୍ମା, ବିଜ୍ଞାନ ସ୍କନ୍ଧର ଅଧିଦେବତା
ହେଙ୍କେ କୁରାଢ଼ୀ—(ତୁ: ଆଦଅ ଫାଡ଼ ଟାଙ୍ଗୀ ନିବାଣେ କୋଡ଼ଅ'—ଚର୍ଯ୍ୟା-୫)
କଣ୍ଠ—ସମ୍ଭୋଗଚକ୍ର
ଶୂନ୍ୟ-ମେହେଲୀ—ନୈରାତ୍ମା, ସହଜ ସୁନ୍ଦରୀ (ଦ୍ର: ଚର୍ଯ୍ୟା—୧୩ ଟୀକା)
ମହାସୁଖ—(ଦ୍ର: ଚର୍ଯ୍ୟା-୧ ଟୀକା)
ଖସମ—(ଦ୍ର: ଚର୍ଯ୍ୟା-୨୪ ଟୀକା)
କପାସୁ—ଜକାର ପାର୍ଶ୍ୱବର୍ତ୍ତୀ ଖକାର—୪ର୍ଥ ଶୂନ୍ୟ
ଜୋହ୍ନାବାଡ଼ୀ—ଜ୍ଞାନରୂପ ଚନ୍ଦ୍ରମଣ୍ଡଳ ବା ବୋଧିଚିତ୍ତ (ତୁ: ଚର୍ଯ୍ୟା- ୪)

ଅନ୍ଧାସ୍ତ୍ର—ଅବିଦ୍ୟା
ଆକାଶ—ପ୍ରଭାସ୍ୱର ଶୂନ୍ୟ(ଦ୍ରୁ: ବାଲୁଆ ତେଲେଁ ସସର ସିଙ୍ଗେ ଆକାସ ଫୁଲିଲ—ଚର୍ଯା—୪୧)
ଭଙ୍ଗୁରନା—ଚତୁର୍ଥ ଶୂନ୍ୟ ("କଂ ସୁଖଂ ସନ୍ଧୃତ୍ତି ବୋଧିଚତ୍ତଂ ତେନ ସସ୍ୟ ଅଙ୍ଗଚନଂ ଇତ ଚତୁର୍ଥସ୍ୟ ଅନୁଶଂସା—ମୁନିଦତ୍ତ)
ଘୁରବାସେଁ—ଚତୁରାନନ୍ଦ
ଚଣ୍ଡାଳୀ—ବିଷୟେନ୍ଦ୍ରିୟ
ସଗୁଣଶିଆଳୀ—ସାଧକର ସଗୁଣ ଆତ୍ମା
ଦହ ଦହେ···ଦଶଦଶର ବୃକ୍ଷ (ଦ୍ରୁ: ଚର୍ଯା,-୯ ଟୀକା)

ବି. ଦ୍ରୁ:—୧ମ ପଦ ଅର୍ଥ ଡ. ସେନ୍‌ଙ୍କ ମତରେ—ଗଗନେ ଗଗନେ ତୃଷ୍ଣାସ୍ଥ ବାଟିକା, ହୃଦୟେ କୁଠାର, କଣ୍ଠେ (ଲଗ୍ନ)
ନୈରାମଣି ବାଳକା, ଜାଗି ରହିଲେ ମଙ୍ଗଳ ।
୪ର୍ଥ ପଦ ଅର୍ଥରେ ମଣୀନ୍ଦ୍ର ମୋହନ ବସୁ ଲେଖିଛନ୍ତି ଯେ କ୍ଳେଶାନ୍ଧକାର ଆକାଶ-କୁସୁମର ନ୍ୟାୟ ପ୍ରତିପନ୍ନ ହୋଇ ଦୂର ହେଲ । (ଏହି ପଦଟି ତିବତୀ ଅନୁବାଦରେ ନାହିଁ)

୬ଷ୍ଠ ପଦ ଅଥରେ ସଂସ୍କୃତ ଟୀକାରେ ଅଛି—ଶବରର ମୃତ୍ୟୁ ଦେଖି ଶୃଗାଳ ଶବ୍ଦନାଦ କାହିଁନ୍ତି ଅର୍ଥରେ ଶବରପାଦ ଜନେ କରୁଣା ପ୍ରକାଶ କରୁଛନ୍ତି ।
୭ମ ପଦର ସଂସ୍କୃତ ଟୀକା ତିବତୀ ଅନୁବାଦରୁ ଉଦ୍ଧାର ହୋଇଛି ।

———

## ୩. କାହ୍ନୁପା

"କାହ୍ନୁପାଦ, କୃଷ୍ଣପାଦ,କୃଷ୍ଣବଜ୍ର କୃଷ୍ଣ ସ୍ୱୟଂ ୫୭ ଖଣ୍ଡ ବହି ଲେଖି ଯାଇଛନ୍ତି । × × × ତେଙ୍ଗୁରରେ ପନ୍ଦରଟି ସ୍ଥାନରେ ତାହାଙ୍କୁ ଭାରତବାସୀ କୁହାଯାଇଛି । କେବଳ ଗୋଟିଏ ସ୍ଥାନରେ ଅଛି ସେ ବ୍ରାହ୍ମଣ, ଓଡ଼ିଶାରୁ ଆଗତ,ସେ ପୁଣି ତର୍କମାକାର ମହାପଣ୍ଡିତ କୃଷ୍ଣ,ସେ ଗ୍ରନ୍ଥକାର ନୁହନ୍ତି । × × ସୁତରାଂ ତେଙ୍ଗୁରରୁ ଯେତେବେଳେ ତାଙ୍କର ବାସସ୍ଥାନ ଠିକ୍ ହୋଇପାରିଲ ନାହିଁ, ସେତେବେଳେ ତାଙ୍କର ଭାଷା ବିଶେଷ ରୂପେ ପରୀକ୍ଷା କରିବାକୁ ପଡ଼ିବ । × × × କାହ୍ନୁ ପାଦଙ୍କର ଭାଷା ବଙ୍ଗଳା କହିବାକୁ କୁଣ୍ଠିତ ହେବାର କାରଣ

ଦେଖିନାହିଁ । ପଣ୍ଡିତ ହରପ୍ରସାଦ କାହ୍ନୁପାଙ୍କର ପଞ୍ଚଚତ୍ୱ ଏକ୍ସପର ଭାବରେ ବୌଦ୍ଧଗାନ ଓ ଦୋହାର ମୁଖବନ୍ଧରେ ପ୍ରଦାନ କରିଛନ୍ତି । ତେଙ୍ଗୁରରେ ଚାରି ଜଣ କୃଷ୍ଣ ସ୍ପଷ୍ଟ ବାରିହୁଏ — ୧. ବସ୍ତ୍ରକୃଷ୍ଣ ୨, ଓଡ଼ିଶା ଆଗତ ଅନୁବାଦକ କାହ୍ନୁ ୩. କୃଷ୍ଣାଚାର୍ଯ୍ୟ ୪. କୃଷ୍ଣବଜ୍ର । ତାରାନାଥ ଦୁଇଜଣ କୃଷ୍ଣଙ୍କର ଉଲ୍ଲେଖ କରିଛନ୍ତି ଏବଂ ତାଙ୍କ ମତରେ କନିଷ୍ଠ କୃଷ୍ଣଚର୍ଯ୍ୟ ଓ ଦୋହା ଲେଖକ, ଜାତିରେ ବ୍ରାହ୍ମଣ । ତାଙ୍କର ଜନ୍ମସ୍ଥାନ ଓଡ଼ିଶା କିନ୍ତୁ ବାସସ୍ଥାନ ପାଦ୍ୟନଗର ବା ବିଦ୍ୟାନଗର (ଦାକ୍ଷିଣାତ୍ୟର କର୍ଣ୍ଣଦେଶ) । ପରବର୍ତ୍ତୀକାଳରେ ଅନ୍ତରପା ନାମକ ଜଣେ ସିଦ୍ଧ ମଧ୍ୟ ନବକୃଷ୍ଣାଚାର୍ଯ୍ୟ ଭାବରେ ଖ୍ୟାତ ହୋଇଥିଲେ । ପାଗ ସମ ଜୋନ୍ ଜାଙ୍ଗ୍ ରେ ଦୁଇ ଜଣ କାହ୍ନୁପାଙ୍କ ମଧ୍ୟରୁ ଜଣଙ୍କୁ ଓଡ଼ିଶାରେ ବ୍ରାହ୍ମଣ କୁଳରେ ଜାତ ଓ ଜାଳନ୍ଧରୀ ଶିଷ୍ୟ ବୋଲିକୁହାଯାଉଛି । ସାଧନ ମାଲାରେ କୃଷ୍ଣପାଦଙ୍କ ନାମରେ ବାରଟି ସାଧନା ମିଳେ । ତାର ସମ୍ପାଦକ ଡ. ଭଟ୍ଟାଚାର୍ଯ୍ୟ ଏକାଧିକ କୃଷ୍ଣ ଥିବା ସ୍ୱୀକାର କରନ୍ତି । ଶ୍ରୀକୃଷ୍ଣଙ୍କ ସମ୍ପର୍କୀୟ ବିବରଣୀରେ ସେ ଲେଖିଛନ୍ତି ଯେ ନ. ୧୭୧ ସାଧନାରେ କୃଷ୍ଣରାଜ କୃଷ୍ଣଯାମାରିତନ୍ତ୍ରର ବଜ୍ର ସରସ୍ୱତୀ ପୂଜା ପ୍ରଚଳନ କରିଥିବା ଜଣାଯାଏ । ତାରାନାଥଙ୍କ ମତରେ କୃଷ୍ଣଯାମାରିତନ୍ତ୍ର ପଦ୍ମବଜ୍ରଙ୍କ ସମସାମୟିକ ଲଳିତବଜ୍ରଙ୍କ ଦ୍ୱାରା ପ୍ରକାଶ ହୋଇଥିଲା । କୃଷ୍ଣରାଜ ଯେ କି ସମ୍ପୁଟ ତିଳକ ତନ୍ତ୍ରର ପ୍ରକାଶ କରିଥିଲେ, ସେ ସମ୍ଭବତଃ ବଜ୍ରସରସ୍ୱତୀ ପୂଜା ପ୍ରଚଳନ କରିଥିଲେ ଏବଂ ସେହି କୃଷ୍ଣରାଜ ଓ କୃଷ୍ଣାଚାର୍ଯ୍ୟ ଏକ ବୋଲି ଧାରଣା ହୁଏ ।

ଚର୍ଯ୍ୟାଗୀତିକାରେ କାହ୍ନୁ (ନ ୭, ୯, ୪୦, ୪୨, ୪୫) କୃଷ୍ଣାଚାର୍ଯ୍ୟପାଦ (ନ. ୧୧, ୩୬), କୃଷ୍ଣପାଦ (ନ, ୧୨, ୧୩, ୨୯) ଓ କୃଷ୍ଣବଜ୍ର (ନ. ୧୮) ନାମରେ ଭଣିତା ଦେଖାଯାଏ । ନ. ୭ ଗୀତିକାରେ ସେ ନିଜକୁ ଜାଳନ୍ଧରୀ ଶିଷ୍ୟ ଓ ପଣ୍ଡିତାଚାର୍ଯ୍ୟ କହିଛନ୍ତି । ଡ଼. ସୁନୀତିକୁମାର ଚାଟାର୍ଜି ବିଶ୍ୱାସ କରନ୍ତି ଯେ ହେବଜ୍ର ପଞ୍ଜିକା ଯୋଗରତ୍ନମାଳାର ଲେଖକ ପଣ୍ଡିତାଚାର୍ଯ୍ୟ କୃଷ୍ଣପାଦ ଓ ଚର୍ଯ୍ୟାଗୀତିକାର ଲେଖକ ସମାନ ବ୍ୟକ୍ତି । ନାଥ ପରମ୍ପରାରେ ଜାଳନ୍ଧରୀ ଓରଫ୍ ହାଡ଼ିପାଙ୍କ ଶିଷ୍ୟରୂପେ କାହ୍ନୁପାଙ୍କର ଉଲ୍ଲେଖ ଲକ୍ଷ୍ୟକରି ସେ ମଧ୍ୟ ମନେକରନ୍ତି ଯେ ଗୋପୀଚନ୍ଦ୍ର ବା ଗୋବିନ୍ଦଚନ୍ଦ୍ର ଗଳ୍ପର କାହ୍ନୁପା ଚର୍ଯ୍ୟାଲେଖକଙ୍କ ଠାରୁ ଭିନ୍ନ ନୁହନ୍ତି । ଅଧ୍ୟାପକ ନିହାରରଞ୍ଜନ ରାୟ ମଧ୍ୟ କାହ୍ନୁପାଙ୍କୁ ଜାଳନ୍ଧରୀ ଶିଷ୍ୟ, ନାଥପନ୍ଥୀ ଓ ସହଜପନ୍ଥୀ[1] ଆଚାର୍ଯ୍ୟ ରୂପେ ଗ୍ରହଣ କରିଛନ୍ତି । ଡ଼. ଶଶିଭୂଷଣ ଦାଶଗୁପ୍ତଙ୍କ ଅନୁମାନ, ଗୋପିଚନ୍ଦ୍ର ଉପାଖ୍ୟାନରେ କାହ୍ନୁପାଙ୍କର ଶିଷ୍ୟ ଭାବରେ ଯେଉଁ ବାଇଲ ଭାଦାଇଙ୍କର ଉଲ୍ଲେଖ ମିଳେ, ସେ ସମ୍ଭବତଃ ଭଦେପା । (Ob. R. C.- P, 394)

ପଣ୍ଡିତ ରାହୁଲ ସାଂକୃତ୍ୟାୟନଙ୍କ ମତରେ କାହ୍ନୁପା କର୍ଣ୍ଣାଟକ ଦେଶରେ ବ୍ରାହ୍ମଣ କୁଳରେ ଜନ୍ମ ହୋଇଥିଲେ । ତେଣୁ ତାଙ୍କର ନାମ ଥିଲା କର୍ଣ୍ଣପା । ଶରୀରର ରଙ୍ଗ କଳା ହେତୁ ତାଙ୍କୁ କୃଷ୍ଣପା ବା କହ୍ନପା କୁହାଯାଉଥିଲା । ଭେଟିସ୍ୱାରେ ତାଙ୍କର ନାମ ଚର୍ଯ୍ୟାପା ।

ସେ ଜଣେ ପଣ୍ଡିତଭିକ୍ଷୁ ଥିଲେ ଏବଂ କେତେଦିନ ସୋମପୁରୀ ବିହାରରେ (ପାହାଡ଼ପୁର, ଜି: ରାଜସାହି) ବାସ କରିଥିଲେ । (ନୂଏନଓ୍ୱେଡେଲ ମଧ୍ୟ ତାଙ୍କୁ ସୋମପୁରୀ ଅଧିବାସୀ ବୋଲି କହିଛନ୍ତି) । ପରେ ସେ ଜାଳନ୍ଧରୀପାଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ୮୪ ସିଦ୍ଧଙ୍କ ମଧ୍ୟରେ କବିତ୍ୱ ଓ ବିଦ୍ୟା ଦୁଇ ଦୃଷ୍ଟିରୁ ସେ ସର୍ବଶ୍ରେଷ୍ଠ ସିଦ୍ଧ । ତାଙ୍କର ଶିଷ୍ୟଗଣ— କନଖଲା, ମଙ୍ଗଳପା, ଉଧିଲିପା, ଭଦେପା, ଧର୍ମପା, କନ୍ତଲିପା ଓ ମେଖଲା ।

ଡ. ସୁକୁମାର ସେନ ଅନୁମାନ କରନ୍ତି, କାହ୍ନୁପାଙ୍କର ଅନ୍ୟ ଏକ ନାମ ବିରୁପା (ବିରୁଆ) । ଚର୍ଯ୍ୟା-୧୮ରୁ ସେ ପ୍ରମାଣ ଦେଇଛନ୍ତି ଯେ "କେହ୍ନୋ କେହ୍ନୋ ତୋହରେ ବିରୁଆ ବୋଲଇ, ବିଦୁଜଣ ଲୋଅ ତୋରେ କଣ୍ଠ ନ ମେଲଇ" । ଚର୍ଯ୍ୟାଗୀତିକାରେ ବିରୁଆ ନାମରେ ଥିବା ଗୀତିକାଟି ତାଙ୍କର କୌଣସି ଶିଷ୍ୟଙ୍କ ରଚନା । ତିବ୍ବତୀ ଅନୁବାଦ ମଧ୍ୟରେ ବିରୁପାଙ୍କ ରଚନା ବୋଲି କର୍ମଚଣ୍ଡାଳିକା ନାମଗୀତି ଦୋହାକୋଷ ଓ ବିରୁପପଦ ଚଉରାଶୀତି ପରିଦୃଷ୍ଟ ହୁଏ । ପ୍ରକୃତରେ କାହ୍ନୁପାଦ କର୍ମଚଣ୍ଡାଳିକା ଗୀତିର ଲେଖକ, କାରଣ ତାଙ୍କର ଚର୍ଯ୍ୟା ୧୮ରେ ଅଛି—"କାହ୍ନେ ଗାଇଉ କାମଚଣ୍ଡାଳୀ" । କାହ୍ନୁପାଙ୍କର ଦୋହାକୋଷ ମିଳେ, ବିରୁପାଙ୍କର ନାହିଁ । ବିରୁପପଦ ଚଉରାଶୀତି ବିରୁପାଙ୍କ ଶିଷ୍ୟ ବିଶେଷଦ୍ୱାରା ରଚିତ । ପୁଣି ତିବ୍ବତୀ ସାହିତ୍ୟରେ କାହ୍ନୁଙ୍କର ବିରୁପା ନାମଟି ସ୍ୱୀକୃତ । ତାରନାଥଙ୍କ ବିବରଣୀରୁ ମିଳେ—ଗୁରୁଶିଷ୍ୟ ଦୁହେଁ ବିରୁଆ, ଗୁରୁ ବିରୁଆର ଶିଷ୍ୟ କାହ୍ନ ବିରୁଆ । କାହ୍ନ ବିରୁଆର ଗୁରୁ ଜାଳନ୍ଧରି-ପା । ପୁନଶ୍ଚ ଡ. ସେନ ଲେଖିଛନ୍ତି ଯେ ଚର୍ଯ୍ୟାଗୀତିକାରୁ ଦୁଇ ଜଣ କାହ୍ନୁଙ୍କର ଅସ୍ତିତ୍ୱ ଅନୁମିତ ହୁଏ । ଜଣେ ଜାଳନ୍ଧରୀପାଦ ଶିଷ୍ୟ, ନାମାନ୍ତର ବିରୁଆ ଏବଂ ନିଜକୁ କାପାଳିକ, ନାଗା, ଯୋଗୀ କହିଛନ୍ତି ଓ ଡୋମ୍ବୀ ସହିତ ପ୍ରେମସମ୍ପର୍କର ସଙ୍କେତ ପ୍ରଦାନ କରିଛନ୍ତି । ତାଙ୍କର ଗୀତିକାଗୁଡ଼ିକ—ନ. ୧୦, ୧୧, ୧୮, ୧୯, ୩୬, ୪୨ ।। ଦ୍ୱିତୀୟ କାହ୍ନୁ ଅବଶିଷ୍ଟ ଗୀତିକା ( ନ ୭, ୯, ୧୨, ୧୩, ୨୪, ୪୦, ୪୫ ) ଲେଖିଛନ୍ତି । ଏହାଙ୍କ ରଚନାରେ ମହାସୁଖ-ସାଙ୍ଗ ଇଚ୍ଛା ଓ ଜ୍ଞାନ ଉପଦେଶର ପ୍ରବଳତା ପରିଦୃଷ୍ଟ ହୁଏ । ଏହି ସମ୍ଭବତଃ ଦୋହାକୋଷର ଲେଖକ । କୃଷ୍ଣାଚାର୍ଯ୍ୟ ନାମରେ ଏକାଧିକ ସିଦ୍ଧ ଥିବାର ପ୍ରମାଣ ତାରନାଥଙ୍କ ବିବରଣୀରେ ସ୍ପଷ୍ଟ । ଜଣେ କୃଷ୍ଣାଚାର୍ଯ୍ୟ ଥିଲେ ଡୋମ୍ବୀ ହେରୁକଙ୍କ ଶିଷ୍ୟ ଓ ଆଉ ଜଣେ ଥିଲେ ଇନ୍ଦ୍ରଭୂତିଙ୍କ ଶିଷ୍ୟ; କିନ୍ତୁ ଜାଳନ୍ଧରୀ ଶିଷ୍ୟଙ୍କ ନାମ ଥିଲା ବିରୁପ କୃଷ୍ଣାଚାର୍ଯ୍ୟ ।

କାହ୍ନୁପାଙ୍କ ସମ୍ପର୍କରେ ଆଉ କେତେକ ବିବରଣୀ ଡ଼. ଧର୍ମବୀର ଭାରତୀ ସିଦ୍ଧ-ସାହିତ୍ୟରେ (ପୃ: ୫୪) ଉଲ୍ଲେଖ କରିଛନ୍ତି । କାହ୍ନୁପା ବାଲ୍ୟ ଜୀବନରେ ଶୈବଗ୍ରାସ୍ତ ଥିଲେ । ତାଙ୍କର ଆଠଜଣ ଶିଷ୍ୟ ମହାସିଦ୍ଧ ହୋଇଥିଲେ । ସସ୍କ୍ୟ ବକମ୍ ବୁମ୍‌ରେ ତାଙ୍କର ନାମ କାହ୍ନୁପା ହେବାର ହେତୁ ତାଙ୍କର ଲମ୍ବା କାନ ଥିଲା ବୋଲି ଦର୍ଶାଇ ଦିଆଯାଇଛି । ଯୋଗୀସମ୍ପ୍ରଦାୟାବିଷ୍କୃତିଃ ଅନୁସାରେ ତାଙ୍କର ଜନ୍ମ ବ୍ରହ୍ମାଙ୍କ ଔରସରୁ ହସ୍ତୀକର୍ଣ୍ଣରୁ ହୋଇଥିଲା । ତେଣୁ ସେ ନାମାନ୍ତରରେ କାର୍ଣ୍ଣପା ରୂପେ ପରିଚିତ ।

କାହ୍ନୁପାଙ୍କର ସମୟ ଡ. ବିନୟତୋଷ ଭଟ୍ଟାଚାର୍ଯ୍ୟ ସ୍ଥିର କରିଛନ୍ତି ଖ୍ରୀ ୭୧୭। ଡ. ସୁନୀତି କୁମାର ଚଟ୍ଟୋପାଧ୍ୟାୟ, କେମ୍ବ୍ରିଜସ୍ଥ ହେବକର ପଞ୍ଜିକା ଯୋଗରତ୍ନମାଳା ପୋଥିର ନକଲ ସମୟ ରାଜା ଗୋବିନ୍ଦପାଳଙ୍କ ରାଜତ୍ୱର ୩୯ ଅଙ୍କରେ (ଖ୍ରୀ, ୧୧୬୯-୧୨୦୦) ହୋଇଥିବା ଭିତ୍ତିରେ, କାହ୍ନୁପାଙ୍କୁ ୧୨ ଶତାବ୍ଦୀର ପୂର୍ବବର୍ତ୍ତୀ ଓ ଖ୍ରୀ. ୯୫୦ ର ପରବର୍ତ୍ତୀ ବୋଲି ମନେକରନ୍ତି। ସାଙ୍କୃତ୍ୟାୟନଙ୍କ ମତରେ ସେ ମହାରାଜ ଦେବପାଳଙ୍କ (ଖ୍ରୀ. ୮୦୯—୮୪୯) ସମସାମୟିକ। ଡ. ଧର୍ମବୀର ଭାରତୀ ପୂର୍ବସୂରୀମାନଙ୍କ ବିଷୟର ଅନୁଶୀଳନ ପୂର୍ବକ ଖ୍ରୀ. ୯୨୫—୧୦୦୦ କାଳ-ପରିଧି ମଧ୍ୟରେ ଗୋରକ୍ଷ, ଜାଳନ୍ଧରୀ ପ୍ରଭୃତିଙ୍କ ସହିତ କାହ୍ନୁପାଙ୍କୁ ଅବସ୍ଥାପିତ କରିଛନ୍ତି। ଡ. ଶହୀଦୁଲ୍ଲାହ ଢାକା ବିଶ୍ୱବିଦ୍ୟାଳୟ ସାହିତ୍ୟ ପତ୍ରିକାରେ (୧ମ ବର୍ଷ ୨ୟ ସଂଖ୍ୟା, ୧୩୬୪) 'କାହ୍ନୁପାର କାଳନିର୍ଣ୍ଣୟ' ଶୀର୍ଷକ ପ୍ରବନ୍ଧରେ ସିଦ୍ଧାନ୍ତ କରିଛନ୍ତି ଯେ ତାଙ୍କର ସମୟ ମୋଟାମୋଟି ଖ୍ରୀ. ୭୨୫—୭୭୫ ମଧ୍ୟରେ। ତାଙ୍କର ଯୁକ୍ତି ହେଲା—(୧) ଚର୍ଯ୍ୟାଗୀତିକାର ଓ ନାଥଗୀତିକାର କାହ୍ନୁପା ଅଭିନ୍ନ। ରାଜା ଗୋପୀଚନ୍ଦ୍ରର ସମୟ ୭ମ ଶତାବ୍ଦୀର ଚତୁର୍ଥପାଦ (୨) ଚର୍ଯ୍ୟା—୩୬ ଅନୁଯାୟୀ ଓ ଚନ୍ଦ୍ର-ସମ୍ଭାର ତନ୍ତ୍ର.ଗୁରୁ ପରମ୍ପରା ଅନୁସାରେ କାହ୍ନୁ ଜାଳନ୍ଧରୀ ଶିଷ୍ୟ। ଜାଳନ୍ଧରୀଙ୍କ ସମୟ—ସେ ଇନ୍ଦ୍ରଭୂତିଙ୍କ ଶିଷ୍ୟ। ଇନ୍ଦ୍ରଭୂତିଙ୍କ ପାଳକ ପୁତ୍ର ପଦ୍ମସମ୍ଭବ, ଯାହାଙ୍କର ଜନ୍ମକାଳ ଖ୍ରୀ. ୭୨୧-୨୨। ତେଣୁ ଜାଳନ୍ଧରୀଙ୍କ ସମୟ ୭ମ ଶତକର ଦ୍ୱିତୀୟାର୍ଦ୍ଧ। ପୁଣି ଲାମା ତାରାନାଥଙ୍କ ମତରେ ଭର୍ତ୍ତୃହରିଙ୍କୁ ଜାଳନ୍ଧରୀ ଦୀକ୍ଷା ଦାନ କରିଥିଲେ। ଭର୍ତ୍ତୃହରିଙ୍କ ମୃତ୍ୟୁକାଳ ଖ୍ରୀ. ୬୫୧। ତେଣୁ ଜାଳନ୍ଧରୀଙ୍କ ସମୟ ୭ମ ଶତକର ଦ୍ୱିତୀୟାର୍ଦ୍ଧ (୩) ଦୋହା-୨୫ରେ କାହ୍ନୁପା ଶବରୀପାଙ୍କ ଉଲ୍ଲେଖ କରିଛନ୍ତି (ବରଗିରି ଶିହର ଉତଙ୍ଗ ଥଲିଶବରେ ଜହିଁକ-ଅବାସ। ନଉ ଲଂଘିଅ ପଞ୍ଚାନନେହିଁ କରିବର ଦୂରଅ ଆସ।) (୪) ତିବତୀ ଐତିହ୍ୟ ଅନୁସାରେ ସେ ସୋମପୁରୀ ବିହାରରେ ଥିଲେ ଏବଂ ସେଠାରେ ଧର୍ମକାୟ ପ୍ରଦୀପ ସିଦ୍ଧି ଲେଖିଥିଲେ। ଏହି ବିହାର ଧର୍ମପାଳଦେବଙ୍କ ଦ୍ୱାରା (ଖ୍ରୀ, ୭୭୦-୮୧୦) ନିର୍ମିତ ହୋଇଥିବାରୁ ସେ ଧର୍ମପାଳଦେବଙ୍କ ପ୍ରାରମ୍ଭ ପର୍ଯ୍ୟନ୍ତ ଜୀବିତ ଥିବା ଅନୁମେୟ। (୫) ସିଲଭାଁ ଲେଭିଙ୍କ ମତରେ ମତ୍ସ୍ୟେନ୍ଦ୍ରନାଥ ଖ୍ରୀ. ୬୫୭ରେ ନେପାଳ ଯାଇଥିଲେ। ମତ୍ସ୍ୟେନ୍ଦ୍ର ଜାଳନ୍ଧରୀଙ୍କ ଗୁରୁ। ଏଣୁ ଜାଳନ୍ଧରୀ ଓ କାହ୍ନୁଙ୍କର ସମୟ ଏହାର ପରବର୍ତ୍ତୀ ପଚାଶବର୍ଷ ମଧ୍ୟରେ ନିରୂପଣ କରାଯାଇପାରେ।

ତେଙ୍ଗୁରରେ କାହ୍ନୁପାଙ୍କ ରଚନାବଳୀର ସଂଖ୍ୟା ୭୪। ସାଙ୍କୃତ୍ୟାୟନ କେତେଗୁଡ଼ିଏ ନାମ ଉଲ୍ଲେଖ କରିଯାଇଛନ୍ତି—ମହାଢୁଣ୍ଢନ, ବସନ୍ତ ତିଲକ, ଅସମ୍ବନ୍ଧଦୃଷ୍ଟି ବଜ୍ରଗୀତି, ଦୋହାକୋଷ, କାହ୍ନୁପାଦ ଗୀତିକା ଓ ବୋଧିଚର୍ଯ୍ୟାବତାର ଟୀକା।

## ପରିଶିଷ୍ଟ—

କାହ୍ନୁପା ନାମଟି ଉଭୟ ସିଦ୍ଧ ଓ ନାଥ ପରମ୍ପରାରେ ସୁପ୍ରତିଷ୍ଠିତ। ଏହି ନାମରେ ଏକାଧିକ ବ୍ୟକ୍ତି ପ୍ରଖ୍ୟାତ ହୋଇଥିବା ଅସମ୍ଭବ ନୁହେଁ। କିନ୍ତୁ ସେମାନଙ୍କ ମଧ୍ୟରେ ଓଡ଼ିଶା ଆଗତ, ବ୍ରାହ୍ମଣ-କୁଳ-ସମ୍ଭୂତ, ଜାଳନ୍ଧରୀ-ଶିଷ୍ୟ ସିଦ୍ଧାଚାର୍ଯ୍ୟ କାହ୍ନୁ କବିତ୍ୱ ଓ ପାଣ୍ଡିତ୍ୟ,

ଗୁଣରେ ଏକ ବଶିଷ୍ଟ ଆସନର ଅଧିକାରୀ ହୋଇଥିଲେ । ତାଙ୍କର ଉତ୍କଳୀୟତା ପାଗ ସମ୍ ଜୋନ ଜାଙ୍ଗ୍, ତାରନାଥଙ୍କ ବବରଣୀ ଓ ତେଙ୍ଗୁରରେ ସୂଚିତ ଏବଂ ବନୟତୋଷ ଭଟ୍ଟାଚାର୍ଯ୍ୟ, ଶହୀଦୁଲ୍ଲାହ ପ୍ରଭୃତିଙ୍କ ଦ୍ୱାରା ସମର୍ଥିତ । ତାଙ୍କର ଜନ୍ମସ୍ଥାନ ରୂପେ କର୍ଣ୍ଣଦେଶ, କର୍ଣ୍ଣାଟକ ଦେଶ ବା ବିଦ୍ୟାନଗରୀ ଗୃହୀତ ହେଲେ ମଧ୍ୟ ତତ୍କାଳୀନ ଓଡ଼ିଶାର ଭୌଗୋଳିକ ବସ୍ତୃତି ବଚାର କରି ତାଙ୍କୁ ଉତ୍କଳୀୟ କହିଲେ କ୍ଷତି ହେବନାହିଁ । ସୋମପୁରୀ ବହାରରେ ତାଙ୍କର ଅବସ୍ଥିତି ଅନ୍ୟ କଥା । ଚର୍ଯାଗୀତିକାର ଭାଷା ବଚାରରୁ ତାଙ୍କୁ ବଙ୍ଗୀୟ କହିବା ଯେତିକ ସମୀଚୀନ, ଉତ୍କଳୀୟ କହିବା ତତୋଽଧିକ ପ୍ରାମାଣିକ । କେବଳ ବନୟତୋଷ ଭଟ୍ଟାଚାର୍ଯ୍ୟଙ୍କ ମନ୍ତବ୍ୟଟି ଏହି ସ୍ଥଳରେ ସ୍ମରଣୀୟ:—Krṣhnachraya wrote Dohas also in his own vernacular, which was probably Udiya and had a great affinity with the old Bengali Language. (Budhist Esoterism)· କାହ୍ନୁପାଙ୍କ ନାମର ବ୍ୟାଖ୍ୟା ଅବାନ୍ତର । କନ୍ତୁ ତାଙ୍କର ନାମାନ୍ତର, ବରୂପା ମତଟି ବଚାରଣୀୟ । ଯିଏ ବରୂପା ଜାଳନ୍ଧରୀ ଶିଷ୍ୟ ଓ ଓଡ଼ିଶାର ବରୂପା ନଦୀକୂଳବାସୀ ଭାବରେ ପରିଚିତ । ସୁତରାଂ ବରୂପ-କାହ୍ନୁ ଉତ୍କଳୀୟ ହେବା ସ୍ୱାଭାବକ । ତେଙ୍ଗୁରରେ ଲେଖାଅଛି—ହେ ବଜ୍ର-ସାଧନତନ୍ତ୍ରୋଦ୍ୟୋତକ ଗ୍ରନ୍ଥର ତର୍କମାକାର ଓଡ଼ିଶା ଆଗତ କୃଷ୍ଣାଚାର୍ଯ୍ୟ । ଏହି କୃଷ୍ଣାଚାର୍ଯ୍ୟ ଲେଖକ ନୁହନ୍ତି, କେବଳ ଅନୁବାଦକ ଓ ତର୍କମାକାର ଥିଲେ ବୋଲି ପଣ୍ଡିତ ହରପ୍ରସାଦ ଓ ସୁଶୀଲ କୁମାର ଦେ ଙ୍କ ମତ । କେମ୍ବ୍ରିଜରେ ସୁରକ୍ଷିତ ହେବଜ୍ର ସାଧନଯୋଗ ରତ୍ନମାଳା ଟୀକା ଗ୍ରନ୍ଥଟିର ଲେଖକ କୃଷ୍ଣାଚାର୍ଯ୍ୟ । ତେଣୁ ତାହା ନିଶ୍ଚୟ ସେହି ତର୍କମାକାର କୃଷ୍ଣାଚାର୍ଯ୍ୟଙ୍କ କର୍ମ । ଡ· ସୁନୀତି କୁମାରଙ୍କ ମତରେ ସେହି ଟୀକା ଲେଖକ ଓ ଚର୍ଯା ୩୬ର ଲେଖକ ଜାଳନ୍ଧରୀ ଶିଷ୍ୟ କାହ୍ନୁ ସମାନ ବ୍ୟକ୍ତି । ତା ହେଲେ କପରି କହିବାକୁ ହେବ ଯେ ତେଙ୍ଗୁରରେ ହେବଜ୍ର ତନ୍ତ୍ର ଉପରେ ଯେଉଁ ଟୀକାଟିର ଉଲ୍ଲେଖ ଅଛି, ତାର ଲେଖକ ଓଡ଼ିଶା ଆଗତ; କନ୍ତୁ କେମ୍ବ୍ରିଜରେ ହେବଜ୍ର ତନ୍ତ୍ର ଉପରେ ଯେଉଁ ଟୀକାଟି ଅଛି, ତାର ଲେଖକ ବଙ୍ଗୀୟ ? ଏଣୁ ସ୍ୱୀକାର କରିବାକୁ ପଡ଼ିବ ଯେ ହେବଜ୍ରତନ୍ତ୍ରର ଉଭୟ ଟୀକାର ଲେଖକ ଓଡ଼ିଶା ଆଗତ କୃଷ୍ଣାଚାର୍ଯ୍ୟ । ସେହି ଚର୍ଯା-୩୬ ତଥା ଆହୁ କେତେକ ଚର୍ଯାଗୀତିକାର ଲେଖକ, ସେହି ଜାଳନ୍ଧରୀ ଶିଷ୍ୟ ଏବଂ ନାମାନ୍ତରରେ ବରୂପ । ବହୁ କାହ୍ନୁପାଦ ଆଇପାରନ୍ତି, ମାତ୍ର ଜାଳନ୍ଧରୀ ଶିଷ୍ୟ କାହ୍ନୁହିଁ ବଖ୍ୟାତ ସାଧକ ଓ ଉଭୟ ତନ୍ତ୍ର ଓ ନାଥ ପରମ୍ପରାରେ ବନ୍ଦିତ । ବଭିନ୍ନ ଗୁରୁ ପରମ୍ପରାରେ, ପାଗ୍ ସମ୍ ଜୋନ୍ ଜାଙ୍ଗ, ଚକ୍ରସମ୍ବାରତନ୍ତ୍ର, କୌଳଜ୍ଞାନ ନିର୍ଣ୍ଣୟ ଓ ଗୋବନ୍ଦଚନ୍ଦ୍ର କଥାରେ ଜାଳନ୍ଧରୀ ଶିଷ୍ୟରୂପେ ତାଙ୍କର ଉଲ୍ଲେଖ କରାଯାଇଛି । ବହୁ କାହ୍ନୁପାଙ୍କ ମଧ୍ୟରୁ ଯେଉଁ ଜଣକୁ ଓଡ଼ିଶା ଆଗତ ବୋଲି ତାରନାଥ ଓ ସୁମ୍ପା ମଖନ୍ ପୋ ଚହ୍ନିତ କରିଛନ୍ତି, ସେ ଜଣକ ହିଁ ତାଙ୍କ ମତରେ ଜାଳନ୍ଧରୀଙ୍କ ଶିଷ୍ୟ । ସୁତରାଂ ବର୍ତ୍ତମାନ ଯେଉଁ ଓଡ଼ିଶା ଆଗତ କୃଷ୍ଣାଚାର୍ଯ୍ୟଙ୍କୁ କେବଳ ତର୍କମାକାର ଭାବରେ ଗ୍ରହଣ କରାଯାଇଛି, ଯଥାର୍ଥରେ ସେ ଥିଲେ ବଖ୍ୟାତ ସାଧକ କାହ୍ନୁପା ଏବଂ ଚର୍ଯାଗୀତିକାଗୁଡ଼ିକ ତାଙ୍କର ରଚନା ।

# ଗୀତିକା

## —ନ ୭ (କାହ୍ନ-ଉଗାଳ ଚର୍ଯ୍ୟା)—

ରାଗ—ପଟମଞ୍ଜରୀ

## ମୂଳ .—

ଆଲେଏଁ କାଲେଏଁ ବାଟ ରୁନ୍ଧେଲା ।
ତା ଦେଖି କାହ୍ନୁ ବିମନ ଭଇଲା ॥ ୧ ॥
କାହ୍ନୁ କାହିଁ ଗଇ କରିବ ନିବାସ ।
ଜୋ ମନ ଗୋଅର ସୋ ଉଆସ ॥ ଧ୍ରୁ ॥
ତେ ତିନ ତେ ତିନ ତିନ ହୋ ଭିନ୍ନା ।
ଭଣଇ କାହ୍ନୁ ଭବ ପରିଛିନ୍ନା ॥ ୨ ॥ (ଧ୍ରୁ)
ଜେ ଜେ ଆଇଲା ତେତେ ଗେଲା ।
ଅବଣା ଗବଣେ କାହ୍ନୁ ବିମନ ଭଇଲା ॥ ୩ ॥ (ଧ୍ରୁ)
ହେରି ସେ କାହ୍ନି ନିଅଡ଼ି ଜିନଉର ବଟ୍ଟଇ ।
ଭଣଇ କାହ୍ନୁ ମୋ ହିଅହି ନ ପଇସଇ ॥ ୪ ॥ (ଧ୍ରୁ)

## ପାଠାନ୍ତର—

୧. (ଚ) କାଲଏ ୨. (ଖ) କାହ୍ନୁ ବିମଣା, (କ) ଭଇଇଲା ୩. (ଖ) କାହ୍ନୁ, (ଚ) କହିଁର ଗଇ (ଚ) ସା ୬. (ଖ) କାହ୍ନ ୮. (ଖ) କାହ୍ନୁ ବିମଣା ୯. (O.B.L.T.) କାହ୍ନୁ, (ଚ) ବସଇ ୧୦ (କ,ଗ) ମୋହିଅହି ।

## ଆଧୁନିକ ରୂପାନ୍ତର—

ଆଲଏ କାଲଏ ବାଟ ରୁନ୍ଧିଲା
ତା ଦେଖି କାହ୍ନୁ ବିମନ ହୋଇଲା ।
କାହ୍ନୁ କାହିଁଯାଇ କରିବ ନିବାସ ?
ଯାହା ମନ ଗୋଚର ତାହା ଉଦାସ ।
ତା' ତିନ ତା' ତିନ ତିନ ହୋ ଭିନ୍ନା
ଭଣଇ କାହ୍ନୁ ଭବ ପରିଛିନ୍ନା ।
ଯା' ଯା' ଆଇଲା ତା' ତା' ଗଲା
ଗମନାଗମନେ କାହ୍ନୁ ବିମନ ହୋଇଲା ।
ହେରି ସେ କାହ୍ନୁ ନିକଟେ ଜିନପୁର ଅଛଇ
ଭଣଇ କାହ୍ନ ମୋହିଆରେ (ମୋହ ହେତୁ) ନ ପଶଇ ।

## ସରଳାର୍ଥ—

ଗୀତିକା ମଧ୍ୟରେ 'ଭ୍ରମନ' ଶବ୍ଦର ଅର୍ଥ ସଂସ୍କୃତ ବୃତ୍ତିରେ ଓ ତିବ୍ବତୀ ଅନୁବାଦରେ ଭିନ୍ନ ଭାବରେ କରାଯାଇଥିବାରୁ ସମଗ୍ର ଗୀତିକାଟିର ମର୍ମ ଦୁଇ ଭାବରେ ବ୍ୟାଖ୍ୟା କରାଯାଇପାରେ ।

(କ) "ଆଳିକାଳି" ଦ୍ୱାରା ଅବଧୂତିର ବହିର୍ଗମନ ମାର୍ଗ ଅବରୁଦ୍ଧ ହେଲା । ଏହା ଫଳରେ ଅବଧୂତୀ ପ୍ରକୃତିପରି ଶୁଦ୍ଧରୂପେ ପ୍ରତିଭାତ ହେଲା । କାହ୍ନୁପା ତାହା ଦେଖି ପରିଶୁଦ୍ଧମନା ହେଲେ । କାହ୍ନୁପାଙ୍କର ଅନ୍ୟତ୍ର କେଉଁଠି ଯାଇ ବାସକରିବାର ପ୍ରୟୋଜନ ନାହିଁ । ନିଜ ଅନ୍ତର ମଧ୍ୟରେ ସେ ପରମ ଆନନ୍ଦମୟ ମହାସୁଖ ସ୍ଥଳର ସନ୍ଧାନ ପାଇଛନ୍ତି; କିନ୍ତୁ ଯେଉଁ ଯୋଗୀମାନେ ମନଗୋଚର ଅର୍ଥାତ୍ ମନେନ୍ଦ୍ରିୟଦ୍ୱାରା ବାହ୍ୟ ଜଗତରେ ସୁଖମୟ ସ୍ଥାନ ଅନ୍ୱେଷଣ କରୁଛନ୍ତି, ସେମାନେ ଉଦାସ ରହନ୍ତି, ସେହି ସୁଖମୟ ସ୍ଥାନ ତାଙ୍କଠାରୁ ଦୂରରେ ରହେ । ସେମାନଙ୍କ ନିକଟରେ ସ୍ୱର୍ଗମର୍ତ୍ତ୍ୟପାତାଳ ବା କାୟବାକ୍‌ଚିତ୍ତ ପରସ୍ପର ଭିନ୍ନ ଦେଖାଯାଏ ଏବଂ ସଂସାର ବନ୍ଧନରେ ଜନ୍ମମୃତ୍ୟୁ ସ୍ପଷ୍ଟ ପ୍ରତିଭାତ ହୁଏ । ମାତ୍ର ସହଜ-ସାଧକ ଏହି ଭେଦ ଉପଲବ୍ଧି କରେ ନାହିଁ ଏବଂ ସାଂସାରିକ ଜନ୍ମ ମୃତ୍ୟୁ ଚକ୍ରରେ ପତିତ ହୁଏ ନାହିଁ । ସଂସାରରେ ଜନ୍ମ-ମୃତ୍ୟୁ ବା ଉତ୍ପତ୍ତି-ଭଙ୍ଗ ଦେଖି ତାହାର ମନ ସୁଖ ବା ଦୁଃଖରେ ବିଚଳିତ ହୁଏ ନାହିଁ । ସେ ଏସବୁର ଊର୍ଦ୍ଧ୍ୱରେ ପରମ ନିର୍ଲିପ୍ତ ଭାବରେ ଅବସ୍ଥାନ କରେ । ସହଜ ସାଧକ କାହ୍ନୁ ଏହି ଭାବ ଉପଲବ୍ଧି କରି ବିଷିଣ୍ଣ-ମନ ହେଲେ । ସେ ଅନୁଭବ କରିପାରୁଛନ୍ତି ଯେ ଆନନ୍ଦମୟ ମହାସୁଖପୁର ସାଧକର ଅତି ନିକଟବର୍ତ୍ତୀ । କିନ୍ତୁ ଅବିଦ୍ୟା ମୋହିତ ଚିତ୍ତ ନେଇ ସେଥିରେ ପ୍ରବେଶ କରାଯାଏ ନାହିଁ । (ସଂସ୍କୃତ ବୃତ୍ତି ଅନୁସାରେ)

(ଖ) ମହାସୁଖପୁରରେ ପ୍ରବେଶ ମାର୍ଗ ଅବଧୂତୀ-ମାର୍ଗ । ଆଳି କାଲି ମାର୍ଗ ଦୁଇଟି ଉନ୍ମୁକ୍ତ ରହିବା ହେତୁ ସେହିମାର୍ଗ ରୁଦ୍ଧ ହେଲା । ଏହା ଦେଖି କାହ୍ନୁ ବଡ଼ ଦୁଃଖିତ ହେଲେ । ବର୍ତ୍ତମାନ ସେ ଆଉ କେଉଁଠି ଯାଇ ଆଶ୍ରୟ ନେବେ ? ବାହ୍ୟଜଗତରେ ସେପରି ସ୍ଥାନ କେଉଁଠି ନାହିଁ । ସେ ଯାହା ମନ ଓ ଇନ୍ଦ୍ରିୟ ଦ୍ୱାରା ଜାଣୁଛନ୍ତି ସେ ସବୁ ଉଦାସ ଦେଖାଯାଉଛି । ତାଙ୍କ ନିକଟରେ କାୟା, ବାକ୍, ଚିତ୍ତ, ଧାତୁତ୍ରୟ ଭିନ୍ନ ଭିନ୍ନ ରୂପେ ପ୍ରତିଭାତ ହେଉଛି ଏବଂ ସେ ଭବ ବା ସଂସାର ଓ ଜନ୍ମମୃତ୍ୟୁ ସ୍ପଷ୍ଟରୂପେ ଉପଲବ୍ଧି କରୁଛନ୍ତି । (ମତାନ୍ତରେ ଅଭିନ୍ନ ଦେଖାଯାଉଛି ଓ ଭବବନ୍ଧନ ଛିନ୍ନ ହୋଇଛି—ଡ଼. ସେନ୍) । ତାଙ୍କ ଚିତ୍ତରେ ନାନା ଭାବବିକଳ୍ପ ଜାତହେଉଛି । ତେଣୁ ଅଚିତ୍ତତା ପରିବର୍ତ୍ତେ ଅହଂକାର ସୃଷ୍ଟି ହେଉଛି । କାହ୍ନୁ ଏହି ଭାବରାଜ୍ୟରେ ଆନ୍ଦୋଳିତ ହୋଇ ବିଶେଷ ଦୁଃଖ ଅନୁଭବ କରୁଛନ୍ତି । ସବୁଠାରୁ ଦୁଃଖର କଥା ଏହି ଯେ ସେ ଦେଖିପାରୁଛନ୍ତି, ତାଙ୍କର ଅତି

ନିକଟରେ ମହାସୁଖପୁର ଅବସ୍ଥିତ, ଅଥଚ ତାଙ୍କର ହୃଦୟ ସେ ସ୍ଥାନରେ ପ୍ରବେଶ କରିପାରୁ ନାହିଁ । (ଛବଦତ୍ତ ଅନୁବାଦ ଅନୁସାରେ) ।

ଏହା ବ୍ୟତୀତ ନାଡ଼ି-ସାଧନା ଦୃଷ୍ଟିରୁ ଏହି ଚର୍ଯାର ଅର୍ଥ କରାଯାଇପାରେ । ଆଳିକାଳି ମାର୍ଗରେ ପ୍ରାଣବାୟୁ ଶ୍ୱାସପ୍ରଶ୍ୱାସ ରୂପରେ ପ୍ରବାହିତ ହୋଇ ଅବଧୂତୀ ମାର୍ଗରେ ପ୍ରବେଶ କରିପାରୁ ନାହିଁ । ଅବଧୂତୀ-ମାର୍ଗ ଏପରି ଅବରୁଦ୍ଧ ହେବାରୁ ମହାସୁଖ-ଚକ୍ରରେ ପ୍ରବେଶ କରିବା ଉପାୟ ନ ଦେଖି କାହ୍ନୁ ଅତ୍ୟନ୍ତ ବିରସ ହେଲେ । ସେପରି ଆନନ୍ଦମୟ ସ୍ଥାନ ଆଉ କେଉଁଠି ଅଛି ଯେ ସେ ଯାଇ ସେଠାରେ ଆଶ୍ରୟ ନେବେ ? ବାହ୍ୟଜଗତରେ ଯାହା ଦେଖୁଛନ୍ତି, ସବୁ ଉଦାସ ଜଣାପଡ଼ୁଛି । ଆଳି, କାଳି ଓ ଅବଧୂତୀ ତିନୋଟି ଏକତ୍ରିତ ହୋଇପାରୁ ନାହିଁ । ତେଣୁ ଭବବନ୍ଧନରେ ପତନ ପରିଷ୍କାର ଦେଖାଯାଉଛି । ଯେପରି ଭାବରେ ପ୍ରାଣବାୟୁ ଆସିଲା, ସେପରି ଭାବରେ ପୁଣି ବାହାରିଲା । ତାହା ଧାରଣା କରି ନ ପାରି କାହ୍ନୁଙ୍କର ମନ ଭାଙ୍ଗିଗଲା । ସେ ଜାଣୁଛନ୍ତି, ନିକଟରେ ମହାସୁଖପୁର, କିନ୍ତୁ ଅବଧୂତୀ ମାର୍ଗ ରୁଦ୍ଧ ହେବାରୁ ସେ ପ୍ରବେଶ କରିପାରୁ ନାହାନ୍ତି ।

## ବିଶେଷ ଅର୍ଥ –

**ଆଳିକାଳି** —ପାରିଭାଷିକ ଶବ୍ଦ । ଅର୍ଥ—ବାମନାଡ଼ି, ଦକ୍ଷିଣନାଡ଼ି ବା ଇଡ଼ା, ପିଙ୍ଗଳା "ଆଲିର୍ବାମ ନାସାପୁଟ ପ୍ରଭବୋବାୟୁଃ-ତଦପରଃ କାଲିଃ" (ହେବଜ୍ର ପଞ୍ଜିକା) । ହେରୁକ-ତନ୍ତ୍ର ଅନୁସାରେ—

କର୍ଣ୍ଣାଦାରଭ୍ୟ ବାମେନ ପ୍ରବୃତ୍ତା ନାଭିମଣ୍ଡଳ
ନାଡ଼ିକାଧୋମୁଖୀ ଚନ୍ଦ୍ର ଅଳିଶ୍ଚନ୍ଦ୍ରସମାବହା
ନାଭେଶ୍ଚାରଭ୍ୟ ସବ୍ୟେନ ପ୍ରବୃତ୍ତା କର୍ଣ୍ଣଦେଶତଃ
ମାତୃକୋର୍ଦ୍ଧମୁଖୀ ସୂର୍ଯ୍ୟଃ କାଳିଶ୍ଚାର୍କ ସମାବହା

ଆଳି ସ୍ୱରବର୍ଣ୍ଣ ସମୂହ ଦ୍ୱାରା ଏବଂ କାଳି ବ୍ୟଞ୍ଜନବର୍ଣ୍ଣ ସମୂହ ଦ୍ୱାରା ଗଠିତ । ମର୍ମକାଲିକାତନ୍ତ୍ର ଅନୁସାରେ—"କ କାର ଆଦର୍ଯସ୍ୟା ସୌ କାଦିଃ କାଳିଃ । ଅକାରଃ ଆଦର୍ଯସ୍ୟା ସୌ ଆଦି ଆଲିଃ" ଏହା ସାଧନମାଳା-୨୪ରେ ପ୍ରାଞ୍ଜଳଭାବରେ ବ୍ୟାଖ୍ୟାତ ହୋଇଛି । ଯଥା—ଆଲି କାଲି ଉଚ୍ୟତେ—ତଦ୍ ଯଥା ଅ ଆ ଇ ଈ ଋ ୠ ଉ ଊ ଅ ଆ

ଌ ୡ ଅ ଆ ଏ ଐ ଅର୍ ଆର୍ ଓ ଔ ଅଲ୍ ଅଲ୍ ହ ହା ସ୍ୱ ସ୍ୱା ର ରା ବ ବା ଲ ଲା

ଇତି ସୃଷ୍ଟି କ୍ରମେଣାଲି ଜାପଃ ଶ୍ୱାସ ପ୍ରବେଶନେ । ଶ୍ୱାସ ନିର୍ଗମେ କାଳିଃ କ କା ଖ ଖା ଗ ଗା ଘ ଘା ଙ ଙା ଚ ଚା ଛ ଛା ଜ ଜା ଝ ଝା ଞ ଞା ଟ ଟା ଠ ଠା ଡ ଡା ଢ ଢା ଣ ଣା ତ ତା ଥ ଥା ଦ ଦା ଧ ଧା ନ ନା ପ ପା ଫ ଫା ବ ବା ଭ ଭା ମ ମା ଯ ଯା ହ୍ୟ ହ୍ୟା

ଷ ଷା ଶ ଶା କ୍ଷ କ୍ଷା ଇତି ।।" ସୁନସ୍ତ ହେବକ୍ତୃତନ୍ତ୍ର ଅନୁସାରେ ଆଳ = ପ୍ରଜ୍ଞା, କାଳ = ଉପାୟ (ପ୍ରଜ୍ଞାଳକାଳ ଉପାୟେତି) ଚର୍ଯ୍ୟା-୧୧ ଓ ୧୭ ରେ 'ଆଳିକାଳିର' ଉଲ୍ଲେଖ ମଧ୍ୟ ଦେଖାଯାଏ ।,

ମନଗୋଚର :—ଭୂ. ସଅ ସଂବେଅଣ ତତ୍ତ୍ୱଫଲ ଖାଲପାଥ ଭଣନ୍ତି । ଜୋମଣ ଗୋଅର ପଇଠ୍ଠଇ ସୋ ପରମତ୍ଥ ଣ ହୋନ୍ତି ।। (ଦୋହା ୯—ବାଗ୍‌ଚୀ) ସତ୍ୟ ସ୍ୱସଂବେଦ୍ୟ । ଯାହା ମନଗୋଚର ବିଷୟ, ତାହା ପରମାର୍ଥ ନୁହେଁ)

ତ୍ରିନି !—ସ୍ୱର୍ଗମର୍ତ୍ତ୍ୟପାତାଳ—କାୟବାକ୍‌ଚିତ୍ତ— ଯୋଗ-ଯୋଗୀନ ତନ୍ତ୍ର । ( ଆଳିକାଳି ଅବଧୂତୀ)

ଜିନପୁର :—

"ଜିନପୁରଂ ମହାସୁଖପୁରଂ"-ମୁନିଦତ୍ତ । ଏହା ଚତୁର୍ଥ ଶୂନ୍ୟ । କାରଣ କାହ୍ନୁପାଙ୍କ ଦୋହାକୋଷ ଟୀକାରେ ଚତୁର୍ଥ ଶୂନ୍ୟ ବିଷୟରେ ଲେଖାଅଛି—It is the abode of Abadhuti, it is the abode of the Jinas (Ob.R.C-P.47) ଚର୍ଯ୍ୟା ୧୬ ଓ ୧୯ରେ ଜିନପୁରର ଉଲ୍ଲେଖ ଦେଖାଯାଏ । ଜିନପୁରର ବର୍ଣ୍ଣନା—"ପାରଶୁଦ୍ଧ ବୁଦ୍ଧକ୍ଷେତ୍ରଂ ସଙ୍କେପରୂପଂ ମହାମୋକ୍ଷପୁରଂ ବୈରୋଚନ ସ୍ୱଭାବ ନାନା ରତ୍ନମୟଂ କୂଟାଗାରମ୍ । ଚତୁରସ୍ରଂ ଚତୁର୍ଦ୍ୱାରମ୍ ଅଷ୍ଟସ୍ତମ୍ଭୋପଶୋଭିତମ୍ । ଚତୁର୍ବେଦୀ ପରକ୍ଷିପ୍ତଂ ଚତୁସ୍ତୋରଣମଣ୍ଡିତମ୍ ।" ( ରତ୍ନାକରଶାନ୍ତି, ବଜ୍ରତାରା ସାଧନ )

## —ନ. ୯ (ମତ୍ତ ମାତଙ୍ଗଚର୍ଯ୍ୟା)—

ରାଗ-ପଟମଞ୍ଜରୀ

**ମୂଳ—**

ଏବଂକାର ଦୃଢ଼ ବାଖୋଡ଼ ମୋଡ଼ିଉ ।
ବିବିହ ବିଆପକ ବାନ୍ଧନ ତୋଡ଼ିଉ ॥ ୧ ॥

କାହ୍ନୁ ବିଲସଅ ଆସବମାତା,
ସହଜ ନଳିନୀବନ ପଇସି ନିବିତା ॥ ଧ୍ରୁ ॥
ଜିମ ଜିମ କରଣା କରିଣିରେଁ ରିସଅ ।
ତିମ ତିମ ତଥତା ମଅଗଳ ବରିସଅ ॥ ୨ ॥ ଧ୍ରୁ ॥

ଛଡ଼ଗଇ ସଅଳ ସହାବେ ସୁଧ ।
ଭାବାଭାବ ବଳାଗ ନ ଛୁଧ ॥ ୩ ॥ ଧ୍ରୁ ॥

ଦଶବଳ ରଅଣ ହରିଅ ଦଶଦିସେଁ ।
ଅବିଦ୍ୟା କରିକୁଁ ଦମ ଅକଳେସେଁ ॥ ୪ ॥ ଧ୍ରୁ ॥

**ପାଠାନ୍ତର:—**

୧-(ଖ, ଚ) ଦଢ଼, (କ, OBLT) ମେଡ଼ିଉ, (ଘ) ମୋଡଅ ୨- (ଙ) ତୋଡ଼ିଅ, (OBLT) ତୋଡ଼ିଆ ୩- (ଖ) କାହ୍ନୁ ବିଲସଇ (ହକାଧା) କାହ୍ନୁ ବିଲସିଆ ୫- (ଘ) କମକରସ୍ଥା, (ହକାଧା) ରିହଅ, (ଖ) ରିସଇ ୬- (ଖ) ବରିସଇ ୯- (ଖ) ଦସବଲ-ଦସଦିସେ, (ଘ) ଦଶବର ୧୦- (କ,ଗ,ଘ) ବିଦ୍ୟା କରିମଦକୁଁ (କା)-(ଥ) ବିଦ୍ୟା [ଖ] ବିଦ୍ୟାକରିକୁଁ । (ଘ) ବିଦ୍ୟାକର ଦମ ଜା ଅକ୍ଷଲେସେଁ ।

**ଆଧୁନିକ ମନାନ୍ତର :—**

ଏବଂକାର ଦୃଢ଼ ବାଖୋଡ ମୋଢ଼
ବିବିଧ ବ୍ୟାପକ ବନ୍ଧନ ତୋଢ଼ ।
କାହ୍ନୁ ବିଲସଇ ଆସବ ମତ୍ତ
ସହଜ ନଳିନୀବନ ପଶି ନିବୃତ୍ତ ।

ଯେମିତ କସ୍ତ୍ର କରଣୀରେ ଉର୍ଷଇ (ଶଷଇ)
ତେମିତ ତଥତା ମଦ-ଗଲ ବରଷଇ ।
ଜଗତ୍‌ଗତ ସକଳ ସ୍ୱଭାବେ ଶୁଦ୍ଧ
ଭାବାଭାବ ବାଳାଗ୍ର ନୁହେଁ ଲୁତ (ଅଶୁଦ୍ଧ),
ଦଶବଳ ରତନ ହରଣ ଦଶଦିଶେଁ
ଅବିଦ୍ୟା କରିକୁ ଦମ ଅକଲେଶେଁ ।

## ସରଳାର୍ଥ :—

ମଦମତ୍ତ ହସ୍ତୀ ଯେପରି ବନ୍ଧନସ୍ତମ୍ଭ ଭାଙ୍ଗିଦେଇ, ରଜ୍ଜୁ ଛିନ୍ନ କରି ପଦ୍ମବନରେ ଯାଇ ପ୍ରବେଶ କରେ ଏବଂ ହସ୍ତିନୀ ସହିତ କ୍ରୀଡ଼ା କରେ, କାହ୍ନୁପା ସେହିପରି ଏ-କ ରୂପ ସ୍ତମ୍ଭଦ୍ୱୟ ଭାଙ୍ଗିଦେଇ ଓ ଅନ୍ୟାନ୍ୟ ସମସ୍ତ ଜାଗତିକ ବନ୍ଧନ ଛିନ୍ନ କରି ସହଜ-ପଦ୍ମ-ବନରେ ପ୍ରବେଶ ପୂର୍ବକ ନିର୍ବିକଳ୍ପ ଭାବରେ ସହଜସୁନ୍ଦରୀ ନୈରାତ୍ମା ସହ ବିଳାସ କରୁଛନ୍ତି । ପ୍ରେମୋନ୍ମତ୍ତ ହସ୍ତୀ ଯେପରି ମଦସ୍ରାବ କରେ. ସେପରି ତାଙ୍କ ଚିତ୍ତ-ଗଜେନ୍ଦ୍ର ତଥତା ରୂପ ମଦ ଅର୍ଥାତ୍ ପରମ ସତ୍ୟ ବର୍ଷଣ କରୁଛି । ଏହି ପରମ ସତ୍ୟ ହେଉଛି ସବୁକିଛି 'ତାହା' (that) ବା ସତ୍ୟ । ଜାଗତିକ ପ୍ରତ୍ୟେକ ଜୀବ 'ତାହା'; ତେଣୁ ସ୍ୱଭାବତଃ ଶୁଦ୍ଧ । କାହାର ସ୍ଥିତି ବା ଲୟ କେଶାଗ୍ର ପରିମିତ ରୂପେ ମଧ୍ୟ ଅଶୁଦ୍ଧ ନୁହେଁ । ଶେଷରେ ସେ ଉପଦେଶ ଦେଉଛନ୍ତି ଯେ ଦଶବଳ ରୂପକ ରତ୍ନ ସମୂହ ଦଶଦିଗରୁ ଆହରଣ କର ଏବଂ ସେହି ବଳ ଦ୍ୱାରା ଅକ୍ଳେଶରେ ଅବିଦ୍ୟା ମୋହିତ ଚିତ୍ତ-ହସ୍ତୀକୁ ଦମନ କର । ଚିତ୍ତରେ ଜ୍ଞାନ ସମୁଦ୍‌ଗତ ହେଲେ ଅର୍ଥାତ୍ ବୋଧିଚିତ୍ତ ଜାଗ୍ରତ ହେଲେ ତୁମେ ମଧ୍ୟ ତଥତା ତତ୍ତ୍ୱ ଉପଲବ୍ଧି କରିବ ।

ମୂଳଗୀତ ଚର୍ଯ୍ୟା-୧୬ । ଏଥିରେ ମହୀଧର ଚିତ୍ତ-ଗଜେନ୍ଦ୍ରର ମତ୍ତାବସ୍ଥା ରୂପକ ଦ୍ୱାରା ସହଜାବସ୍ଥା ପ୍ରାପ୍ତିର ବର୍ଣ୍ଣନା କରିଛନ୍ତି ।

ମାତେଲ ଚୀଅ ଗଏନ୍ଦା ଧାବଇ ।
ନିରନ୍ତର ଗଅଣନ୍ତ ତୁସେଁ ଘୋଳଇ ॥
ପାପ ପୁଣ୍ଣ ବେଣି ତୋଡ଼ିଅ ସିକଲ ମୋଡ଼ିଅ ଖମ୍ଭାଠାଣା ।
ଗଅଣ ଟାକଲି ଲାଗେଲରେ ଚିତ୍ତ ପଇଠାଣିବାଣା ॥
ମହାରସ ପାନେ ମାତେଲରେ ତିହୁଅନ ସଏଲ ଉଏଖି ।
ପଞ୍ଚ ବିଷୟରେ ନାୟକରେ ବିପଖ କୋବୀ ନ ଦେଖି ।
ଖର ରବି କିରଣ ସନ୍ତାପେରେ ଗଅଣ ଗଙ୍ଗା ଗଇ ପଇଠା ।
ଭଣନ୍ତି ମହିଣ୍ଡା ମଇ ଏଥୁ ବୁଡ଼ନ୍ତେ କିମ୍ପି ନ ଦିଠା ॥

## ବିଶେଷ ଅର୍ଥ :—

ଏବଂକାର—ଏ-ବଂ ସ୍ୱର । ଏ-ବାମନାଡ଼ି, ବଂ-ଦକ୍ଷିଣନାଡ଼ି । ହସ୍ତୁଚ ବୃତ୍ତି ଅନୁସାରେ—"ଏକାରଶ୍ଚନ୍ଦ୍ରାତ୍ମକଃ ବଂକାରଃ ସୂର୍ଯ୍ୟଃ ଉଭୟଂ ତଦାସନ୍ତି କ୍ଲନମ୍ ।" ତାନ୍ତ୍ରିକ ଗ୍ରନ୍ଥସମୂହରେ ଏହି ତତ୍ତ୍ୱ ନାନାଭାବରେ ବିଶେଷିତ ହୋଇଛି । ଯଥା—ଏ କାରେଣ ସ୍ମୃତା ପ୍ରଜ୍ଞା ବଂକାରଶ୍ଚାପି ଉପାୟକମ୍ (ହସ୍ତୁଟିକା) । ଏକାରକୃତ ଯଦ ଦ୍ୱୟଂ ମଧ୍ୟେ ବଂକାର ଭୂଷିତମ୍ । ଆଲୟଂ ସର୍ବ ସୌଖ୍ୟାନାଂ ବୁଦ୍ଧରତ୍ନ କରଣ୍ଡକମ୍ ॥ ଆନନ୍ଦାସ୍ତତ୍ର ଜାୟନ୍ତେ କ୍ଷଣଭେଦେନ ଭେଦତଃ । କ୍ଷଣଜ୍ଞନାତ୍ତୁ ସୁଖଜ୍ଞନଂ ଏବଂକାର ପ୍ରତିଷ୍ଠିତମ୍ ॥ (ହେବଜ୍ରତନ୍ତ୍ର) । କାହ୍ନୁପାଙ୍କ ଦୋହାକୋଷ ଟୀକାରେ ଦେଖାଯାଏ—ଏକାରସ୍ତୁ ଭବେତ୍ ମାତା ବକାରସ୍ତୁ ପିତାଧିପଃ । ବିନ୍ଦୁଃ ଶ୍ୱନାହତଂ ଜ୍ଞନଂ ତତ୍ସାତାନ୍ୟକ୍ଷରାଣିଚ । ଶୂନତା କରୁଣା ଭିନ୍ନ ରୂପିଣୀ ମହାମୁଦ୍ରା ଇତ୍ୟଥଂ ଏବଂକାରଂ ।

କାହ୍ନୁପା ଏବଂକାର ତତ୍ତ୍ୱ ସମ୍ପର୍କରେ ଅନ୍ୟତ୍ର କହିଛନ୍ତି ଯେ—ଏବଂକାର ଜେ ବୁଜ୍ଝିଅଉ ତେ ବୁଜ୍ଝିଅଉ ସଅଲ ଅଶେଷ (ଦୋହା-୨୯) ।
[ଦ୍ରଷ୍ଟବ୍ୟ-The Mystic Significance of Evam—G. N. Kaviraj, Jha Research Institute Journal, Vol. II, Pt. I 1944].

ସହଜ ନଳନୀବନ :—ମହାସୁଖପଦ୍ମ । ନାଭିସ୍ଥ ନିର୍ମାଣଚକ୍ରରେ ପଦ୍ମ ୬୪ ଦଳ, ହୃଦୟସ୍ଥ ଧର୍ମଚକ୍ରରେ ପଦ୍ମ ୩୨ ଦଳ, କଣ୍ଠସ୍ଥ ସମ୍ଭୋଗଚକ୍ରରେ ପଦ୍ମ ୧୬ ଦଳ ଏବଂ ମସ୍ତିଷ୍କସ୍ଥ ସହଜଚକ୍ରରେ ପଦ୍ମ ୪ ଦଳ । ଦ୍ରୁ. ପଣ୍ଡୁ ତନ୍ତୁ, ତହି ମୃଣାଳ ଥିଅ ମହାସୁହ ବାସେ (କାହ୍ନୁ-ଦୋହା ୫) ।

ତଥତା :—ଶବ୍ଦଟିର ଆକ୍ଷରିକ ଅର୍ଥ 'ତାହା', 'ସେଇରକମ', (thatness) । ମହାଯାନ ବୌଦ୍ଧଦର୍ଶନରେ ଏହା ଏକ ପ୍ରଧାନ ତତ୍ତ୍ୱରୂପେ ଗୃହୀତ । ବିଖ୍ୟାତ ବୌଦ୍ଧଦାର୍ଶନିକ ଅଶ୍ୱଘୋଷ ତଥତାବାଦର ପ୍ରତିଷ୍ଠା କରିଥିଲେ । ବସ୍ତୁତଃ ଏହା ଶୂନ୍ୟର ନାମାନ୍ତର । ବେଦାନ୍ତର 'ନେତି' ସହିତ ଏହା ତୁଳନୀୟ ହୋଇପାରେ । ଦର୍ଶନରେ ଏହା ମୌଳିକ ସ୍ୱଭାବ ବା ବିଶୁଦ୍ଧ ପ୍ରକୃତିକୁ ବୁଝାଏ । ସାଧନାକ୍ଷେତ୍ରରେ ଏହାର ଅର୍ଥ ପ୍ରଜ୍ଞା ପାରମିତାଅବସ୍ଥା । Christmas Humphrey କୃତ A Popular Dictionary of Budhsim [London, 1962] ରେ ଲେଖାଅଛି—"It can not be called the one as distinct from the many, for it is not distinct from anything. Nothing can be denied or affirmed concerning it, It can only be understood

by realising that one can neither find it by searching nor lose it by trying to separate oneself from it."

**ଷଡ଼ଗତି** :—ଅଣ୍ଡଜା ଜରାୟୁଜା ଉପପାଦୁକାଃ ସଂସ୍ୱେଦଜା ଦେବାସୁରାଦି ପ୍ରକୃତିକାଃ ଷଡ଼ଗତି ।

**ଦଶବଳ ରତ୍ନ** :—ବୈଶାରଦ୍ୟ ପ୍ରଭୃତି ଦଶଗୁଣଯୁକ୍ତ ଜିନରତ୍ନ, ତଥାଗତରତ୍ନ । ସାଧକ ଦଶଦିଗ ରୁଦ୍ଧ କରିବାକୁ ଦଶବୁଦ୍ଧ କଳ୍ପନା କରେ । ବୁଦ୍ଧ ଦଶ ବିଶିଷ୍ଟ ଶକ୍ତିର ଅଧିକାରୀ ଥିଲେ । ସେହି ଦଶ ବଳ ଦଶ ଦିଗରେ ବିସ୍ତୃତ ହୋଇଥିବା କଳ୍ପନା କରାଯାଏ । (ବିସ୍ତାରିତ ବିବରଣୀ ପାଇଁ ଦ୍ରଷ୍ଟବ୍ୟ—Buddhist Dicrionary—Nyana Tiloka, Colombo 1950, 37.)

ଷଡ଼ଗତି···ବୁଦ୍ଧ—ଭୂଃ ପର ଅପ୍‌ପାଣ ନ ଜାଣନ୍ତି ବୁଦ୍ଧ ସକଳ ନିରନ୍ତରବୁଦ୍ଧ, ତିହୁଅଣ ନିମ୍ମଳ ପରମପଅ ଚିତ୍ତ ସହାବେଁ ସୁଦ୍ଧ (ଦୋହା-୧୩-ତିଲୋପା, ବାଗ୍‌ଚୀ)

## ନ ୧୦. (ଡୋମ୍ବୀ-ଚର୍ଯ୍ୟା)

ରାଗ-ଦେଶାଖ

**ମୂଳ:—**

ନଗର ବାହ୍ଣିରେ ରେ ଡୋମ୍ବି ତୋହୋର କୁଡ଼ିଆ ।
ଛୋଇ ଛୋଇ ଜାହ୍ନ ସୋ ବ୍ରାହ୍ମଣ ନାଡ଼ିଆ ।। ୧ ।।
ଆଲେ ଡୋମ୍ବି ତୋଏ ସମ କରବେ ମୋ ସାଙ୍ଗ ।
ନିଘିନ କାହ୍ନ କାପାଳି ଜୋଇ ଲାଙ୍ଗ ।। ଧ୍ରୁ ।।
ଏକସୋ ପଦୁମା ଚୌଷଠି ପାଖୁଡ଼ୀ ।
ତହିଁ ଚଢ଼ି ନାଚଅ ଡୋମ୍ବୀ ବାପୁଡ଼ୀ ।। ୨ ।। ଧ୍ରୁ ।।
ହାଲୋ ଡୋମ୍ବୀ ତୋ ପୁଛମି ସଦଭାବେ ।
ଆଇସସି ଜାସି ଡୋମ୍ବୀ କାହାର ନାବେଁ ।। ୩ ।। ଧ୍ରୁ ।।
ତାନ୍ତି ବିକଣଅ ଡୋମ୍ବୀ ଅବର ନା ଚଙ୍ଗେଡ଼ା ।
ତୋହୋର ଅନ୍ତରେ ଛାଡ଼ି ନଡ଼ ପେଡ଼ା ।। ୪ ।। ଧ୍ରୁ ।।
ତୁଲୋ ଡୋମ୍ବୀ ହାଉଁ କପାଳୀ ।
ତୋହୋର ଅନ୍ତରେ ମୋ ଏ ଘେଣିଲ ହାଡ଼େର ମାଳୀ ।। ୫ ।। ଧ୍ରୁ ।।
ସରୋବର ଭାଞ୍ଜିଅ ଡୋମ୍ବୀ ଖାଅ ମୋଲଣ ।
ମାରମି ଡୋମ୍ବୀ ଲେମି ପରାଣ ।। ୬ ।। ଧ୍ରୁ ।।

**ପାଠାନ୍ତର :—**

୧. (କ, ପୁନ) ବାଣହିରେ (କା, ଖ, ଗ, OBLT) ବାହିର, (ଘ) ବାହିରେ ଡୋମ୍ବି ୨. (ଘ, ପୁନ) ଛଇ ଛୋଇ (କା,ଖ,ଗ) ଜାହ ସୋ, (ପୁନ) ଯାଇ ସୋ, (ଘ,OBLT) ଯାଇସି (କା, ଘ, ପୁନ) ବାହ୍ମ ନାଡ଼ିଆ ୩. (ଙ) ଅଲୋ (କ, ପୁନ, ଘ) କରବେ ମ, (କା, ଖ, ଗ) କରବ ମ ୫. (ଖ, ଘ) ପଦମା ୬. (ଖ) ନାଚଇ ୭. (ଙ) ହୁଷଲୋ ୯. (କ, ଘ, ପୁନ) ଚଙ୍ଗତା (ଖ) ଅବର ମୋ ଚ୍ଙ୍ଗିତା ୧୦. (କ, ପୁନ) ନଢ଼

ଏଷ୍ଟା (ଘ OBLT) ନଢ଼ ଏଢ଼ା ୧୧. (ଙ) ଢ଼ଉଁ ୮. (କ,ଘ) ଘଲଲ (ଖ) ଅନ୍ତର···
ଘାଲଲ (ପୁନ) ମୋଏ ଢଲଲ (କା,ଗ) ହ୍ଲାଢ଼େର ୧୩. ଢ, ଖ, ଟ, ଘ. ପୁନ) ହରବସ
(ପୁଣ୍ଣ ରେ ଏହ୍ଲା ଡୋମ୍ବି ପା ନାମରେ ଦ୍ରୁଦଣ୍ଡ କଲୁ ହ୍ରକାଧାରେ କାହ୍ନୁପା ନାମରେ ଅଛୁ ।)

## ଆଧୁନିକ ରୂପାନ୍ତର:

ନଗର ବାହରେ ରେ ଡୋମ୍ବି ! ତୋହର କୁଡ଼ିଆ
ଛୁଇଁ ଛୁଇଁ ଯାଏ ସେ ବ୍ରାହ୍ମଣ-ନାଣ୍ଡିଆ ।
ଅଲେ ଡୋମ୍ବି, ତୋର ସଙ୍ଗ କରିବ ମୁଁ ସାଙ୍ଗ ।
ନିର୍ଘୃଣ କାହ୍ନୁ କପାଳୀ ଯୋଗୀ-ଲଙ୍ଗ ।
ଏକ ସେ ପଦ୍ମ ଚୌଷଠୀ ପାଖୁଡ଼ା
ଚଢ଼ି ଚଢ଼ି ନାଚଇ ଡୋମ୍ବୀ ବାପୁଡ଼ୀ ।
ଆଲେ ଡୋମ୍ବି, ତୋତେ ପୁଛଇ ସଦଭାବେ
ଆସୁ ଯାଉ ଡୋମ୍ବି, କାହାର ନାବେଁ ?
ତନ୍ତ୍ର (ଅନ୍ତ) ବିକଇ ଡୋମ୍ବୀ ଆବର ନା ଚଙ୍ଗୁଡ଼ା
ତୋହର ଅନ୍ତରେ (ଅର୍ଥରେ) ଛାଡ଼ିଲ ନଟ-ପେଡ଼ା ।
ତୁ ଲେ ଡୋମ୍ବୀ ମୁଁ କପାଳୀ
ତୋହର ଅନ୍ତରେ ମୁଁ ଘେନିଲି ହାଡ଼ର ମାଳ ।
ସରୋବର ଭାଙ୍ଗି ଣ ଡୋମ୍ବୀ ଖାଅ ମୃଣାଳ
ମାରମି ଡୋମ୍ବୀ ନେମି ପରାଣ ।

## ଭାବ୍ୟ ଅର୍ଥ:—

ଡୋମ୍ବି ! ନଗର ବାହାରେ ତୋର କୁଡ଼ିଆ । ତୋର ପ୍ରେମଲାଳସୀ ନଣ୍ଡା ବ୍ରାହ୍ମଣମାନଙ୍କୁ ତୁ କେବଳ ଛୁଇଁ ଛୁଇଁ ଯାଉ ସିନା, ଅନ୍ତରଙ୍ଗ ପ୍ରେମ ପ୍ରଦାନ କରୁନା । ଆଲେ ଡୋମ୍ବୀ ! ତୋ ସହିତ ବନ୍ଧୁତା କରିବାକୁ ମୋର ଭାରି ଆଗ୍ରହ । ଦେଖ୍, ମୁଁ ଜଣେ ଲଜ୍ଜାହୀନ ବିରକ୍ତ ଉଲଗ୍ନ କାପାଳିକ ଯୋଗୀ । ମୁଁ ତୋରି ସ୍ତରର ଲୋକ । ମୁଁ ଜାତ୍ୟାଭିମାନୀ ବ୍ରାହ୍ମଣ ନୁହେଁ କି ସେମାନଙ୍କ ପରି ସାମୟିକ କାମ-ସୁଖ-ଲାଭ-ଲାଳସାରେ ତୋର ପ୍ରଣୟ-ପ୍ରାର୍ଥୀ ହେଉନାହିଁ । ତୁ ମତେ ଏକ ଅନ୍ତରଙ୍ଗ ପ୍ରେମିକରୂପେ ଗ୍ରହଣ କର । ଡୋମ୍ବି, ତୁ ଏଇ ୬୪ ପାଖୁଡ଼ାଯୁକ୍ତ ପଦ୍ମ ଉପରେ ନୃତ୍ୟ କରୁଛୁ । ତୋର ଏଇ ପଦ୍ମବନରେ କ୍ରୀଡ଼ାରତ ମୂର୍ତ୍ତିଟି ବଡ଼ ରମଣୀୟ । ଆଲେ ଡୋମ୍ବି, ତତେ ମୋ ରାଣ, ସତ କରି କହିବୁ, ତୁ କପରି ପୋଖରୀ ମଝିରେ ସେଇ ପଦ୍ମବନକୁ ଯାଉଛୁ ? ଆଉ କିଣ କିଏ ତୋର ପ୍ରେମିକ

ଅଛ କି ଯାଉ ନୌକାରେ ତୁ ଯା ଆସ କରୁଛୁ ?···ଡୋମ୍ବୀ, ତୋର କୁଳଦେବତା ବାଉଁଶ ଅନ୍ତ ଓ ଗୁଙ୍ଗୁଡ଼ା ବିକିବା ଗୁଡ଼ି ଦେ । ମୁଁ ବି ତୋ ପାଇଁ ମୋର ନାଟ ଦେଖାଇବା ବେବୃସା ଛାଡ଼ିଦେଇଛୁ । ତୁ ଡୋମ୍ବୀ, ଅସ୍ପୃଶ୍ୟା ଡୋମ-କନ୍ୟା, ମୁଁ ବି ଜାତିକୁଳବିବର୍ଜିତ କାପାଳିକ ଏଇ ଦେଖ୍, ବେକରେ ହାଡ଼ର ମାଳ ପିନ୍ଧିଛି । ଏସବୁ ଖାଲି ତୋରି ପାଇଁ । ମୁଁ ଯେତେ ତୋ ମୋ ଭିତରେ କିଛି ବିଭେଦ ନ ରହୁ । ଆହା, ଏଇ ଯେ ପୋଖରୀ ଭିତରେ ତୁ ନାଚକୁଦ କରୁଛୁ, କଅଁଳ ମୃଣାଳ ଖାଉଛୁ, ଏଇ ଦୃଶ୍ୟ କି ସୁନ୍ଦର, କେଡ଼େ ଲୋଭନୀୟ ! ଡୋମ୍ବି, ତୁ ମତେ ଗ୍ରହଣ କର । ନଚେତ୍ ମୁଁ ପ୍ରାଣ ରଖିବି ନାହିଁ ।

## ଗୁହ୍ୟ ଅର୍ଥ:—

ତୃପାଦି ବିଷୟ ସମୂହର ବାହାରେ ଇନ୍ଦ୍ରିୟ ଅଗୋଚର ମହାସୁଖଚକ୍ରରେ ଅସ୍ପୃଶ୍ୟ ପରିଶୁଦ୍ଧାବଧୂତି ନୈରାତ୍ମା ଅବସ୍ଥାନ କରନ୍ତି । ମଣିମୂଳରେ ବିରମାନନ୍ଦରେ ଶୁକ୍ରସ୍ୱରୂପ ସମ୍ବୃତି ବୋଧିଚିତ୍ତକୁ କେବଳ ସ୍ପର୍ଶ କରନ୍ତି ଅର୍ଥାତ୍ ତାହା ସହିତ ସମ୍ମିଳିତ ହୁଅନ୍ତି ନାହିଁ । କାହ୍ନୁପା ସେହି ନୈରାତ୍ମା ଦେବୀଙ୍କୁ ସମ୍ବୋଧନ କରି କହୁଛନ୍ତି ଯେ ତୁମର ଓ ମୋର ସ୍ୱଭାବ ସମାନ । ମୁଁ ମଧ୍ୟ ମହାସୁଖ ପାଳନ କରିବା ଧର୍ମ ଗ୍ରହଣ କରି ଲଜ୍ଜାଦି ଅଭିମାନ ପରିତ୍ୟାଗ କରିଛି । ତୁମର ସାହଚର୍ଯ୍ୟରେ ମୁଁ ପ୍ରଜ୍ଞୋପାୟାତ୍ମିକା ମହାମୁଦ୍ରାସିଦ୍ଧି ଲଭକରିବି । ନିର୍ମାଣଚକ୍ରରେ ୬୪ ଦଳଯୁକ୍ତ ପଦ୍ମ ବିକଶିତ । ତହିଁରେ ସେ ନୈରାତ୍ମା ଏକ ରସରେ ନୃତ୍ୟ କରୁଛ । ନୈରାତ୍ମାଦେବୀ ! ତୁମେ କେବେ ତାହାର ସମ୍ବୃତି ବୋଧିଚିତ୍ତ ମାର୍ଗରେ ଯାତାୟାତ କରନାହିଁ । ତୁମେ ପରିଶୁଦ୍ଧାବଧୂତିକା ରୂପ ଗ୍ରହଣ କରି ଅବିଦ୍ୟା ଓ ବିଷୟାଶ୍ରୟ ପରିତ୍ୟାଗ କରିଛ । ମୁଁ ମଧ୍ୟ ସାଂସାରିକ ମାୟାବନ୍ଧନ ଛିନ୍ନ କରିଛି । ତୁମେ ଡୋମ୍ବୀ ରୂପିଣୀ ନୈରାତ୍ମା, ମୁଁ କାପାଳିକ ରୂପେ ତୁମର ସୁଖ ପାଳିବାକୁ ସମର୍ଥ ଏବଂ ତମ ପାଇଁ ଷଟ୍ ତଥାଗତ ଚକ୍ରୀକୁଣ୍ଡଳକଣ୍ଠିକାଦି ଗ୍ରହଣ କରି ବାହ୍ୟ ମନ୍ତ୍ରତନ୍ତ୍ର ନିରପେକ୍ଷ ଭାବରେ ବିହରଣ କରୁଛି । ତୁମେ ନୈରାତ୍ମାଦେବୀ ଅପରିଶୁଦ୍ଧାବଧୂତିକା ରୂପରେ ଯୋଗୀର କାୟା ବିକ୍ଷୁବ୍ଧ କରି ବୋଧି ଚିତ୍ତକୁ ବିନଷ୍ଟ କର । ମୁଁ ତୁମର ସେହି ଅପରିଶୁଦ୍ଧ ରୂପକୁ ବିନାଶ କରି ଚିତ୍ତକୁ ଅବିଦ୍ୟା କବଳରୁ ରକ୍ଷାକରିବି ।

## ବିଶେଷ ଅର୍ଥ:—

ଡୋମ୍ବୀ—ସହଜଯାନୀସିଦ୍ଧମାନଙ୍କ ଗୁହ୍ୟସାଧନା ମୈଥୁନ-ସାଧନା ବା ପ୍ରଜ୍ଞୋପାୟ ଯୁଗନଦ୍ଧ ସାଧନା । ସୁତରାଂ ଏମାନଙ୍କ ସାଧନାରେ ନାରୀଚର୍ଯ୍ୟା ପରିଲକ୍ଷିତ ହୁଏ । ଯେଉଁ ନାରୀ ତାନ୍ତ୍ରିକ ସାଧନାରେ ସହସାଧିକା ହୁଏ, ତାକୁ ମୁଦ୍ରା କୁହାଯାଏ । ସାଧକ ହଠଯୋଗ ଦ୍ୱାରା ଶ୍ୱାସରୋଧ ପୂର୍ବକ ମୁଦ୍ରାସହ ସମାଗମ କରି ଚିତ୍ତ ବିଶୋଧନ କରନ୍ତି । ମୁଦ୍ରାରେ

ସ୍ତନଦ୍ୱୟ ସ୍ଥାପିତ କରି ବଜ୍ରକୁ ଊର୍ଦ୍ଧ୍ୱମୁଖ କରି ବିଭିନ୍ନ ଚକ୍ରରେ ଧାରଣ କରନ୍ତି । ମୁଦ୍ରାର ଆଲିଙ୍ଗନରେ ସାଧକ ମଧ୍ୟରେ ବଜ୍ରାବେଶ ଜାଗ୍ରତ ହୁଏ ।

ସିଦ୍ଧମାନେ ନୈରାତ୍ମାଦେବୀଙ୍କୁ ମହାମୁଦ୍ରାରୂପେ ପରିକଳ୍ପିତ କରିଛନ୍ତି । ସାଧକ ନିଜର ସମକକ୍ଷ ଯୋଗିନୀଙ୍କୁ ମହାମୁଦ୍ରା ସ୍ୱରୂପରେ ଗ୍ରହଣ କରି ତା ସହିତ ଅଭିଷିକ୍ତ ହୋଇ ମଣ୍ଡଳଚକ୍ରରେ ପ୍ରବେଶ କରନ୍ତି । ବାହ୍ୟମୁଦ୍ରା କେବଳ ନୈରାତ୍ମାର ଏକ ପ୍ରତିଭୂ ସ୍ୱରୂପ ଗୃହୀତ ହୋଇଥାଏ । ସାଧକ ଦୈହିକ ସୁଖାନୁଭୂତି ବିରହିତ ହୋଇ ତା ସହିତ ସଙ୍ଗମ କରେ ।

ସିଦ୍ଧ-ସାହିତ୍ୟରେ ଦେଖାଯାଏ ଯେ ସାଧାରଣତଃ ନିମ୍ନସ୍ତରର ନାରୀମାନେ ମୁଦ୍ରାରୂପେ ଗୃହୀତ ହୋଇଛନ୍ତି । ଯଥା—ଡୋମ୍ବୀ, ଚଣ୍ଡାଳୀ, ଶବରୀ, ଶୁଣ୍ଡିନୀ ଇତ୍ୟାଦି । ଡୋମ୍ବୀ ଏମାନଙ୍କ ମଧ୍ୟରେ ପ୍ରଧାନ । ଇଏ ପରିଶୁଦ୍ଧାବଧୂତୀ ନୈରାତ୍ମା । ଚଣ୍ଡାଳୀ ପରିଶୁଦ୍ଧ ହେଲେ ଡୋମ୍ବୀ । ହେବଜ୍ରତନ୍ତ୍ରାନୁସାରେ ଡୋମ୍ବୀ ବାମ୍ଭୂନ୍ଦର ଅଧିଷ୍ଠାତ୍ରୀ ଦେବୀ [ବାମ୍ଭୂଃ ଡୋମ୍ବୀ ପ୍ରକୀର୍ତ୍ତିତା] । ପଣ୍ଡିତ ହରପ୍ରସାଦ ଲେଖିଯାଇଛନ୍ତି:—"ସହଜ-ମତେ ତିନୋଟି ପଥ ଆଛେ, ଅବଧୂତୀ, ଚଣ୍ଡାଲୀ, ଡୋମ୍ବୀ ବା ବଙ୍ଗାଲୀ । ଅବଧୂତୀତେ ଦ୍ୱୈତଜ୍ଞାନ ଥାକେ, ଚଣ୍ଡାଲୀତେ ଦ୍ୱୈତଜ୍ଞାନ ଆଛେ ବଲିଲେଓ ହୟ, ନା ବଲିଲେଓ ହୟ, କିନ୍ତୁ ଡୋମ୍ବୀତେ କେବଳ ଅଦ୍ୱୈତ; ଦ୍ୱୈତେର ଭାନ୍ଧୀ ନାଇ ।" [ ବୌ. ଗା. ଦୋ, ପୃ. ୧୨ ] ମାତ୍ର ଡ. ଶଶିଭୂଷଣ ଦାଶଗୁପ୍ତ ପ୍ରମୁଖ ଏହି ତତ୍ତ୍ୱର ପ୍ରାମାଣିକତା ସମ୍ପର୍କରେ ସନ୍ଦେହ ପ୍ରକାଶ କରିଛନ୍ତି ।

ସିଦ୍ଧକବିମାନଙ୍କ ମଧ୍ୟରେ କାହ୍ନୁପାଙ୍କ ବ୍ୟତୀତ ଧାମପାଦ (ନ.୪୭) ଓ ଡୋମ୍ବୀପାଦ (ନ. ୧୪) ମଧ୍ୟ ଡୋମ୍ବୀର ଅବତାରଣା କରିଛନ୍ତି ।

## ସନ୍ଧ୍ୟା ଅର୍ଥ:—

ଡୋମ୍ବୀ—ଅବଧୂତିକା (କୃଷ୍ଣାଚାର୍ଯ୍ୟ ହେବଜ୍ରପଞ୍ଜିକା ଯୋଗରତ୍ନମାଳା ଟୀକାରେ ଏହାର ବ୍ୟାଖ୍ୟା କରି ଲେଖିଛନ୍ତି ଯେ "ଇନ୍ଦ୍ରିୟାଣାଂ ଅଗୋଚରତ୍ୱାତ୍" ଏହା ଡୋମ୍ବୀ ସଦୃଶ । କାରଣ "ଅସ୍ପର୍ଶା ଭବତି ଯସ୍ମାତ୍ ତସ୍ମାତ୍ ଡୋମ୍ବୀ ପ୍ରକଥ୍ୟତେ") ହେବଜ୍ରତନ୍ତ୍ରର କୁଳକୁଣ୍ଡଳିନୀ ସହିତ ତୁଳନୀୟ ।

ନଗର—ରୂପାଦି ପଞ୍ଚବିଷୟ ଜଡ଼ିତ ସ୍ଥୂଳଶରୀର । ତୁ: ଦେହ ନଅରୀ (ଚର୍ଯ୍ୟା ୧୧) ।

କୁଡ଼ିଆ—ମହାସୁଖଚକ୍ର ।

ବ୍ରାହ୍ମଣ ନାଡ଼ିଆ—ଅସଂପ୍ରଦାସ୍ଥ ଯୋଗୀମାନଙ୍କର ଚପଳ ଚିତ୍ତ ବା ସଂବୃତ୍ତି ବୋଧିଚିତ୍ତ ।

୬୪ପାଖୁଡ଼ା ପଦ୍ମ—ନାଭିସ୍ଥଳସ୍ଥ ନିର୍ମାଣଚକ୍ର । ଏଠାରେ ନୈରାତ୍ମା ଚଣ୍ଡାଳୀରୂପେ ସଂସ୍ଥିତା (ଚଣ୍ଡାଳି ଜ୍ୱଳିତା ନାଭୌ-ହେବଜ୍ର) ଏହି ଚଣ୍ଡାଳୀର ପରିଶୁଦ୍ଧ ରୂପ ଡୋମ୍ବୀ । [ ଦ୍ର: ObRC, P. 100 ]

ନାବ—ସଂବୃତ୍ତି ବୋଧିଚିତ୍ତ ।

କାନ୍ତୀ—ଭଗଂ ପଦ୍ମସ୍ଥାନଂ ଅବିଦ୍ୟା ରୂପଂ । "Net-work of false mental construction"—Dr. S. B. Dasgupta [ObRC]

ଗୃଙ୍ଗେଡ଼ ।—ତଥ୍ୟ ପଲ୍ଲବ ବିଷୟାଶ୍ରୟ । "Superstituous mental comp-lexes—Dr. Dasagupta [ObRC]

କାପାଳିକ—କଂ ସୁଖଂ ପାଳୟିତୁଂ ସମର୍ଥ । (ହେବଜ୍ର ଯୋଗରତ୍ନମାଳା-"କଂ ମହାସୁଖଂ ପାଳୟତୀତି କାପାଳିକଃ") ।

ନଟପେଡ଼ା—ନଷ୍ଟବସ୍ତୁ ସଂସାରପେଟକ ।
ହାଡ଼ର ମାଳ—ଷଟ୍‌ତଥାଗତ ଚକ୍ରୀକୁଣ୍ଡଳ କଣ୍ଠିକାଦି ।
ସରୋବର—କାୟ ପୁଷ୍କର ।
ମୃଣାଳ—ଶୁକ୍ରରୂପ ବୋଧିଚିତ୍ତର ସଂବୃତ୍ତି ଅବସ୍ଥା ।

## ନଂ. ୧୧—(ଡୋମ୍ବୀ—ହେରୁକ ଚର୍ଯା)

### ରାଗ—ପଟ୍ଟମଞ୍ଜରୀ

**ମୂଳ:—**

ନାଡ଼ି ଶକ୍ତି ଦିଢ଼ ଧରିଅ ଖଟେ।
ଅନହ ଡମରୁ ବାଜଇ ବୀର ନାଦେ ॥ ୧ ॥
କାହ୍ନ କପାଳୀ ଯୋଗୀ ପଇଠ ଆଚାରେ।
ଦେହ ନଅରୀ ବିହରଇ ଏକାକାରେଁ ॥ (ଧ୍ରୁ) ॥
ଆଲି କାଲି ଘଣ୍ଟା ନେଉର ଚରଣେ।
ରବିଶଶିକୁଣ୍ଡଳ କିଉ ଆଭରଣେ ॥ ୨ ॥ (ଧ୍ରୁ)
ରାଗଦେଷ ମୋହ ଲଇଅ ଛାର,
ପରମ ମୋଖ ଲବଏ ମୁତ୍ତିହାର ॥ ୩ ॥ (ଧ୍ରୁ)
ମାରିଅ ସାସୁ ନଣନ୍ଦ ଘରେ ଶାଳୀ,
ମାଅ ମାରିଆ କାହ୍ନ ଭଇଲ କବାଳୀ ॥ ୪ ॥ (ଧ୍ରୁ)

**ପାଠାନ୍ତର:—**

୧. (କ,ଘ,ସୁକ) ଦିଟ (ଖ, ହକାଧା) ଧରିଆ ଖାଟେ, (ଚ) ଖାଟେ ୨. (ବ,ଘ, ସୁକ) ବାଜଏ (ହକାଧା) ବିରନାଟେ, (ଚ) ବୀରନାଦେ (?ବ୍‌ଟେ) ୩. (କା,ଗ,ସୁକ, ObRC) ଆଗ୍ଧରେ (ଘ) ପଇଠଥା ଗୃତର ୪. (କ,ଖ,ଘ, ସୁକ) ଏକାରେଁ (ଚ) ଏକା (କା)ରେଁ ୫. (ଘ) ଘଣ୍ଡା ୬. (ଖ) ଲଇଆ ୮. (ଖ) ଲଭଇ (କା, ObRC), ମୁଣ୍ଡିହାର ୯. (ଖ) ମାଶ ସାସୁ ୧୦. (ଖ) ମାଅମାଣ (କ,ଖ,ଘସୁକ, ObRC) ଭଇଅ।

ଛନ୍ଦପାତ ଦୃଷ୍ଟିରୁ ୨ୟ ଧାଡ଼ିରେ 'ବୀରନାଟେ' ପାଠ ଗ୍ରହଣୀୟ ମନେହେଉଥିଲେ ମଧ୍ୟ ତିବ୍ବତୀ ଅନୁବାଦ ଓ ସଂସ୍କୃତ ବୃତ୍ତିରେ 'ବୀରନାଦ' ଥିବାରୁ ତାହା ଗ୍ରହଣ କରାଗଲା ନାହିଁ।

## ଆଧୁନିକ ରୂପାନ୍ତର:—

ନାଡ଼ି-ଶକ୍ତି ଦୃଢ଼ ଧରିଣ ଖଟେ (ଆକଟେ)
ଅନହ୍ୱା ଡମ୍ବରୁ ବାଜଇ ବୀରନାଦେ ।
କାହ୍ନୁ କପାଳୀ ଯୋଗୀ ପ୍ରବିଷ୍ଟ ଆଚ୍ଚାରେ
ଦେହ-ନଅରୀ ବିହରଇ ଏକାକାରେ ।
ଆଲିକାଲି ଘଣ୍ଟା ନେପୁର୍ ଚରଣେ
ରବିଶଶୀ କୁଣ୍ଡଳ କରି ଆଭରଣେ ।
ରାଗ, ଦ୍ୱେଷ, ମୋହ ଲାଇଣ ଛାର
ପରମ ମୋକ୍ଷ ଲଭଇ ମୋତି-ହାର ।
ମାରିଣ ଶାଶୁ ନଣନ୍ଦ ଘରେ ଶାଲୀ
ମାଆ ମାରିଣ କାହ୍ନୁ ହୋଇଲ କପାଳୀ ।

## ସରଳାର୍ଥ:—

ନାଡ଼ି-ଶକ୍ତିକୁ ପର୍ଯ୍ୟଙ୍କ-ବନ୍ଧନରେ ଦୃଢ଼ରୂପେ ପ୍ରତିଷ୍ଠା କରି ଅର୍ଥାତ୍ ହଠଯୋଗ ଦ୍ୱାରା ଶ୍ୱାସପ୍ରଶ୍ୱାସବାହୀ ବାମଦକ୍ଷିଣ ନାଡ଼ିଦ୍ୱୟ ରୁଦ୍ଧକରି, ମଧ୍ୟମ ନାଡ଼ି ଅବଧୂତିକାରେ ପ୍ରାଣବାୟୁ ଉତ୍ତୋଳନ ପୂର୍ବକ ମସ୍ତକସ୍ଥିତ ଶୂନ୍ୟଚକ୍ରରେ ଧାରଣ କରି, ସିଦ୍ଧ କାହ୍ନୁପାଦ କାପାଳିକ ରୂପେ ସାଧନାରେ ପ୍ରବୃତ୍ତ ହୋଇଛନ୍ତି । କାପାଳିକ ଯେପରି ଡମ୍ବରୁ ବଜାଇ ନଗରୀ ମଧ୍ୟରେ ନିର୍ବିକାର ଚିତ୍ତରେ ଭ୍ରମଣ କରୁଥାଏ, ସେ ସେହିପରି ଅନାହତ ନାଦ ଅନ୍ତରରେ ପ୍ରକଟିତ କରି ନିଜର ପିଣ୍ଡ-ବ୍ରହ୍ମାଣ୍ଡରେ ନିର୍ବିକଳ୍ପ ଭାବରେ ବିହାର କରୁଛନ୍ତି । କାପାଳିକର ପାଦରେ ଥାଏ ଘଣ୍ଟା ନୂପୁର, କର୍ଣ୍ଣରେ ଥାଏ କୁଣ୍ଡଳାଦି ଅଳଙ୍କାର । କାହ୍ନୁପା ସେପରି 'ଆଲି କାଲି' ଓ 'ରବିଶଶୀ'ଙ୍କୁ ନିଜର ଆୟତ୍ତାଧୀନ କରି ଭୂଷଣ ସ୍ୱରୂପ ଗ୍ରହଣ କରିଛନ୍ତି । କାପାଳିକର ଶରୀର ଭସ୍ମଲିପ୍ତ ହୋଇଥାଏ ଓ ଗଳାରେ ମୋତି-ହାର ଶୋଭିତ ହୋଇଥାଏ । କାହ୍ନୁପା ରାଗ, ଦ୍ୱେଷ, ମୋହାଦି ଶତ୍ରୁ ସମୂହ ଦଗ୍ଧ କରି ତାର ଭସ୍ମଲିପ୍ତ ହୋଇଛନ୍ତି ଓ ପରମ ନିର୍ବାଣ ରୂପକ ମୁକ୍ତାହାର ପରିଧାନ କରିଛନ୍ତି । କାପାଳିକ ଗୃହସଂସାର ପରିତ୍ୟାଗ କରି ଶାଶୁ, ନଣନ୍ଦ, ଶାଳୀ, ମାଆ ଆଦି ସ୍ୱଜନଙ୍କୁ ବର୍ଜନ କରିଥାଏ । କାହ୍ନୁପା ଶ୍ୱାସଇନ୍ଦ୍ରିୟ, ମାୟା ଆଦିଙ୍କୁ ବିନାଶ କରିଛନ୍ତି ।

ଏହି ଗୀତିକାରେ କାହ୍ନୁପା ପ୍ରକାଶ କରିଛନ୍ତି ଯେ ବାହ୍ୟ ବେଶଭୂଷା କାପାଳିକର ଲକ୍ଷଣ ନୁହେ । ତେଣୁ ବାହ୍ୟ ବେଶଭୂଷା ସହିତ ରୂପକ କରି ପ୍ରକୃତ କାପାଳିକର ଲକ୍ଷଣ କଣ ହେବା ବିଧେୟ, ତାହା ସେ ବର୍ଣ୍ଣନା କରିଛନ୍ତି । ଶେଷପଦର ଶ୍ଳେଷ ଚମତ୍କାର ଅର୍ଥ-ଦ୍ୟୋତକ ହୋଇଛି ।

## ବିଶେଷ ଅର୍ଥ:—

ନାଡ଼ିଶକ୍ତି—ଦେହଶନାଡି ମଧ୍ୟରେ ତିନି ନାଡି ପ୍ରଧାନ—ଲଳନା, ରସନା, ଅବଧୂତୀ।
ହେବଜ୍ରତନ୍ତ୍ର: ଲଲନା ପ୍ରଜ୍ଞାସ୍ୱଭାବେନ ରସନୋପାୟ ସଂସ୍ଥିତା—ଅବଧୂତୀ
ମଧ୍ୟଦେଶେ ତୁ ଗ୍ରାହ୍ୟଗ୍ରାହକବର୍ଜିତା।

ଖଟ୍ଟ—ପର୍ଯ୍ୟଙ୍କବନ୍ଧ ବା ଏକପ୍ରକାର ଯୋଗାସନ। ସନ୍ଧ୍ୟା ଅର୍ଥରେ ଖଟ୍ଟେ ବା ଶୂନ୍ୟଚକ୍ରରେ।
( ଶଙ୍ଖଦୁଲ୍ଲାହ—ମଣିମୂଳଚକ୍ର ଦ୍ର: ଚର୍ଯ୍ୟା-୪ ଟୀକା )।

ଆଲିକାଲି ଓ ରବିଶଶୀ – ବାମ ଦକ୍ଷିଣ ନାଡିଦ୍ୱୟର ନାମାନ୍ତର। ଏଠାରେ ଧ୍ୱନି ସହିତ ରୂପକ କରିବାପାଇଁ ଆଲିକାଲି ଓ କୁଣ୍ଡଳ ସହିତ ରୂପକ କରିବା ପାଇଁ ରବିଶଶୀ ପ୍ରୟୋଗ କରୁଯାଇଛୁ। ବସ୍ତୁତଃ ଅଲିକାଲି ଓ ରବିଶଶୀ ମଧ୍ୟରେ ପ୍ରଭେଦ ନାହିଁ। ଦ୍ରଷ୍ଟବ୍ୟ-ଚର୍ଯ୍ୟା-୬ ଟୀକା ଓ ଡ, ବାଗ୍‌ଚୀଙ୍କ ପ୍ରବନ୍ଧ "Some technical terms of The Tantras : Candra Surya (Studies in Tantras),

ଅନାହତ—ହଠଯୋଗ ସାଧନାରେ ପ୍ରବୃତ୍ତ ସାଧକ ନିଶ୍ଚଳ ଅବସ୍ଥାରେ ନିଜ ଅନ୍ତର ମଧ୍ୟରେ ଏକ ସ୍ୱତଃଜାତ ଧ୍ୱନି ଶୁଣିପାରେ। ତାହା ଅନାହତ ନାଦ। "ଅନାହତ-ମିଢ ଶୂନ୍ୟତା ଶବ୍ଦମ୍ (ଚର୍ଯ୍ୟା-୧୭ ଟୀକା) "ଶୂନ୍ୟତା ଧ୍ୱନିମିଢ" (ଚର୍ଯ୍ୟା—୧୭ ଟୀକା)। ଆପ୍ଟେ ତାଙ୍କର ସଂସ୍କୃତ ଇଂରାଜୀ ଅଭିଧାନରେ ଉଦ୍ଧାର କରିଛନ୍ତି—

ଶବ୍ଦୋବ୍ରହ୍ମସ୍ୱଃ ଶବ୍ଦୋହନାହତୋ ଯତ୍ର ଦୃଶ୍ୟତେ
ଅନାହତାଖ୍ୟଂ ତତ୍ପଦ୍ମଂ ମୁନିଭିଃ ପରିକୀର୍ତ୍ତିତମ୍।

(ବିଶେଷ ବିବରଣୀ ପାଇଁ ଦ୍ରଷ୍ଟବ୍ୟ ଲେଖକର "ଷଡଚକ୍ର" ପ୍ରବନ୍ଧ, ଅଭ୍ୟୁଦୟ, ୧୯୫୮ କିମ୍ବା 'ସମାଲୋଚନାର ଦିଗଦିଗନ୍ତ' ୧୯୭୧)

ରାଗ, ଦ୍ୱେଷ, ମୋହ—ରାଗ, ଦ୍ୱେଷ, ମୋହ ତିନି ଅଗ୍ନି। ଏହି ଅଗ୍ନି ନିର୍ବାପିତ କରିବା ଅର୍ଥ ନିର୍ବାଣ।
(ଦ୍ର: ମିଳିନ୍ଦପନ୍‌ହୋ) ( V. Trenckner, P. 323 )। ଏ ସମ୍ପର୍କରେ ଅଙ୍ଗୁତ୍ତର ନିକାୟରୁ (III, 55) Nyana Tiloka ତାଙ୍କ Buddhist Dictionaryରେ ଉଦ୍ଧାର କରିଥିବା ଅଂଶଟି ପ୍ରଣିଧେୟ—"Enraptured with lust (ରାଗ) enraged with anger (ଦ୍ୱେଷ) blinded

by delusion (ମୋହ), overwhelmed with mind ensnared, man aims at his own ruin, at the ruin of both parties, and he experiences mental pain and grief. But if lust, anger and delusion are given up man aims neither at his own ruin, nor at other's ruin nor at the ruin of both parties, and he experiences no mental pain and grief. This Nibbana visible in this life, immediate, inviting, attractive and comprehensible to the wise."

ସାସ୍ତୁ—ଶ୍ୱାସ
ନଣ୍ଡ—ନାନାବିଧ ଆନନ୍ଦଦାୟିନୀ ରଙ୍ଖ୍ୟାଡ ଲଦ୍ଧ୍ୟ ।
ଶାଳ—'ନଃସ୍ୱଶ୍ରୀକୃତ୍ୟ
ମାଥା—ମାୟା

## ନ ୧୨ (ନମ୍ବୂଲ-ଚର୍ଯ୍ୟା)

ରାଗ—ଭୈରବୀ

ମୂଳ—

କରୁଣା ପିହାଡ଼ି ଖେଲହୁଁ ନଅବଳ ।
ସଦଗୁରୁ ବୋହେଁ ଜିତେଲ ଭବବଳ ।। ୧ ।।

ଫିଟଉ ଦୁଆ ମାଦେସିରେ ଠାକୁର ।
ଉଆରି ଉଏସେଁ କାହ୍ନ ନଅଡ଼ ଜିଣଉର ।। ଧ୍ରୁ ।।
ପହିଲେ ତୋଡ଼ିଆ ବଡ଼ିଆ ମରାଡ଼ିଉ ।
ଗଅବରେଁ ତୋଡ଼ିଆ ପାଞ୍ଚଜନା ଘାଲିଉ ।। ୨ ।। (ଧ୍ରୁ)

ମତିଏଁ ଠାକୁରକ ପରିନିବିତା ।
ଅବଶ କରିଆ ଭବବଳ ଜିତା ।। ୩ ।। (ଧ୍ରୁ)

ଭଣଇ କାହ୍ନୁ ଅମ୍ହେ ଭାଲ ଦାନ ଦେହୁଁ ।
ଚଉଷଟ୍ଠି କୋଠା ଗୁଣିୟା ଲେହୁଁ ।। ୪ ।। (ଧ୍ରୁ)

ପାଠାନ୍ତର —

୧. (ଖ) ପୀଢ଼ିହ୍ନ, (ଘ) ପିଢ଼ି ୩, (ଖ) ଫିଟିଉ (ଘ) ଫାଟଉ (O.B.L.T.) ଦାସୁ (ନେପାଳୀ ଦାଉ : a throw of dice (ଖ) ଆଦେସି (J.D,L.) ମାରେସି (ଘ) ମା ଦେସିରେ ୪. (କ) ଉଆଣ ଉଏସ (ଖ) ଉଆର ଉଁଏସେଁ (ଘ) ଉଆର ଉଏସ ୫, (ଖ, O.B.L.T) ପହିଲେଁ ତୋଳିଆ, (କ,ଘ) ମରାଡ଼ିଉ (କ,ଗ, O.B.R.C. J D.L.) ମାରିଉ ୬, (ଖ,ଘ, O.B.R.C) ତୋଳିଆ (କ,ଖ,ଘ, ଘୋଲିଉ ୭,(ଖ,ଘ,) ପରିନେବିତ୍ତା, । ୮(ଖ) ଜିଣ୍ଣ ୯, (କ,ଖ) ଭଲଦାହ୍ନ, (ଘ) ଭଲଦାହୁ

## ଆଧୁନିକ ରୂପାନ୍ତର—

କରୁଣା ପୀଢ଼ରେ ଖେଳନ୍ତୁ ନ୍ୟାୟବଳ ।
ସଦଗୁରୁ ବୋଧେ ଜିଣିଲୁଁ ଭବବଳ ।
ଫିଟିଇ 'ଦୁଆ' ମାରିଦେଲାରେ ଠାକୁର
ଉଷର ଉଏଁ ସେ, କାହ୍ନୁ ନିକଟ ଜିନପୁର ।
ପହିଲେ ତୋଡ଼ି ବଡ଼ିଆ ମରାଇଲୁ
ଗଜବରେ ତୋଡ଼ିନେଇ ପାଞ୍ଚଜଣ ଘାଲି କଲୁଁ
ମନ୍ତ୍ରୀରେ ଠାକୁରକୁ ପରିନିବର୍ତ୍ତାଇଲୁଁ
ଅବଶ କରିଣ ଭବବଳ ଜିଣିଲୁଁ ।
ଭଣଇ କାହ୍ନୁ ଆମ୍ଭେ ଭଲ ଦାନ ଦେଉଁ
ଚଉଷଠି କୋଠା ଗଣାଇ ନେଉଁ ।

## ସରଳାର୍ଥ—

ଏହି ଗୀତିକାରେ ଦାବାଖେଳ ରୂପକ ସାହାଯ୍ୟରେ ସଂସାରଚକ୍ର କିପରି ଜୟ କରାଯାଇପାରେ, ତାହା ବର୍ଣ୍ଣିତ ହୋଇଛି । କାହ୍ନୁପା କହୁଛନ୍ତି ଯେ କରୁଣା ରୂପକ ପାଲରେ ଦାବା ଖେଳୁଁ, ସଦ୍‌ଗୁରୁ ଉପଦେଶ ଦ୍ୱାରା ସେ ଭବବଳ ଜୟ କଲେ । ଅପର ପକ୍ଷ ଦାନ ପକାଇ 'ଦୁଆ'କୁ ଫିଟଉଁ ଫିଟଉଁ ସେ ରଜା ଦ୍ୱାରା ତାହା ମାରିଦେଲେ । ଫଳରେ ରାସ୍ତା ପରିଷ୍କାର ହୋଇଗଲା—ତାହା ଆଗେଇ ଚାଲିଲା । ଏତେବେଳେ କାହ୍ନୁ ଅନୁଭବ କଲେ ଯେ ବିଜୟ ସ୍ଥଳରେ ଶୀଘ୍ର ପହଞ୍ଚିବାରେ ଆଉ ସନ୍ଦେହନାହିଁ । ତା ପରେ ପ୍ରଥମେ ସିପାହି ସବୁକୁ ମାରିଦେବାରୁ ଏବଂ ହାତୀ ଦ୍ୱାରା ପାଞ୍ଚଟି ଗୋଟିକୁ ଅକର୍ମଣ୍ୟ କରିଦେବାରୁ, ମନ୍ତ୍ରୀଦ୍ୱାରା ରଜା ପରାସ୍ତ ହେଲା । ଏହିପରି ଅପରୁ ପକ୍ଷର ସବୁ ଗୋଟି ଅବଶ କରି ଦେଇ ସେ ବିଜୟ ହାସଲ କଲେ । କାହ୍ନୁ କହନ୍ତି—ମୁଁ ଭଲ ଦାନ ପକାଏ ଓ ଦାବାପାଲର ଚଉଷଠି-ଘର ସହଜରେ ଦଖଲ କରିନିଏ ।

## ରୂପକାର୍ଥ—

କରୁଣା-ପୀଢ଼-ତାନ୍ତ୍ରିକ ବୌଦ୍ଧଧର୍ମରେ ଚରମ ଦୁଇଟି ମୌଳିକ ତତ୍ତ୍ୱ ସ୍ୱୀକୃତ—ଶୂନ୍ୟତା (ଜଗତର ଅସାରତା ଜ୍ଞାନ) ଓ କରୁଣା (ନିଖିଳ ଜଗତର ମୁକ୍ତି କାମନା,) ଏହି ଦୁଇଟିର ସମନ୍ୱୟ ଘଟିଲେ ବୋଧିଚିତ୍ତ ସମ୍ପାଦିତ ହୁଏ । ଏ ଦୁହିଙ୍କର ମିଳନ ହିଁ

ସୁରତନନ୍ଦ, ସମରସ, ମହାସୁଖ ବା ସହଜାନନ୍ଦ । ଏଠାରେ କରୁଣାକୁ ଡାବାଖୋଳର ପୀଠିକା ରୂପେ ଗ୍ରହଣ କରିବା ଦ୍ୱାରା ସମସ୍ତ ଦୋଷବର୍ଜିତ ସ୍ୱାଧିଷ୍ଠାନଚକ୍ର ବା କରୁଣାଭାବ ସମନ୍ୱିତ ଚକ୍ରକୁ ନିର୍ଦ୍ଦେଶ କରାଯାଇଛି ।

ନଅବଳ—ମନ୍ତ୍ରନୟ ଦ୍ୱାରା ଲବ୍‌ଧ ଚତୁର୍ଥାନନ୍ଦ ବଳ ।

ଭବବଳ—ରୂପାଦି ବିଷୟାଶ୍ରୟ ।

ଦୂଆ—ଆତ୍ମସଦ୍ଭାବ—ଲୋକଜ୍ଞାନ ଓ ଲୋକାଶ୍ରୟ । ଅବିଦ୍ୟା ଓ ବିଷୟାଶ୍ରୟ ।

ଠାକୁର—ଅବିଦ୍ୟାଚକ୍ର ବା ସମ୍ବୃତ୍ତି ବୋଧିଚକ୍ର ।

ଉଆର ଉଏସେ—ଉପକାରକ ଉପଦେଶ ଦ୍ୱାରା, ଗୁରୁ ଉପଦେଶଦ୍ୱାରା ।

ଜିନପୁର—ଦ୍ର: ଚର୍ଯ୍ୟା-୭ ଟୀକା ।

ବଡ଼ୁଆ—୧୬୦ ପ୍ରକୃତଦୋଷ । ଯଥା—୧ମ ଶୂନ୍ୟରେ କ୍ଷୁଧା, ତୃଷ୍ଣା, ବେଦନାଦି ୩୩ ଦୋଷ, ୨ୟ ଶୂନ୍ୟରେ ରାଗ, ଲୋଭ, ସତ୍ତ୍ୱତା ଆଦି ୪୦ ଦୋଷ, ୨ୟ ଶୂନ୍ୟରେ ଭ୍ରାନ୍ତି, ମାୟା, ଆଳସ୍ୟାଦି ୭ ଦୋଷ—ସର୍ବମୋଟ ଏହି ୮୦ ଦୋଷ । ଦିବାରାତ୍ରି ଅନୁସାରେ ଦ୍ୱିଗୁଣିତ ହୋଇ ୧୬୦ ଦୋଷ (O.R.C.P. 46)

ଗଜବର—ତଥତା ଜ୍ଞାନ ସମନ୍ୱିତ ଚକ୍ର ବା ବୋଧିଚକ୍ର ।

ପାଞ୍ଚଜନ—ପଞ୍ଚବିଷୟ ଗତ ପଞ୍ଚସ୍କନ୍ଧର ଅହଂକାରାଦି ଭୂଷଣ । (ଦ୍ର. ପଞ୍ଚବିସଅ ନାୟକରେ ବିପଖ କୋବ ନ ଦେଖି—ଚର୍ଯ୍ୟା—୧୭)

ମଢ—ପ୍ରଜ୍ଞାପାରମିତା ଅନୁଗାମୀ ବୁଦ୍ଧି ।

ଚଉଷଠି କୋଠା—ନିର୍ମାଣଚକ୍ର (ଦ୍ର: ଏକ ସୋ ପଦୁମା ଚୌଷଠୀ ପାଖୁଡ଼ୀ—ଚର୍ଯ୍ୟା-୧୦)

## ନ· ୧୩ (କୌୟାନ୍ଧା-ଚର୍ଯା)

ରାଗ—କାମୋଦ

**ମୂଳ :—**

ତିଶରଣ ଣାବୀ କିଅ ଅଠ କମାରୀ ।
ନିଅ ଦେହ କରୁଣ ଶୂନ ମେହେରୀ ॥ ୧ ॥

ତରିତା ଭବଜଲଧି ଜିମକରି ମାଅ ସୁଇନା ।
ମାଝ୍‌ବେଣୀ ତରଙ୍ଗ ମ ମୁନିଆ (ଧ୍ରୁ)
ପଞ୍ଚ ତଥାଗତ କିଅ କେଡୁଆଲ ।
ବାହଅ କାଅ କାହ୍ନିଲ ମାଆ ଜାଲ ॥ ୨ ॥ (ଧ୍ରୁ)

ଗନ୍ଧପରସରସ ଜଇସେଁ। ତଇସେଁ। ।
ଣିଦବିହୁଣେ ସୁଇନା ଜଇସୋ ॥ ୩ ॥ (ଧ୍ରୁ)
ଚିଅ କଣ୍‌ଣହାର ସୁଣତ ମାଙ୍ଗେ ।
ଚଲିଲ କାହ୍ନ ମହାସୁହ ସାଙ୍ଗେ ॥ ୪ ॥ (ଧ୍ରୁ)

**ପାଠାନ୍ତର—**

୧. (ଙ) ଅଠକୁମାର୍ଗ, (ଖ) ଅଠକ ମାଗ୍ର ୨. (କ,ଗ,ଘ, Ob.R.C.) କରୁଣା, (କ,ଗ, Ob. R. C.) ଶୂଣମେ ହେଲ୍ଲ ୩. (ଖ) ତଇଅ ଜମ ମାଅ ସୁଇଣା ୪. (କ,ଘ) ମଝ୍‌ (କ,ଗ) ତରଙ୍ଗମ (ଖ) ମୋ ୭. (କ,ଗ) ଗନ୍ଧପରସର ୮. (କ,ଘ, ObR.C.) ଣଂଦ ୧୦. (ଚ) ମହାସୁଖ (ଏହି ଗୀତକାଟିର ତିବତୀ ଅନୁବାଦ ଡ, ବାଗ୍‌ଚୀ ଷ୍ଟେଦଷ୍ଟ ପୋଥିରୁ ଉଦ୍ଧାର କରିପାରି ନ ଥିଲେ । ବର୍ତ୍ତମାନ ଡ. ତୋମାର Namgyl Institute of Tibetology Gangtokରେ ଥିବା Sdedgi ସଂସ୍କରଣର ପୋଥିରୁ ଏହା ଉଦ୍ଧାର କରିଛନ୍ତି । ଦ୍ରଷ୍ଟବ୍ୟ—Bulletin of Tibetology Vol. No. I—1964.

## ଆଧୁନିକ ରୂପାନ୍ତର—

ନିଃଶରଣ ନାବ କଲି ଆଠ କୁମାରୀ
ନିଜ ଦେହ କରୁଣା, ଶୂନ୍ୟ-ମାହାରୀ
ତରିଲି ଭବ-ଜଳଧି ଯେମିତ କରି ମାୟା ସ୍ୱପନ
ମଝାବେଣୀ ତରଙ୍ଗ ନ ଜାଣିଲି ମନ ।
ପଞ୍ଚତଥାଗତ କରି କେଡ଼ୁଆଳ
ବାହିଲି କାୟା କାହ୍ନିଲି ମାୟାଜାଲ ।
ଗନ୍ଧ ପରଶ ରସ ଯେସନ ତେସନ
ନିଦ ବିହୁନେ ସପନ ଯେସନ ।
ଚିତ୍ତ କର୍ଣ୍ଣଧାର ଶୂନ୍ୟତା ମଙ୍ଗେ
ଚଳିଲ କାହ୍ନୁ ମହାସୁଖ ସାଙ୍ଗେ ।

## ମର୍ମାର୍ଥ—

ସାଧକ ନିଜ ଦେହରେ କରୁଣା ଓ ଶୂନ୍ୟ-ନାରୀର ମିଳନ ସମ୍ପାଦିତ କରି ଅଷ୍ଟଐଶ୍ୱର୍ଯ୍ୟ ସୁଖାନୁଭୂତି ରୂପକ ଅଷ୍ଟକନ୍ୟା ଲାଭ କଲେ । ଏହି ଅବସ୍ଥାରେ ସାଧକ କାୟ, ବାକ୍, ଚିତ୍ତ ବା ପ୍ରଜ୍ଞା, ଉପାୟ ଓ ଦୁଇଟିର ମିଳିତ ଯୁଗନଦ୍ଧରୂପ—ଏହି ଛଅଗୋଟିକୁ ଏକତ୍ରିତ କରି ତାର ଶରଣ ନେଲେ । ଭବ-ସମୁଦ୍ର ପାର ହେବା ପାଇଁ ଏହାହିଁ ତାଙ୍କ ନିକଟରେ ନୌକା ସଦୃଶ ପ୍ରତିଭାତ ହେଲା । ସେ ଏହାଦ୍ୱାରା ଭବଜଳଧିକୁ ମାୟା-ସ୍ୱପ୍ନ ପରି ପାରି ହୋଇଗଲେ । ଯାତ୍ରାକାଳରେ ମଧ୍ୟ-ବେଣୀରେ ଅର୍ଥାତ୍ ଅବଧୂତିକା ମାର୍ଗରେ ସୁଖରେ ନୌକା ବାହିନେଲେ । ମଝି ସୁଅର ସ୍ୱାଭାବିକ ତୀକ୍ଷ୍ଣତା ସେ ଅନୁଭବ କଲେ ନାହିଁ । ପଞ୍ଚ-ତଥାଗତଙ୍କୁ ଆହୁଲା କରି କାହ୍ନୁ ମାୟାଜାଲବନ୍ଧ ଏହି ସଂସାରସମୁଦ୍ର ପାରି ହୋଇଗଲେ । ବାହ୍ୟ ବିଷୟ-ସୁଖ ପ୍ରତି ତାଙ୍କର ଲାଳସା ରହିଲା ନାହିଁ । ଗନ୍ଧ, ସ୍ପର୍ଶ, ରସାଦି ପଞ୍ଚ ବିଷୟ-ସୁଖରେ କୌଣସି ତାରତମ୍ୟ ସେ ଉପଲବ୍ଧି କରିପାରିଲେ ନାହିଁ । ସେ ସବୁ ଯେମିତି ସେମିତି ପଡ଼ିରହିଲା । ଦିବାସ୍ୱପ୍ନ ପରି ସେ ସବୁ ଅସ୍ତିତ୍ୱହୀନ ଓ ନିରର୍ଥକ ପ୍ରତୀତ ହେଲା । ଚିତ୍ତ ରୂପ ମଙ୍ଗୁଆଳ ଦ୍ୱାରା ଶୂନ୍ୟତା-ମଙ୍ଗ ମାଡ଼ି ଧରି କାହ୍ନୁ ମହାସୁଖ-ତଟରେ ପହଞ୍ଚିବାକୁ ବାହାରିଲେ ।

ଏହି ଗୀତିକାଟି ସହିତ କମ୍ବଳାମ୍ବରଙ୍କ ନଂ. ୮ ଗୀତିକାଟିର ବହୁ ସାଦୃଶ୍ୟ ପରିଲକ୍ଷିତ ହୁଏ । ସଂକ୍ଷେପତଃ ତାହାର ବିଷୟ ହେଉଛି—କରୁଣା ନୌକାରେ ଶୂନ୍ୟତା ପରିପୂର୍ଣ୍ଣ, ରୂପାଦି ପଞ୍ଚ ବିଷୟର ସେଥିରେ ସ୍ଥାନ ନାହିଁ । ବର୍ତ୍ତମାନ ଏହି ନୌକା

ସର୍ବଶୂନ୍ୟ ଢଗରେ ବାହୁନଥ, ତାହାହେଲେ ପୁନର୍ଜନ୍ମ ହେବ ନାହିଁ । ପ୍ରଥମେ ଆତ୍ମସଦ୍ଗୁରୂପକ ଖୁଣ୍ଟି ଉପାଡ଼ି ଅବଦ୍ୟା ରୂପକ ରଜ୍ଜୁ ଖୋଲିଦଅ । ତା ପରେ ଗୁରୁ ଉପଦେଶ ଅନୁସାରେ ନୌକା ବାହୁନଥ । ମଙ୍ଗରେ ବସି ଗୃହଦଗକୁ ଦୃଷ୍ଟି ରଖ । ମଙ୍ଗ ଆଲ ଠିକ୍ ନ ହେଲେ କଣ ନୌକା ବୁହାଯାଇ ପାରବ ? ବାମଡାହାଣ ନ ହୋଇ ଠିକ୍ ମଙ୍ଗ ଧରି ଗ୍ଭଲିଲେ, ବାଟରେ ମହାସୁଖରେ ମିଳିତ ହେବ ।

ଡୋମ୍ବୀପାଦଙ୍କ ଚର୍ଯା-୧୪ ଓ ସରହପାଙ୍କ ଚର୍ଯା-୩୮ରେ ମଧ୍ୟ ଅନୁରୂପ ଭାବେ ନୌକାରେ ପାରହେବା ବିଷୟ ବର୍ଣ୍ଣିତ ହୋଇଛି । ଟୀକାକାର ନୌକାର ସନ୍ଧ୍ୟା ଅର୍ଥ ଏପର ପ୍ରଦାନ କରିଛନ୍ତି-ବୋଧିଚିତ୍ତ (୮) ମହାସୁଖକାୟ (୧୩) ଶୁକ୍ରନାଡ଼ିକା ବା ଅବଧୂତିକା (୧୪) କାୟ (୩୮) । ଏହି ନୌଯାତ୍ରାର ଲକ୍ଷ୍ୟ ମହାସୁଖ (୮) ମହାସୁଖଚକ୍ରଦ୍ୱୀପ (୧୩) ଜିନପୁର (୧୮) ଗଗନ (୩୮)

## ବିଶେଷ ଅର୍ଥ :—

ତିଶରଣ—ବୁଦ୍ଧ, ଧର୍ମ, ସଂଘ [ ଆବୋଧେ ଶରଣଂ ଯାମି ବୁଦ୍ଧଂ, ଧର୍ମଂ, ଗଣୋତ୍ତମମ୍ ], କାୟବାକ୍‌ଚିତ୍ତ, ଉପାୟ, ପ୍ରଜ୍ଞା, ପ୍ରଜ୍ଞୋପାୟ । ଅନ୍ୟ ଭାବରେ—ଶୂନ୍ୟତା କରୁଣାଭିନ୍ନଂ ଯତ୍ର ଚିତ୍ତଂ ପ୍ରଭାବ୍ୟତେ । ସୋହି ବୁଦ୍ଧସ୍ୟ ଧର୍ମସ୍ୟ ସଂଘସ୍ୟାପି ଦେଶନା ( ଡାକର୍ଣ୍ଣ ବଜ୍ରପଞ୍ଜର ) ।

ଆଠ କୁମାରୀ—କେତେକ ପାଠ କରିଛନ୍ତି ଅଷ୍ଟକୁମାରୀ ଅର୍ଥରେ ଓ କେତେକ ଆଠକୁମାରି ଅର୍ଥରେ । ନ.ସେନ୍ ପାଠକରିଛନ୍ତି ଆଠକାମରୀ ଅର୍ଥରେ । କାମରୀ ଶବ୍ଦଟି ପର୍ତ୍ତୁଗୀଜ ଶବ୍ଦ, ତାହା ଦଶମ ଶତାବ୍ଦୀରେ ପ୍ରଚଳିତ ନଥିଲା । ତିବ୍ବତୀ ଅନୁବାଦରେ କୁମାରୀ ପାଠ ମିଳେ । ଏହାହିଁ ଗ୍ରହଣୀୟ । ଆଠକୁମାରୀ ଏଠାରେ ଅଷ୍ଟସିଦ୍ଧି ବା ଅଷ୍ଟବୃଦ୍ଧ ଐଶ୍ୱର୍ଯ୍ୟ ଅର୍ଥରେ ପ୍ରଯୁକ୍ତ ହୋଇଛି । ଅଷ୍ଟସିଦ୍ଧି—ଖଡ଼୍‌ଗାଞ୍ଜନ ପାଦ ଲେପାନ୍ତର୍ଧାନ ରସରସାୟନ ଖେଚରଭୂଚର ପାତାଳ ସିଦ୍ଧି ପ୍ରମୁଖାଃ ସିଦ୍ଧିଃ ସାଧିସ୍ୟେତ୍ (ସାଧନମାଳା: ପୃ. ୩୫୦ ) ଚର୍ଯା-୧୫ରେ ଶାନ୍ତିପା ଅଷ୍ଟ ମହାସିଦ୍ଧିର ଉଲ୍ଲେଖ କରିଛନ୍ତି । ( ଏଷା ଅଟ୍ଟମହାସିଦ୍ଧି ସିଝଇ ଉଜୁବାଟ ଜାଆନ୍ତେ ) ।

କରୁଣା—ଦ୍ର: ଚର୍ଯା-୧୨ ଟୀକା । ତୁ: ଚର୍ଯା-୮ "ସୋନେ ଭରିତୀ କରୁଣା ନାବୀ" ।

ଶୂନ୍ୟ-ମେହେରୀ—ଶୂନ୍ୟତା ପ୍ରଜ୍ଞା, ସ୍ତ୍ରୀ, "ଯୋଷିତ୍ ତାବତ୍ ଭବେତ୍ ପ୍ରଜ୍ଞା ଉପାୟଃ ପୁରୁଷ ସ୍ମୃତଃ (ହେବଜ୍ରତନ୍ତ୍ର) । ତିଲ୍ଲୋପାଙ୍କ ଦୋହା-୧୭—ମହେ ଉଅବା ଖସମ ଉଅବଇ; ଟୀକାର୍ଥ—ଅଥବା କରୁଣାଭଗବାନ୍ ଖସମ ଶୂନ୍ୟତା ଯା ଭଗବତୀ । ଶୂନ୍ୟତା ଓ କରୁଣାର ମିଳନ ସମାଧାନ ସହଜିଆ ସାଧକର ପରମ ଲକ୍ଷ୍ୟ ।

ଦୁଇ ଭାବର ମିଳନରେ ବୋଧିଚିତ୍ତ ଜାଗ୍ରତ ହୁଏ । (ଶୂନ୍ୟତାକରୁଣାଭିନ୍ନଂ ବୋଧିଚିତ୍ତଂ ଇତ୍ୟସ୍ମୃତମ୍—ଶ୍ରୀ ଗୁହ୍ୟ ସମାଜତନ୍ତ୍ର) । ଗୋଟିଏ ଭାବକୁ ଆଶ୍ରା କଲେ ନିର୍ବାଣ ମିଳେ ନାହିଁ । ("କରୁଣା ଛଡ଼ଇ ଜୋ ସୁଣହି ଲଗ୍ଗୁ—ଣଉ ସୋ ପାବଇ ଉତ୍ତିମ ମଗ୍ଗୁ" ଅଥବା—"ଅହବା କରୁଣାକେବଲ ଭାବଇ-ଜମ୍ମସହସ୍‌ସାହି ମୋକ୍‌ଖଣ ପାବଇ ।। ସୁଣ୍ଣ କରୁଣା ଜଇ ଜୋଉଣୁ ସକ୍‌କଇ—ଣଉ ଭବେ ଣଉ ଣିବ୍‌ବାଣେ ଥାକ୍‌କଇ ।।" (ସରହ) । ଶୂନ୍ୟତା ଓ କରୁଣାର ମିଳନରେ ସହଜ ଉପଲବ୍‌ଧି ହୁଏ । ତିଲୋପା କହନ୍ତି ଯେ—"ସହଜେ ଭାବାଭାବ ଣ ପୁଚ୍ଛିଅ—ସୁଣ୍ଣ କରୁଣ ତହି ସମରସ ଇଚ୍ଛିଅ ।।' ବୌଦ୍ଧତନ୍ତ୍ରରେ କରୁଣା—ପୁରୁଷ, ଉପାୟ, ବଜ୍ର ବୋଲକ ବା କକ୍‌କୋଲ, ଲିଙ୍ଗ ଓ ଶୂନ୍ୟତା—ସ୍ତ୍ରୀ, ପ୍ରଜ୍ଞା, ପଦ୍ମ, କକ୍‌କୋଲକ, ଭଗ ଇତ୍ୟାଦି ଭାବରେ ଗୃହୀତ ହୋଇଥିବାର ଦେଖାଯାଏ ।

**ମାଝବେଣୀ**—ଅବଧୂତିକା, ଲଲନା ରସନା ନାଡ଼ୀଦ୍ୱୟର ମଧ୍ୟବର୍ତ୍ତିନୀ । ଏହି ମାର୍ଗରେ ସାଧକ ବୋଧିଚିତ୍ତକୁ ଊର୍ଦ୍ଧ୍ୱକୁ ଉତ୍କ୍ଷେପିତ କରି ସହଜ କାୟରେ ପ୍ରବେଶ କରେ । ଏହା ହିଁ ହିନ୍ଦୁତନ୍ତ୍ରର ସୁଷୁମ୍ନା ବା : ଗଙ୍ଗାଯମୁନା ମଝେଁରେ ବହଇ ନଇ (ଚର୍ଯ୍ୟା-୧୪) । ଆଲି କାଲି ବେଣି ସାର ସୁଣିଆ (ଚର୍ଯ୍ୟା-୧୭) ।

**ପଞ୍ଚତଥାଗତ**—ପଞ୍ଚଧ୍ୟାନିବୁଦ୍ଧ । (ଦ୍ର: ଚର୍ଯ୍ୟା—୧ ଟୀକା) "These five dhyani Budhas are also called the five Tathagatas" (Introduction to Tantric Budhism, P. 96) ଡଙ୍ଗ୍‌ନାଗ—ପ୍ରଜ୍ଞା ପାରମିତା ଜ୍ଞାନଂ ଅଦ୍ୱୟଂ ସା ତଥାଗତଃ । ବୁଦ୍ଧଙ୍କର ଏକ ନାମ ତଥାଗତ, ଏହାର ଅର୍ଥ ତଥା+ଆଗତ (thus came) ବା ତଥ+ଗତ (thus gone) । ତଥାଗତ ଅର୍ଥରେ ବୁଝାଏ, One who has attained full realization of Tathata, i. e., became one with the Absolute (ଧର୍ମକାୟ) so that he nither comes from anywhere (ନଆଗମନ) nor goes to anywhere (ନ ଗମନ)"—( A popular Dictionary of Budhism) । ବୁଦ୍ଧମାନେ 'ତଥାଗତ' ସତ୍ୟ ନେଇ ଜନ୍ମଗ୍ରହଣ କରୁଥିବାରୁ ତାଙ୍କୁ "ତଥାଗତ" ବୁଝାଯାଏ । ଦ୍ର: ଖାଣ୍ଟି ମନ କେଡ଼ୁଆଳ (ଚର୍ଯ୍ୟା-୩୮) ମନ ପଞ୍ଚେନ୍ଦ୍ରିୟର ରାଜା ଏହି ଅର୍ଥ । ପଞ୍ଚ କେଡ଼ୁଆଳ ପଡ଼ନ୍ତେ ମାଙ୍ଗେ (ଚର୍ଯ୍ୟା-୧୪) ।

**ଗନ୍ଧପରସରସ**—ଶବ୍ଦ ଓ ରୂପ ସହିତ ଏହା ପଞ୍ଚବିଷୟ ଓ ପଞ୍ଚେନ୍ଦ୍ରିୟ ସହିତ ସମ୍ବନ୍ଧାନ୍ୱିତ । ସାଙ୍ଖ୍ୟ ଦର୍ଶନାନୁସାରେ ଏହା ପଞ୍ଚ ତନ୍ମାତ୍ର ଭାବରେ ଆଖ୍ୟାତ । ଚିତ୍ତ, ଶୂନ୍ୟତା, ମହାସୁଖ—ଦ୍ର. ଚର୍ଯ୍ୟା-୧ ଟୀକା ।

## (ନ. ୧୮ କାମ ଚଣ୍ଡାଲୀ—ଚର୍ଯ୍ୟା)

ରାଗ-ଗଉଡ଼ା

### ମୂଳ—

ତଣି ଭୂଅଣମଇ ବାହୁଅ ହେଲେଁ ।
ହାଁଉ ସୁତେଲ ମହାସୁହ ଲୀଳେଁ ॥ ୧ ॥
କଇସନି ହାଲେ ଡୋମ୍ବୀ ତୋହୁର ଭରି ଆଲୀ ।
ଅନ୍ତେ କୁଲଣ ଜଣ ମାଝେଁ କାବାଲୀ ॥ ଧ୍ରୁ ॥
ତଇଁ ଲୋ ଡୋମ୍ବୀ ସଅଳ ବଟାଲଉ ।
କାଜ ଣ କାରଣ ସସହର ଟାଳିଉ ॥ ୨ ॥ (ଧ୍ରୁ)
କେହ୍ନୋ ତୋହୋରେ ବଳୁଅ ବୋଲଇ ।
ବଦୁଜନ ଲୋଅ ତୋରେଁ କଣ୍ଠ ନ ମେଲଇ ॥ ୩ ॥ (ଧ୍ରୁ)
କାହ୍ନୁ ଗାଇ ତୁ କାମ ଚଣ୍ଡାଳୀ ।
ଡୋମ୍ବୀତ ଆଗଲି ନାହି ଛିନାଳୀ ॥ ୪ ॥ (ଧ୍ରୁ)

### ପାଠାନ୍ତର—

୨. (କ,ଘ) ଲ୍ଲେ ୪. (ଘ)ମାଝେଁ। ୫. (ଖ,ଘ) ବିଟଲଉ ୭. (ଘ) କେହ୍ନେ ୮. (ଙ) କଣ୍ଠେ ୯. [କ,ଖ,ଘ] କାହ୍ନେ, [ଘ, OBLT] କାହ୍ନେ ଗାଇଲ ୧୦. [ଖ] ଡୋମ୍ବି ତୋ, [କ] ଉଆଗଲି [ଅର୍ଥ ତ୍ୟାଗକଲି] ।

### ଆଧୁନିକ ରୂପାନ୍ତର:—

ତନ ଭୁବନ ମୁଁ ବାହୁଣ ହେଲେ
ମୁଁ ଶୋଇଲି ମହାସୁଖ ଲୀଳେ ।
କେମନେ ଥାଳେ ଡୋମ୍ବି ! ତୋହର ବାଳୁଆଳୀ ?
ଅନ୍ତେ କୁଳୀନ ଜନ ମଝାଏ କପାଳୀ

ତୁଇ ଲୋ ଡ଼ୋମ୍ବି ! ସକଳ ବିଟାଳୁ
କାର୍ଯ୍ୟ ନା କାରଣ, ଶଶଧର ଟାଳୁ ।
କେହ୍ନୁ କେହ୍ନୁ ତୋହରେ ବିରୂପା ବୋଲଇ
ବିଦୁଜନ ଲୋକ ତୋରେ କଣ୍ଠ ନ ମେଲଇ ।
କାହ୍ନ୍ ଗାଇ ତୁ କାମ ଚଣ୍ଡାଳୀ
ଡୋମ୍ବୀତ୍ ଆଗୁଆଲି ନାହିଁ ଛିଣାଳି ।

## ମର୍ମାର୍ଥ :—

କାହ୍ନୁପା କହୁଛନ୍ତି ଯେ ସିଂଶରଣ ନୌକାରେ ତ୍ରିଭୁବନକୁ ଅବଲୀଳାକ୍ରମେ ପାରହୋଇ ମୁଁ ମହା ସୁଖକମଳରେ ପ୍ରବେଶ କରି ବର୍ତ୍ତମାନ ପରମ ଶାନ୍ତିରେ ସୁପ୍ତ । ଆଲୋ ଡ଼ୋମ୍ବୀ ! ତୋର ଏ କିରକମ ବ୍ୟବହାର ? ତୁ ବ୍ରାହ୍ମଣାଦି କୁଳୀନ ଲୋକମାନଙ୍କୁ ବାହାରେ ରଖିଛୁ ଅଥଚ କାପାଳିକକୁ ଗୃହ ମଧ୍ୟରେ ସ୍ଥାନ ଦେଇଛୁ ! ତୁ ସମସ୍ତଙ୍କୁ ନଷ୍ଟଭ୍ରଷ୍ଟ କରୁଛୁ । ବିନା କାର୍ଯ୍ୟ କାରଣରେ ଚନ୍ଦ୍ରରେ ବି କଳଙ୍କ ଲଗାଇ ଦେଉଛୁ । କିନ୍ତୁ ବଡ଼ ଆଶ୍ଚର୍ଯ୍ୟ କଥା, କେହି କେହି ତୋତେ ବିରୂପା କହିଲେ ମଧ୍ୟ ପଣ୍ଡିତମାନେ ତୋତେ କଣ୍ଠରୁ ତ୍ୟାଗ କରନ୍ତି ନାହିଁ । କାହ୍ନ କହନ୍ତି, ତୁ ଗୋଟିଏ କାମ-ଚଣ୍ଡାଳୀ । ତୋଠାରୁ ବଳି ଆଉ ଛିଣ୍ଡାଳୀ କାହାନ୍ତି ।

## ସନ୍ଧ୍ୟା ଅର୍ଥ—

ତ୍ରିଭୁବନ—କାୟ, ବାକ୍, ଚିତ୍ତ ।
ଡୋମ୍ବୀ—ଅବଧୂତିକା ରୂପିଣୀ ମହାମୁଦ୍ରା । ଦ୍ରଃ ଚର୍ଯ୍ୟା-୧୦ ଟୀକା ।
କୁଳୀନ—ଶରୀରରେ ଲୀନ ପ୍ରଭାସ୍ୱର ବା ଶାସ୍ତ୍ରଜ୍ଞ ପଣ୍ଡିତ ବ୍ରାହ୍ମଣାଦି ।
କାପାଳିକ—ସହଜସାଧକ ଯୋଗୀ । ଦ୍ରଃ ଚର୍ଯ୍ୟା-୧୦ ଟୀକା ।
ଶଶଧର—ବୋଧିଚିତ୍ତ ।
କଣ୍ଠ—ସମ୍ଭୋଗଚକ୍ର ।

କାମଚଣ୍ଡାଳୀ—କର୍ମର ସାଧନ ଉପାୟ, ନିର୍ମାଣ ଚକ୍ରରେ ସ୍ଥିତା—ଶକ୍ତି । ହେବଜ୍ରତନ୍ତ୍ର—ବାମଦକ୍ଷିଣ ନାଡ଼ୀର ମିଳନ । (ଚଣ୍ଡା ପ୍ରଜ୍ଞାଃ ବାମନାଡ଼ୀ--ଆଳି ରୂପ ଉପାୟୋ ଦକ୍ଷିଣ ନାଡ଼ୀ) । ଏହା କର୍ମମୁଦ୍ରା ସହିତ ତୁଳନୀୟ । (ଦ୍ରଷ୍ଟବ୍ୟ—ଦୋହାକୋଷ, ପୃ. ୧୬୫-୬୭ ବାଙ୍ଗ୍ଟୀ—ଚୁବାଲୀ—ଚତୁର୍ଥ ନାଗଷ୍ଟ

## ନ ୧୪ (ଡ଼ୋମ୍ବୀବିବାହ-ଚର୍ଯ୍ୟା)

ରାଗ-ଭୈରବୀ

### ମୂଳ—

ଭବ ନିର୍ବାଣେ ପଡ଼ହ ମାଦଲା
ମଣ ପବଣ ବେଣି କରଣ୍ଡ କଶାଲା ॥ ୧ ॥
ଜଅ ଜଅ ଦୃନ୍ଦୁହି ସାଦ ଉଚ୍ଛଲିଲା ।
କାହ୍ନ ଡୋମ୍ବୀ ବିବାହେ ଚଲିଲା ॥ (ଧ୍ରୁ)
ଡୋମ୍ବୀ ବିବାହିଆ ଅହାରିଉ ଜାମ ।
ଜଉତୁକେ କିଅ ଆଣୁତୁ ଧାମ ॥ ୨ ॥(ଧ୍ରୁ)
ଅହଣିସି ସୁରଅ ପସଙ୍ଗେ ଜାଅ ।
ଜୋଇଣି ଜାଲେ ରଅଣି ପୋହାଅ ॥ ୩ ॥(ଧ୍ରୁ)
ଡୋମ୍ବୀଏର ସଙ୍ଗେ ଜୋ ଜୋଇ ରତ୍ତୋ ।
ଖଣହ ନ ଛାଡ଼ଅ ସହଜ ଉନ୍ମତ୍ତୋ ॥ ୪ ॥(ଧ୍ରୁ)

### ପାଠାନ୍ତର—

୧ (ହ୍ରକାଧା) ପଡ଼ହ ମାଁଦଲା ୨. (କ,ଗ,) କରଣ୍ଡ କଶାଲ, (ହ୍ରକାଧା) କରଁଣ୍ଡ କଶାଲା ୩. (କଖଗଘ) ଉଚ୍ଛଲିଆଁ ୪ (କଖଗଘ) ଚଲିଆ ୫. (ଖ) ଅଣୁଉତ (ଘ) ଆନୁଣୁତୁ ୬. (ଖ) ଜାଇ ୮, (ଘ, OBLT) ରଏଣି, (ଖ) ପୋହାଇ ୯. (ହ୍ରକାଧା) ଡୋଁମ୍ବିଏ ସଙ୍ଗେ ଜୋଇ ରତ୍ତୋ, (ଖ) ରତ୍ତ ୧୦ (ଚ) ଖଣେ (ଖ) ଉନ୍ମତ୍ତ ।

### ଆଧୁନିକ ରୂପାନ୍ତର—

ଭବନିର୍ବାଣ ପଟହ ମାଦଳ ।
ମନ ପବନ ବେଣୀ କରଣ୍ଡ (?) କଂସତାଳ ।
ଜୟ ଜୟ ଦୁନ୍ଦୁଭି ଶବ୍ଦ ଉଚ୍ଛଳିଲା
କାହ୍ନ ଡୋମ୍ବୀ ବିବାହେ ଚଳିଲା

ଡ଼ୋମ୍ବୀ ବିବାହେଣ ଆହାରିଲ ଜନ୍ମ
ଜଉତୁକ କଲ ଅନୁତ୍ତର ଧର୍ମ ।
ଅହ୍ନିଶି ସୁରଅ ପ୍ରସଙ୍ଗେଯାଏ
ଯୋଗିନୀ ଜାଲେ ରଜଣୀ ପୁହାଏ ।
ଡୋମ୍ବୀର ସଙ୍ଗେ ଯେ ଯୋଗୀ ରତ
ଖଣେ ହି ନ ଛାଡ଼େ ସହଜ ଉନ୍ମତ୍ତ ।

## ସରଳାର୍ଥ—

ଜନ୍ମ-ମୃତ୍ୟୁ ଆଦି ବିକଳ୍ପଜ୍ଞାନ ପରିହାର କରି, ମନ ଓ ଶ୍ୱାସପ୍ରଶ୍ୱାସ ବାୟୁର ନିରୋଧ କରି ସିଦ୍ଧ କାହ୍ନୁପାଦ ଅବଧୂତିକାର ନିମ୍ନବାହୀ ପ୍ରବାହ ଭଙ୍ଗ କଲେ । ତାଙ୍କର ପୁନର୍ଜନ୍ମ ଦୋଷ ନିରାକୃତ ହେଲା । ସେ ଅନୁତ୍ତର ଧର୍ମ ଅର୍ଥାତ୍ ନିର୍ବାଣର ଅଧିକାରୀ ହେଲେ । ପରିଶୁଦ୍ଧାବଧୂତିକା ସହିତ ସେ ନିରନ୍ତର ମିଳିତ ଅବସ୍ଥାରେ ରହିଲେ ଏବଂ ଜ୍ଞାନ ପ୍ରଭାବରେ ଅବିଦ୍ୟାଅନ୍ଧକାର ଦୂର କଲେ । ଯେଉଁ ଯୋଗୀ ଅବଧୂତି ସହିତ ମିଳିତ ହୋଇ ସହଜାନନ୍ଦ ଉପଲବ୍ଧି କରିଛି, ସେ କଦାପି ତାର ସଙ୍ଗ ପରିତ୍ୟାଗ କରିବ ନାହିଁ ।

କାହ୍ନୁପା ଏହି ଚର୍ଯ୍ୟାଟି ବିବାହ ରୂପକ ସାହାଯ୍ୟରେ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । ବିବାହ ଶବ୍ଦର ଶ୍ଲେଷାର୍ଥ ରୂପକଟିର ଭିତ୍ତି । ଏହାର ସନ୍ଧ୍ୟାଅର୍ଥ—ପ୍ରବାହଭଙ୍ଗ କରିବା । ବିବାହ କରିବାକୁ ଗଲାବେଳେ ବର ଶୋଭାଯାତ୍ରାରେ ଯାଏ, ନାନାପ୍ରକାର ବାଦ୍ୟ ବାଜେ ଓ ଆନନ୍ଦଧ୍ୱନି ପ୍ରକାଶପାଏ; କନ୍ୟାଘରେ ଭୋଜିଭାତ ହୁଏ ଓ ଯୌତୁକ ମିଳେ । ବିବାହ ପରେ ବରକନ୍ୟା ପ୍ରଗାଢ଼ ପ୍ରେମମୟ ଦାମ୍ପତ୍ୟସୁଖ ଭୋଗକରନ୍ତି । ଏଠାରେ କାହ୍ନୁ—ବର, ଡୋମ୍ବୀ—କନ୍ୟା, ଭବନିର୍ବାଣ—ପଟହ ମାଦଳ, ମନପବନ — କରଣ୍ଡି, କାଂସତାଳ ବା କରତାଳ, ବିବାହ ଭୋଜିର ସୁଖାଦ୍ୟ—ପୁନର୍ଜନ୍ମ ଏବଂ ଯୌତୁକ ନିର୍ବାଣ ରୂପକ ଅନୁତ୍ତର ଧର୍ମ । ବିବାହ ପରେ ବରକନ୍ୟା ରତିରସରେ ରାତ୍ରିଯାପନ କଲାପରି କାହ୍ନୁ ପରିଶୁଦ୍ଧାବଧୂତିକା ସହିତ ମିଳିତ ହୋଇ ରହିଲେ ।.

ଏହି ଗୀତିକାଟିରେ ବିବାହ ପରି ଏକ ସାମାଜିକ ଅନୁଷ୍ଠାନର ତାତ୍କାଳୀକ ବିଧି-ବିଧାନ ସୂଚିତ ହୋଇଛି ।

## ବିଶେଷ ଅର୍ଥ—

ଭବନିର୍ବାଣ—ସ୍ଥୂଳ ଅର୍ଥରେ ଜନ୍ମମୃତ୍ୟୁ, ତାତ୍ତ୍ୱିକ ଭାବରେ ସଂସାର ବନ୍ଧନ ଓ ତହିଁରୁ ମୁକ୍ତି । ସିଦ୍ଧାଚାର୍ଯ୍ୟଗଣ ଏ ଦୁଇଟି ମଧ୍ୟରେ ପ୍ରଭେଦ ଲକ୍ଷ୍ୟ କରନ୍ତି ନାହିଁ । ଚର୍ଯ୍ୟାର ସିଦ୍ଧି—ଭବ ଓ ନିର୍ବାଣ । ଚର୍ଯ୍ୟା-୨୨ରେ ଏହି ଅଭିନ୍ନ ଭାବନା ସୂଚିତ ହୋଇଥିବା ପରିଲକ୍ଷିତ

ପ୍ରକାଶ କରିଛନ୍ତି । ତାଙ୍କ ମତରେ "ଜଇସୋ ଜାମ ମରଣ ବି ତଇସୋ—
ଜୀବନ୍ତେ ମଅଲେ ନାହିଁ ବଶେଷୋ ॥" ସେହିପରି ଟୀକାକାର ମଧ କହନ୍ତି ଯେ—
'ବୃକ୍ଷ ଆହ୍ୱାରନ୍ତୁ ଅବିକଳ ଚଣ୍ଡେ —ଭଗିଣିବାଣେ ସ କରନ୍ତୁରେ ଥିବେ ॥"
(ଦୋହା ୨୬)

କରଣ୍ଡକପାଲା—ମଣୀନ୍ଦ୍ର ମୋହନ ବସୁଙ୍କ ମତରେ 'କରଣ୍ଡକଷାଲା, ବା ବୃକ୍ଷରତ୍ନ କରଣ୍ଡକର
ଆଳୟ । ଶୂନ୍ୟତା ଓ କରୁଣା ମିଳିତ ମହାମୁଦ୍ରାକୁ ଧର୍ମକରଣ୍ଡକ ବା ବୃକ୍ଷରତ୍ନ
କରଣ୍ଡକ କୁହାଯାଏ ।

"ଏକାରକୃତ ଯତ୍ନଦବ୍ୟଂ ମଧ୍ୟେ ବଂକାର ଭୂଷିତଂ
ଆଳୟ ସର୍ବସୌଖ୍ୟାନାଂ ବୃକ୍ଷରତ୍ନ କରଣ୍ଡକଂ ।
(ଟୀକାକାର, ଦୋହା-୨୫ଟୀକା)

ଅନୁତ୍ତରଧର୍ମ—"ଅନୁତ୍ତରଂ ବୃକ୍ଷଜ୍ଞାନଂ" ॥ ଅଦ୍ୱୟବଜ୍ର—"ଅନୁତ୍ତରଂ ସହଜମ୍" ।
ତୁ : ଟୀକାକାର ପଗ୍ଗୋପାଥ ସମାଢ ଲଗ୍ଗନ୍ତୁ—ଜହ ଚହ ପଡ଼ଇର ଅଣୁତ୍ତର
ସିଦ୍ଧି (ଟୀକାକାର) ଅର୍ଥାତ୍ ପ୍ରଜ୍ଞା ଉପାୟ ବା ଶୂନ୍ୟତା କରୁଣାର ଅଦ୍ୱୟ ମିଳନ
ସଣାଧିତ କରି ତାହାକୁ ଦୃଢ଼ତା ସହକାରେ ଧାରଣ କଲେ ଶ୍ରେଷ୍ଠ ସିଦ୍ଧି ବା
ବୃକ୍ଷଜ୍ଞାନ ଲାଭ ହୁଏ ।

ଯୋଗିନୀ—ଯୋଗସାଧନାରେ ସହାୟକ ମହାମୁଦ୍ରା—ନୈରାତ୍ମା ।

## ୨୪ (ରାଜହଂସ-ଚର୍ଯା)

ନେପାଳ ଦରବାର ପୋଥିର କେତେ ପତ୍ର ନଷ୍ଟହୋଇ ଯାଇଥିବାରୁ ଏହି
ଗୀତିକାଟିର ମୂଳ ଉଦ୍ଧାର କରାଯାଇ ପାରି ନ ଥିଲା । ଡ. ବାଗ୍ଚୀ ତିବତୀ ଅନୁବାଦରୁ
ଗୀତିକାଟିର କଥା ଉଦ୍ଧାର କରିଛନ୍ତି । ଏଥିରୁ ଜଣାଯାଏ, ଏହାର ରଚୟିତା କୃଷ୍ଣାଚାର୍ଯ୍ୟ-
ପାଦ । ରାଗ-ଇନ୍ଦ୍ରତାଳ ! ସେକୋଦ୍ଦେଶଟୀକା (G.O S.P.48) ରୁ ଏହାର ପ୍ରଥମ ଦୁଇ
ପଙ୍‌କ୍ତି ମିଳେ ।

ପୁଣ୍ଣିମ ଚନ୍ଦା ଉଇଅଇ ଜବ୍‌ବେ ।
ଚଅଗ୍ରଅ କମିଲଅ (? କମଲଅ) ତବ୍‌ବେ ॥ ଚର୍ଯାଗୀତିକୋଷରେ ତିବତୀ
ଅନୁବାଦରେ ସଂସ୍କୃତ ରୂପାନ୍ତର ପ୍ରଦତ୍ତ ହୋଇଛି—

ପୂର୍ଣ୍ଣଚନ୍ଦ୍ର ଉଦୟତ ଯଦା
ଚନ୍ଦ୍ରକୋ କମଲୋ ଭବତ ତଦା ॥ ୧ ॥
ମୋହମଳଂ ଛିନ୍ନଂ ଗୁରୁପଦେଶେନ ।
ବସପ୍ରେଦ୍ୱସ୍ତଂ ଗଗନମୁପେତଂ ॥ ଧ୍ରୁ ॥

ଖସମ ବୀଜଂ ଯନ୍ତୁ ଖସମଂ ଯାନ୍ତି ।
ଆମ୍ରବୃକ୍ଷସ୍ ତ୍ରିଧାତୁଷ୍ଟୁ ବନ୍ଧାନେତି ଛାୟାଂ ।। ୨ ।।
ଯଥା ଉଦତେ ସୂର୍ଯ୍ୟରଶ୍ମି ର୍ବ୍ୟପସ୍ୟାତି ।
(ତଥା) ଭବସମୁଦ୍ର ମୋହରଜୋ ଦୂରୀ ଭବତି ।। ୩ ।।
ରାଜହଂସୋ ଯଥା ଜଳଂ ବିବନକ୍ତି ।
ଭବଂ ଭୁକ୍ଷ (ତଥା) ଇତି କଥୟତି କୃଷ୍ଣପାଦଃ ।। ୪ ।।

ଚର୍ଯ୍ୟାଗୀତି ପଦାବଳୀରେ ଏହାକୁ ଭିତ୍ତିକରି ମୂଳର ଏବଂ ପରିକଳ୍ପିତ ପାଠ ପ୍ରଦତ୍ତ ହୋଇଛି—

ଜଇସେ ଚନ୍ଦ ଉଇଆ ହୋଇ ।
ଚିଅରାଜ ତଇସେ ସୋହଅଇ ।।
ମୋହ ମଳ ଗୁରୁ ଉଏସେ ଜାଇ ।
ଆଅଉନ ଇନ୍ଦୀ ଗଅନ ସମାଇ ।।
ଖସମ ବୀଅ ଜା ଖସମେ ଜାଇ ।
ଜଅ ରୁଅକ୍ଖ ତିହଅନ ଛାଅ ବନ୍ଧଇ ।।
ସୂଜ ଉଏଲ ଜିମ ରାତି ପୋହାଇ ।
ଭବ ସମୁଦା ମୋହ ତିମ ଅବସର ଜାଇ ।।
ହଂସ ରାଅ ଜିମ ପାନୀ ଲେଇ ।
ଭବ ଆହାର ଏହ୍ନୁ କାହ୍ନୁ ଗାଇ ।।

## ଆଧୁନିକ ରୂପାନ୍ତର:—

ଯେସନେ ଚନ୍ଦ୍ର ଉଦୟ ହୁଏ ।
ଚିତ୍ତରାଜ ତେସନ ଶୋଭାପାଏ ।।
ମୋହ-ମଳ ଗୁରୁ ଉପଦେଶେ ଯାଏ ।
ଆୟତନ ଇନ୍ଦ୍ରିୟ ଗଗନେ ସମ୍ପାଏ ।।
ଖସମ ବୀଜ ଯା ଖସମେ ଯାଏ ।
ଜଳ ଗଛରୁ ତ୍ରିଭୁବନ ଛାଇ ବନ୍ଧଏ ।।
ସୂର୍ଯ୍ୟ ଉଇଁଲେ ଯେମିତ ରାତି ପାହେ ।
ଭବ-ସମୁଦ୍ର ମୋହ ସେମିତ ଦୂର ହୁଏ ।।
ରାଜହଂସ ଯେମିତ ପାଣି ନିଏ ।
ଭବ ଆହାର କର କାହ୍ନୁ ଗାଏ ।

## ସରଳାର୍ଥ:—

ନବୋଦିତ ପୂର୍ଣ୍ଣଚନ୍ଦ୍ର ସଦୃଶ ବୋଧିଚିତ୍ତ ହୃଦୟ ହୋଇ ଶୋଭା ପାଉଛି । ସେଥିରେ କଳଙ୍କ ନାହିଁ । ଗୁରୁ ଉପଦେଶରୁ ମୋହ ଆଦି ରିପୁ ଦମନ କରିବାଦ୍ୱାରା ତାହା ନିର୍ମଳ ହୋଇଛି । ଇନ୍ଦ୍ରିୟ, ଆୟତନାଦି ଶୂନ୍ୟରେ ପ୍ରବେଶ କରିଛି; ଅର୍ଥାତ୍ ବାହ୍ୟ ବିଷୟରେ ଲିପ୍ତହୋଇ ନାହିଁ । ସବୁ ବିକଳ୍ପର ମୂଳବୀଜ ଛିନ୍ନ । ସେହି ଚିତ୍ତ ସାଧନାହେତୁ ବର୍ତ୍ତମାନ ଶୂନ୍ୟ ସଦୃଶ ହୋଇଥିବାରୁ ସେହି ଶୂନ୍ୟବୀଜରୁ ଶୂନ୍ୟ ସଦୃଶ ବୃକ୍ଷ ଜାତହୋଇଛି ଏବଂ ତାର ଗୁମ୍ଫା କାୟ ବାକ୍‌ଚିତ୍ତରେ ବା ତ୍ରିଭୁବନରେ ବିସ୍ତାରିତ ହୋଇ ନିଖିଳ ଜଗତର ଶାନ୍ତି ଦୂର କରୁଛି । ସୂର୍ଯ୍ୟ ଉଦିତ ହେଲେ ରାତ୍ରିର ଅନ୍ଧକାର ଯେପରି ଦୂର ହୁଏ, ସେହିପରି ବୋଧିଚିତ୍ତ ସମୁତ୍ପାଦିତ ହେଲେ ଭବ ସମୁଦ୍ରର ମୋହ-କୁହେଳୀ ଅପସରିଯାଏ । ଜାଲନ୍ଧ୍ରିପା କହନ୍ତି—ହଂସ ଯେପରି ନୀର ମିଶ୍ରିତ କ୍ଷୀରରୁ କେବଳ କ୍ଷୀର ପାନ କରିଥାଏ, ସେହିପରି ଭବମାୟା ମଧ୍ୟରୁ ଉବକୁ ଭକ୍ଷଣ କରି, ଭବ-ଉପାଦାନ ସମୂହ ଦ୍ୱାରା ଆକର୍ଷିତ ହୁଅ ନାହିଁ ।

## ବିଶେଷ ଅର୍ଥ:—

ଖସମ—ଖ ଅର୍ଥ ଆକାଶ ବା ଶୂନ୍ୟ । ସାଧନା ଦ୍ୱାରା ଚିତ୍ତରେ ଶୂନ୍ୟତାଜ୍ଞାନ ଜାତ ହେଲେ ତାହା ଶୂନ୍ୟସ୍ୱଭାବରେ ଲୀନ ହୋଇଯାଏ । ସେହି ଅବସ୍ଥାପ୍ରାପ୍ତ ଚିତ୍ତହିଁ ଖସମ ।

ଦ୍ର: ଚିତ୍ତ ଖସମ ଯହି ସମସୁହ ପଇଠ୍‌ଠଇ—ଇନ୍ଦ୍ରିଅ ବିସଅ ତହି ମତ୍ତଣ ଦୀଶଇ (ତିଲୋପା) । ଅର୍ଥାତ୍ ଚିତ୍ତ ଶୂନ୍ୟତାସହ ମହାସୁଖରେ ପ୍ରବେଶ କଲେ ଇନ୍ଦ୍ରିୟ ବିଷୟରେ ଅଭିଳିପ୍ସା ଦେଖାଯାଏ ନାହିଁ । ଖସମ = ଶୂନ୍ୟତାଜ୍ଞାନ ।

ଭୁସୁକୁପା ଚର୍ଯ୍ୟା—୪୩ରେ ଅନୁରୂପ ଭାବେ ଲେଖିଛନ୍ତି—ସହଜ ମହାତରୁ ଫରିଅ ଏ ତେଲୋଏ—ଖସମ ସଭାବେ ରେ ବାନ୍ଧ ମୁକା କୋଏ ।।

**ଇନ୍ଦ୍ରିୟ ଆୟତନ—ଦ୍ର: ଚର୍ଯ୍ୟା-୧ ଟୀକା ।**

ତିଲୋପାଙ୍କ ଦୋହା-୧ (କନ୍ଦଭୁଅ ଆଅତଣ ଇନ୍ଦୀ-ସହଜ ସହାବେ ସଅଲ ବିବନ୍ଧୀ) ଟୀକାରେ ଏହା ବ୍ୟାଖ୍ୟାତ ହୋଇଛି ଏହିପରି—ସ୍କନ୍ଧା: ପଞ୍ଚରୂପ ବେଦନା ସଂଜ୍ଞା ସଂସ୍କାର ବିଜ୍ଞାନ ଲକ୍ଷଣାଃ, ଭୂତା : ପଞ୍ଚପୃଥିବୀ ଆପ ତେଜ ବାୟୁ ଆକାଶ ଲକ୍ଷଣାଃ । ଆୟତନୈଇନ୍ଦ୍ରିୟାଣି, ଚକ୍ଷୁ ଶ୍ରୋତ୍ର ଘ୍ରାଣ ଜିହ୍ୱା କାୟ ମନୋଲକ୍ଷଣାନି ।

## ନ. ୩୭ (ସୁହୁଜନିଦ୍ରା-ଚର୍ଯ୍ୟା)

ରାଗ-ପଟମଞ୍ଜରୀ

**ମୂଳ:—**

ସୁନବାହ୍ନ ତଥତା ପହ୍ନାରୀ ।
ମୋହ ଭଣ୍ଡାର ଲଇ ସଅଳ ଆହ୍ନାରୀ ॥ ୧ ॥
ଘୁମଇ ଣ ଚେବଇ ସପର ବଭାଗା ।
ସହଜ ନିଦାଲୁ କାହ୍ନିଲ ଲଙ୍ଗା । (ଧ୍ରୁ) ।
ଚେଅନ ନ ବେଅନ ଭର ନିଦ ଗେଲା ।
ସଅଳ ମୁକଳ କରି ସୁହେ ସୁତେଲା ॥ ୨ ॥ (ଧ୍ରୁ)
ସ୍ୱପଣେ ମଇ ଦେଖିଲ ତିହୁବଣ ସୁଣ ।
ଘୋରିଅ ଅବଣାଗମଣ ବିହୁଣ ॥ ୩ ॥ (ଧ୍ରୁ)
ଶାଖି କରିବ ଜାଳନ୍ଧରି ପାଏ ।
ପାଖି ନ ରାହୁଇ ମୋର ପାଣ୍ଡିଆ ଚାଏ ॥ ୪ ॥(ଧ୍ରୁ)

**ପାଠାନ୍ତର:—**

୧. [ଘ] ସୁନ ବାହ [ର] ୨. [କ, ପୁନ] ଲ୍ୟଇ, (ଚ) ସଅଳ ଆହ୍ୱାସ୍ତ ୭. [କ, ଗ, ଘ. ପୁନ] ସଅଳ ସଫଳ ୮. (ଖ, JDL) ଘୋଳିଅ, (ଘ, OBLT) ଘାଳିଅ, (ଙ) ଘାଣିକ (କ,ପୁନ) ବିହଲ ୯. (କ.ପୁନ) ଶାଧି ୧୦. (ଖ. ଗ) ପାଣି (କ, ଘ, ପୁନ) ଗହଅ, (OBLT) ଗୃହଅ (କ, ଘ, ପୁନ) ଗୃଦେ ।

[ ଦୋହାଦୋଷ, ପରିଶିଷ୍ଟ ପୃ. ୩୭୯ରେ ଏହି ଚର୍ଯ୍ୟାର ଆରମ୍ଭରେ ଛଅ ପଦ ଓ ଶେଷରେ ଏକ ପଦ ଅଧିକା ଅଛି । ମଧ୍ୟସ୍ଥ ପଦଗୁଡିକର ପାଠ ମଧ୍ୟ ବହୁପରିମାଣରେ ଭିନ୍ନ ] ।

**ଆଧୁନିକ ରୂପାନ୍ତର:—**

ଶୂନ୍ୟ ବାହୁ ତଥତା ପହ୍ନାର କରି
ମୋହ-ଭଣ୍ଡାର ନେଇ ସକଳ ନେଲି ହରି ।
ଘୁମଇ ନ ଚେତଇ ସ୍ୱପର ବିଭାଗ

ସହଜ ନଦ୍ରାକୁ କାହ୍ନିଲ ଉଲଙ୍ଗ ।
ଚେତନା ନା ବେଦନା ? ଭଗ୍ନ ଛନ୍ଦ ଗଲ
ସକଳ ମୁକତ ଭଣ ସୁଖେ ଶୋଇଲ ।
ସ୍ୱପନେ ମୁଁଇ ଦେଖିଲ ତ୍ରିଭୁବନ ଶୂନ୍ୟ
ଘୋଳଦେଇ ଗମନାଗମନ ବହୁନ ।
ସାକ୍ଷୀ କରବ ଜାଲନ୍ଧରୀ ପାଏ
ପାଖେ ନ ଗୁହିଁଇ ମୋର ପଣ୍ଡିତାଚୁର୍ଯେ ।

## ସରଳାର୍ଥ:—

ଏହ ଗୀତକାରେ କାହ୍ନୁପା କହୁଛନ୍ତି ଯେ ଶୂନ୍ୟ ବାହୁକୁ (ମତାନ୍ତରେ-ବାସକୁ) ତଥତା ଦ୍ୱାରା ପ୍ରହାର କରି, ତହିଁରୁ ସମସ୍ତ ମୋହଭାବ ଅପହରଣ କରିଦେଲେ । ଏହା ଦ୍ୱାରା ସଂସାର ମୋହମୁକ୍ତ ହୋଇ ସହଜାନନ୍ଦରେ ପ୍ରତିଷ୍ଠିତ ହେବାରୁ ସହଜଭାବାଚ୍ଛନ୍ନ କାପାଳିକ ସିଦ୍ଧ କାହ୍ନୁପାଙ୍କ ଚିତ୍ତରେ ବାହ୍ୟଚେତନା ଲୁପ୍ତ ହେଲ । ସେ ଜାଗ୍ରତ କି ନିଦ୍ରିତ ଜାଣିପାରିଲେ ନାହିଁ କମ୍ଭା କିଛି, ପର ଭେଦଜ୍ଞାନ ରହିଲ ନାହିଁ । ସମସ୍ତ ପ୍ରକାର ଚେତନା ଓ ବେଦନା ରହିତ ହୋଇ ସେ ଗାଢ଼ ନିଦ୍ରାଚ୍ଛନ୍ନ ହେଲେ ଏବଂ ସକଳ ସାଂସାରିକ ବନ୍ଧନରୁ ମୁକ୍ତହୋଇ ଶାନ୍ତିରେ ଶୋଇପଡ଼ିଲେ । ସ୍ୱପ୍ନରେ ସେ ଦେଖିଲେ ଯେ ତ୍ରିଭୁବନ ଶୂନ୍ୟ; କାହାର ଆଗମନ ନାହିଁ କି ପ୍ରତ୍ୟାଗମନ ନାହିଁ । (ମତାନ୍ତରେ—ଚନ୍ଦ୍ରସୂର୍ଯ୍ୟର ଯାତାୟାତ —ମୁନିଦତ୍ତ, ଜନ୍ମମୃତ୍ୟୁ ଘୂରପାକ—ମଣୀନ୍ଦ୍ର ବସୁ, ଘଣିର ଘୂରିବା—ଡ. ସେନ୍, ନିଶ୍ୱାସ ପ୍ରଶ୍ୱାସ—ଶହୀଦୁଲ୍ଲାହ) । ଏହ ଅନୁଭୂତ ସତ୍ୟ କି ମିଥ୍ୟା, ଏହାର ପ୍ରମାଣ ଏକା ଦେଇ ପାରିବେ ଜାଲନ୍ଧରୀପାଦ । ତାଙ୍କ ବ୍ୟତୀତ ଏହା ବୁଝିବାକୁ ଆଉ କୌଣସି ପଣ୍ଡିତାଚାର୍ଯ୍ୟଙ୍କୁ ମୁଁ ପାଖରେ ଦେଖୁ ନାହିଁ । (ମତାନ୍ତରେ—ମୋତେ କେହ ପଣ୍ଡିତାଚାର୍ଯ୍ୟ ବୁଝାନ୍ତି ନାହିଁ— ଶହୀଦୁଲ୍ଲାହ, ମୋ ପାଖରେ ରହିବାକୁ କେହ ପଣ୍ଡିତାଚାର୍ଯ୍ୟ ଚାହେଁ ନା —ଡ. ସେନ୍, "my ପଣ୍ଡିତାଚାର୍ଯ୍ୟ does not look at me"—ଡ. ସୁନୀତ ଚାଟାର୍ଜ୍ଜି) ।

## ବିଶେଷ ଅର୍ଥ:—

ଶୂନ୍ୟବାହ—ତିବତୀ ଅନୁବାଦରେ ଶୂନ୍ୟଶାଖା, ଶାସ୍ତ୍ରୀ ପ୍ରକାଶିତ ସଂସ୍କୃତ ଟୀକାରେ 'ବାସନାଗାର' କନ୍ତୁ ଚର୍ଯ୍ୟାଗୀତକୋଷସ୍ଥ ଟୀକାରେ 'ବାସନାବଗ' ।

ଶୂନ୍ୟ ଏଠାରେ ପ୍ରଥମ ଶୂନ୍ୟତତ୍ତ୍ୱ ଅର୍ଥରେ ପ୍ରୟୋଗ ହୋଇଛି । କାରଣ ଏହ ତିନି ଶୂନ୍ୟ ସମ୍ପୂର୍ଣ୍ଣ ଦୋଷରହିତ ନୁହେଁ । ଅଥବା ବା ୪ର୍ଥ ଶୂନ୍ୟ ବା ସହଜ ଶୂନ୍ୟରେ ପ୍ରବେଶ କଲେ ଚିତ୍ତ ସଂପୂର୍ଣ୍ଣ ମୁକ୍ତ ହୁଏ । ତେଣୁ ଏଠାରେ ପ୍ରଥମଶୂନ୍ୟସ୍ୱରେ

ସଂସ୍କୃତ ଦୋହକୁ ତଥତା ବା ଚତୁର୍ଥ 'ଶୂନ୍ୟ'ଦ୍ୱାରା ନିରାକରଣ କରିବା କଥା ଉଲ୍ଲେଖ କରାଯାଇଛି ।

ଶୂନ୍ୟଚତୁଷ୍ଟୟ—ଶୂନ୍ୟଞ୍ଚ ଅତିଶୂନ୍ୟଞ୍ଚ ମହାଶୂନ୍ୟଂ ତୃତୀୟକମ୍ । ଚତୁର୍ଥଂ ସର୍ବଶୂନ୍ୟଞ୍ଚ ଫଳହେତୁ ପ୍ରଭେଦତଃ । ନାଗାର୍ଜୁନ ପାଦ—ପଞ୍ଚକ୍ରମ ।

୧. ଶୂନ୍ୟ-ଆଲୋକ, ପ୍ରଜ୍ଞା, ସ୍ତ୍ରୀ, ବାମ, ଚନ୍ଦ୍ରମଣ୍ଡଳ, ପଦ୍ମ, ଅ—ଏଥିରେ ଚିତ୍ତର ପ୍ରକୃତି ଚଞ୍ଚଳ, ପରାଧୀନ ଓ ୩୩ ଦୋଷଯୁକ୍ତ ।

୨ ଅତିଶୂନ୍ୟ—ଆଲୋକାଭାସ, ଉପାୟ, ପୁରୁଷ, ଦକ୍ଷିଣ, ସୂର୍ଯ୍ୟମଣ୍ଡଳ, ବଜ୍ର, କ-ଏଥିରେ ଚିତ୍ତ ୪୦ ଦୋଷଯୁକ୍ତ ରହେ ।

୩. ମହାଶୂନ୍ୟ—ଆଲୋକୋପଲବ୍ଧି, ପ୍ରଜ୍ଞୋପାୟ, ଶୂନ୍ୟ ଓ ଅତିଶୂନ୍ୟର ଯୁଗନଦ୍ଧରୂପ । ଏଥିରେ ଚିତ୍ତ ୭ ଦୋଷଯୁକ୍ତ ।

୪. ସର୍ବଶୂନ୍ୟ—ଉପର ଶୂନତ୍ରୟର ଦୋଷମୁକ୍ତ, ପରମଜ୍ଞାନ, ଆଦ୍ୟନ୍ତରହିତ, ଭାବାଭାବ ରହିତ ।

(ଦ୍ରଷ୍ଟବ୍ୟ—ObRC, P, 45 ଓ ସିଦ୍ଧସାହିତ୍ୟ ପୃ. ୯୮୧)

ତଥତା—ଦ: ଚର୍ଯ୍ୟା—୯ ଟୀକା

ସହଜ—ଦ: ଚର୍ଯ୍ୟା—୨୯ ଟୀକା

ଅବଣାଗବଣ—ଦ୍ର: ଚର୍ଯ୍ୟା-୨୧,—ମାଉରେ ଜୋଇ ମୂଷା ପବଣାଜେଁଣ ତୁଟ ଅ ଅବଣା-ଗବଣା ।। ଚର୍ଯ୍ୟା-୪୭,— ମୋହ କମ୍ବୁକ୍କା ଜଇ ମଣା—ତବେଁ ତୁଟଇ ଅବଣା-ଗବଣା ।। ସଂସ୍କୃତ ଟୀକାରେ ଏହାର ଅର୍ଥ କରାଯାଇଛି—ସଂସାରଗତେ ଯାତାୟାତଂ ।।

କାଲହିପା—୮୪ ସିଦ୍ଧ ମଧ୍ୟରେ ଅନ୍ୟତମ ପ୍ରଖ୍ୟାତ ସିଦ୍ଧ । ଏହାଙ୍କର ନାମାନ୍ତର କାହ୍ନପା । କାହ୍ନୁପା ଏହାଙ୍କର ଶିଷ୍ୟ ।

ଚତୁର୍ଥ ପଦର ଅର୍ଥବୋଧ ପାଇଁ ମୁଣ୍ଡକର ଉକ୍ତ ଏହି ବାକ୍ୟଟି ସ୍ମରଣୀୟ, ଯଥା ଭୂମାଗ୍ନି ସ୍ୱପ୍ନାନ୍ତରେଷୁ ସ୍ୱପ୍ନଂ ଜାତଂ ମୃତଂ ଚ ପଶ୍ୟତି । ଜାଗ୍ରେତ୍ଽପି ଭୂଷ୍ମାତ୍ମକେ ଦୌର୍ମନସ୍ୟ । ଏବଂ ଜାନୀଥ ସର୍ବଧର୍ମାନ୍ । (ଆଗମ) ।

# ନ୪୦-(ମୂକବଧିର ଉପଦେଶ-ଚର୍ଯ୍ୟା)

ରାଗ-ମଲସୀ ଗଡ଼ୁଡ଼ା

**ମୂଳ:—**

ଜୋମଣ ଗୋଅର ଆଲଜାଲ
ଆଗମ ପୋଥୀ ଇଷ୍ଟାମାଳା ।। ୧ ।।
ଭଣ କଇସେଁ ସହଜ ବୋଲବା ଜାଅ ।
କାଅବାକ୍ ଚିଅ ଜସୁ ଣ ସମାଅ ।। [ଧ୍ରୁ]
ଆଲେ ଗୁରୁ ଉଏସଇ ସୀସ ।
ବାକ୍ପଥାତୀତ କହିବ କୀସ ।। ୨ ।।
ଜେତଇ ବୋଲୀ ତେତ ବିଟାଳ ।
ଗୁରୁ ବୋବ ସେ ସୀସା କାଲ ।। ୩ ।। [ଧ୍ରୁ]
ଭଣଇ କାହ୍ନୁ ଜିଣରଅଣ ବି କଇସା ।
କାଲେ ବୋବ ସଂବୋହିଅ ଜଇସା ।। ୪ ।। [ଧ୍ରୁ]

**ପାଠାନ୍ତର—**

।

୧. (କ, ଘ) ଗୋଏର ୧. (ଖ) ଇଚଠାଧାଲା (ଘ) ଠଣ୍ଟାମାଲ ୪ଣ୍ଟାମାଳୀ । (ଖ) ଜାଇ, (ଘ) ଜାସ୍ତ ୪. (ଖ) ସମାଇ, (ଘ) ସମାସ୍ତ ୫. [ଖ,ଘ] ଆଲେଁ (ଙ୍ଗ) ଅଲେଁ ୬. (ଙ) ତେଜଇ ୯. [କ] ବକସାଇସା ୧୦. (ଖ, ObRC) କାଲବୋବେ, (ଗ,ଘ) କାଲେଁବୋବ । (ଢବଣ୍ଡି ଅନୁବାଦ ଅନୁସାରେ ୨. ଆଗମ ପୋଥୀ ଇଷ୍ଟାମାଲ) ।।

**ଆଧୁନିକ ରୂପାନ୍ତର:—**

ଯାହା ମନ ଗୋଚର ଆଲଜାଲ
ଆଗମ ପୋଥି ଇଷ୍ଟମାଳା ।
ଭଣ କେମନ୍ତ ସହଜ ବୋଲାଯାଏ
କାୟବାକଚିତ୍ତ ଯାହେ ନ ସମ୍ଭାଏ ?

ଆଲେଁ ଗୁରୁ ଉପଦେଶଇ ଶିଷ୍ୟ
ବାକ୍ ପଥାତୀତ କହିବ କୀସ ?
ଯେତେ ହିଁ ବୋଲି ତେତେ ବିଟାଲ
ଗୁରୁ ବୋବା ସେ ଶିଷ୍ୟ କାଲ ।
ଭଣଇ କାହ୍ନୁ ଜିନ ରତନ ବି କେସନ
କାଲେ ବୋବା ସବୋଧଇ ଯେସନ ।

## ସରଳାର୍ଥ:—

ସହଜ ମନଗୋଚର ବିଷୟ ନୁହେଁ କିମ୍ବା ଆଗମ ପୋଥିପାଠ ଓ ଇଷ୍ଟମାଳା ଜପ ଦ୍ୱାରା ତାହାର ସ୍ୱରୂପ ଅବଧାରଣା କରି ହୁଏ ନା । [ତୁ: ସଅ ସମ୍ବେଅଣ ତତ୍ତ୍ୱଫଳ ସରହପା ଭଣନ୍ତି—ଜୋମଣ ଗୋଅରେ ପାଠିଅଇସୋ ପରମନ୍ଥଅଣ ହୋନ୍ତି : ଦାର୍ତ୍ତୀ ] ଏହାଦ୍ୱାରା ଯାହା ଜଣାଯାଏ ତାହା କେବଳ ଅସ୍ପଷ୍ଟ ବା ଇନ୍ଦ୍ରଜାଲ ପରି ମିଥ୍ୟା । ତୁମେ କିପରି କହୁଛ ମୁଁ ସହଜ କଥା କହିବି ? କାୟବାକ୍ୟଚିତ୍ତ ଯେଉଁ ବିଷୟରେ ପ୍ରବେଶ କରେ ନା ସେ କଥା କିପରି ବୁଝାଯାଇ ପାରିବ ? ଗୁରୁ କେବଳ ଇଚ୍ଛାରେ ଏ ବିଷୟରେ ଶିଷ୍ୟକୁ କହି ହୁଏ । ଯାହା ବାକପଥାତୀତ ବା ଅବର୍ଣ୍ଣନୀୟ, ସେ କଥା କିଏ କହିବ ? ପୁଣି ଏ ବିଷୟରେ ଯେତେ ବେଶି କହିବ ସେତେ ଗୋଳମାଳିଆ ହୋଇଯିବ । ଏବିଷୟରେ କହିବାବାଲା ସବୁ ଗୁରୁ ଜଡ଼ା ଏବଂ ଶୁଣିଲାବାଲା ସବୁ ଶିଷ୍ୟ କାଲ । କାହ୍ନୁ କହନ୍ତି—ତା ହେଲେ କିପରି ଜିନ-ରତ୍ନଙ୍କର ବର୍ଣ୍ଣନା କରାଯିବ ? ନା ଯେପରି କାଲକୁ ଜଡ଼ା ଇଙ୍ଗିତ ଦ୍ୱାରା ବୁଝାଏ ଏବଂ ଦୁହେଁ ପରସ୍ପରର ବକ୍ତବ୍ୟ ଭାବବଶରୁ ବୁଝିବାକୁ ସମର୍ଥ ହୁଅନ୍ତି, ଗୁରୁ ସେପରି ଶିଷ୍ୟକୁ ପ୍ରସ୍ତୁତ କରି ଆଭାସ ଦ୍ୱାରା ବୁଝାଇ ପାରନ୍ତି ।

ଏହି ଗୀତଟି ସହିତ ଚର୍ଯ୍ୟା—୧୯ ଓ ୩୨ ତୁଳନୀୟ ।

## ବିଶେଷ ଅର୍ଥ:—

ସହଜ—ଦ୍ର: ଚର୍ଯ୍ୟା—୧୯ ଟୀକା ।

ଜିନରତ୍ନ—"ଜିନରତ୍ନଂ ରତ୍ନମନନ୍ତମନୁତ୍ତର ସୁଖଂ, ତଦୋତ୍ପାଦ ଯତ୍ନଂ ଚତୁର୍ଥାନନ୍ଦଂ ବୋଦ୍ଧବ୍ୟମ୍" [ ଦ୍ର: ଚର୍ଯ୍ୟା ୭—ଟୀକା ] ଜିନ— 'a chief Boudha saint' (Apte), Aconquerer Budha (A Popular Dictionary of Budhism. C. Humphreys)

## ନ. ୪୭—(ସ୍କନ୍ଧ ବିୟୋଗ-ଚର୍ଯ୍ୟା)

ରାଗ-କାମୋଦ

### ମୂଳ:—

ତଅ ସହଜେ ଶୂନ ସଂପୂନ୍ନା ।
କାନ୍ଧ ବିୟୋଏଁ ମା ହୋହି ବିସନ୍ନା ॥ ୧ ॥
ଭଣ କଇସେ କାହ୍ନୁ ନାହି ।
ଫରଇ ଅନୁଦିନ ତୈଲୋଏ ପମାଇ ॥(ଧ୍ରୁ)
ମୂଢ଼ା ଦିଠ ନାଠ ଦେଖି କାଅର ।
ଭଙ୍ଗ ତରଙ୍ଗ କି ସୋଷଇ ସାଅର ॥୨॥(ଧ୍ରୁ)
ମୂଢ଼ା ଅଚ୍ଛନ୍ତେ ଲୋଅନ ପେଖଇ ।
ଦୁଧ ମାଝେଁ ଲଢ଼ ଚ୍ଛନ୍ତେ ନ ଦେଖଇ ॥ ୩ ॥(ଧ୍ରୁ)

ଭବ ଜାଇ ଣ ଆବଇ ଣ ଏଥୁ କୋଇ ।
ଅଇସ ଭାବେ ବିଳସଇ କାହ୍ନିଲ ଜୋଇ ॥୪॥ (ଧ୍ରୁ)

### ପାଠାନ୍ତର:—

୨. (ଘ,ଘ,) ବିୟୋଏ, ୪. (ଖ,ଚ) ତେଲୋଏ (ହ କା ଧା, JDL) ତଲୋଏ, (ଖ. J.D.L. ହକାଧା) ସମାଇ ୫. (ଖ) ଢ଼ିଠ ୭. (କଖଗ, ObRC, OBLT) ଭଙ୍ଗତରଙ୍ଗ ୮. (ଚ) ମାଝେ, (କ, ଚ ଣ ଛନ୍ତେ (ଖ) ଆଛନ୍ତେ ଣ, (JDL, କା, ଗ, ObRC) ଅଚ୍ଛନ୍ତେ ନ ୯. (କା, ଗ) ଆବଇ ଏଥୁ, (ଖ) ଆବଇ ଏସୁ (କ,ଘ ଏସୁ ୧୦. (କ,ଘ) ଆଇସ, (ଖ) ଏସଭବେ ।

### ଆଧୁନିକ ରୂପାନ୍ତର:—

ତତ୍ତ୍ୱ ସହଜେ ଶୂନ୍ୟ ସମ୍ପୂର୍ଣ୍ଣ
ସ୍କନ୍ଧ ବିୟୋଗେ ନ ହୁଅ ବିଷଣ୍ଣ ।

ଭଣ କେସନେ କାହ୍ନୁ ନାହିଁ ?
ଫୁରଇ ଅନୁଦନ ତ୍ରିଲୋକେ ନପାଇ ।
ମୂଢ଼ ଦୃଷ୍ଟ ନଷ୍ଟ ଦେଖି କାତର
ଭଙ୍ଗା-ତରଙ୍ଗ କ ଶୋଷଇ ସାଗର ?
ମୂଢ଼ ଅଚ୍ଛନ୍ତା-ଲୋକ ନ ଦେଖଇ
ଦୁଧ ମଝିରେ ସର-ଅଚ୍ଛନ୍ତା ନ ଦେଖଇ ।
ଭବୁ ଯାଏ ନା ଆସେ ନା ଏଥୁ କେହ୍ନ
ଏସନ ଭାବେ ବିଳସଇ କାହ୍ନୁ ଯୋଗୀ ।

## ସରଳାର୍ଥ:—

କାହ୍ନୁପା କହନ୍ତି—ସହଜାବସ୍ଥାରେ ପ୍ରତିଷ୍ଠିତ ହୋଇ ମୋର ଚିତ୍ତ ବର୍ତ୍ତମାନ ଶୂନ୍ୟତା ଭାବରେ ପୂର୍ଣ୍ଣ ହୋଇଛି । ରୂପ, ବେଦନାଦି ପଞ୍ଚସ୍କନ୍ଧର ଅଭାବ ଲକ୍ଷ୍ୟକରି ମୁଁ ପଞ୍ଚତ୍ୱପ୍ରାପ୍ତ ହୋଇଛି ଭାବି କେହି ଦୁଃଖ କରନାହିଁ । ତୁମେ କିପରି କହୁଛ କାହ୍ନୁ ମୃତ ? ମୁଁ ତ ସଦାସର୍ବଦା ତ୍ରିଭୁବନରେ ବିହାର କରୁଛି । (ବିନ୍ଦୁଏ ଜଳ ମହାସମୁଦ୍ରରେ ମିଶିଲେ ସେଥିରେ ହିଁ ପରିବ୍ୟାପ୍ତ ହୋଇ ରହେ, ଏହି ନ୍ୟାୟରେ ବୋଧବ୍ୟ) । ମୂର୍ଖ ଲୋକମାନେ କିଛି ବିନାଶ ହେଉଥିବାର ଦେଖିଲେ କାତର ହୁଅନ୍ତି । କାରଣ ସେମାନେ ଜାଣିପାରନ୍ତି ନାହିଁ ଯେ କାହାର ବିନାଶ ହେଉନାହିଁ, କେବଳ ରୂପାନ୍ତର ଘଟୁଛି । ତମେ କଣ ଭାବୁଛ, ସମୁଦ୍ରରେ ଯେତେବେଳେ ଗୋଟିଏ ତରଙ୍ଗ ଉଠି ପୁଣି ତହିଁରେ ଲୀନ ହୋଇଯାଏ, ସେତେବେଳେ ତରଙ୍ଗରେ ଉଦ୍‌ଧୃତ ଜଳ ସମୁଦ୍ରରୁ ଶୁଷ୍କ ହୋଇଗଲା ? (ସେହିପରି ଜଗତରେ ଯାହା ଜନ୍ମ ହେଉଛି ତାହା ବିନାଶ ହେଲା ପରେ ସେହି ଜଗତରେ ହିଁ ରହୁଛି) । କେହି ଲୋକ ମୃତ୍ୟୁପ୍ରାପ୍ତ ହେଲେ (ମତାନ୍ତରେ, ସହଜାବସ୍ଥା ପ୍ରାପ୍ତ ହେଲେ ObRC) ମଧ୍ୟ ଏହି ଜଗତରେ ଅବସ୍ଥାନ କରେ । ମୂର୍ଖମାନେ କିନ୍ତୁ ତାକୁ ଦେଖି ପାରନ୍ତି ନାହିଁ । ଦୁଧ ମଧ୍ୟରେ ଘୃତ ଯେପରି ଦେଖାଯାଏ ନାହିଁ ଅଥଚ ତହିଁରେ ସର୍ବଦା ଥାଏ, ସେ ମଧ୍ୟ ସେହିପରି ଜଗତରେ ବିଦ୍ୟମାନ ରହେ । ଏହି ସଂସାରରୁ କେହି ଯାଏ ନା କି କେହି ଆସେ ନା । କାହ୍ନୁପା ଏହି ତତ୍ତ୍ୱ ବୁଝିଛନ୍ତି ବୋଲି ସୁଖଦୁଃଖ ନିରପେକ୍ଷ ହୋଇ ମହାନନ୍ଦରେ ଏ ସଂସାରର ଲୀଳଖେଳା ଉପଭୋଗ କରୁଛନ୍ତି ।

ଗୀତିକାଟିର ଭାବ ଅବବୋଧ ନିମିତ୍ତ ନିମ୍ନଲିଖିତ ବୋଲିଗୁଡ଼ିକ ପ୍ରଣିଧେୟ ।

ତିଲ୍ଲୋପା :—

କନ୍ଧ ଭୂଅ ଆଅତଣଇନ୍ଦୀ । ସହଜ ସହାବେ ସଅଲ ବିବନ୍ଦୀ ॥୧॥
ସହଜେ ଭାବାଭାବ ଣ ପୁଚ୍ଛହ । ସୁଣ କରୁଣ ସମରସ ଇଚ୍ଛଅ ॥୨॥
ଜମ୍ମ ମରଣ ମା କରହୁ ରେ ଭାନ୍ତି । ଣିଅ ଚିତ୍ତ ତହି ଣିରନ୍ତର
ହୋନ୍ତି ॥୩॥ (ବାଗ୍‌ଚୀ)

(ଚିତ୍ତ, କନ୍ଧ ଆଦି ଶବ୍ଦର ବିଶେଷ ଅର୍ଥ ପାଇଁ ଚର୍ଯ୍ୟା-ଟୀକା ଦ୍ରଷ୍ଟବ୍ୟ)

## ନଂ ୪୫ (ନିଷ୍ଫଳ ବୃକ୍ଷ-ଚ୍ଛେଦ-ଚର୍ଯ୍ୟା)

ରାଗ-ମଲ୍ଲାରୀ

### ମୂଳ—

ମଣତରୁ ପାଞ୍ଚଇନ୍ଦି ତସୁ ସାହା ।
ଆସା ବହଲ ପାତ ଫଳ ବାହା ॥ ୧ ॥
ବର ଗୁରୁ ବଅଣେ କୁଠାରେଁ ଛିଜଅ ॥
କାହ୍ନ ଭଣଇ ତରୁ ପুଣ ନ ଉଇଜଅଂ ॥(ଧ୍ରୁ)॥

ବାଢ଼ଇ ସୋ ତରୁ ସୁଭାସୁଭ ପାଣୀ ।
ଛେବଇ ବିଦୁଜନ ଗୁରୁ ପରମାଣୀ ॥ ୨ ॥ (ଧ୍ରୁ)

ଜୋ ତରୁ ଛେବଇ ଭେଉ ନ ଜାଣଇ ।
ସଢ଼ ପଡ଼ିଆଁରେ ମୂଢ଼ ତା ଭବ ମାଣଇ ॥ ୩ ॥ (ଧ୍ରୁ)

ସୁଣ ତରୁବର ଗଅଣ କୁଠାର ।
ଛେବଅ ସୋ ତରୁ ମୂଳ ନ ଡାର ॥ ୪ ॥ (ଧ୍ରୁ)

### ପାଠାନ୍ତର—

୨. [କ] ଫଳାହା [ହେ ବାହା,] (ଘ) ପାତଅ ବାହା ୩. (ଖ) ଛିଜଇ (ଚ) ଛିଜଅ ୪ (ଖ) ଉଇଜଇ ୫. (ଘ) ବାଟଇ ୭ (କଖଗଘ) ଛେବ ଭେବଅ ୯. (ଚ) ଉରୁ (ବର) ୧୦ (କଖଗଘ) ଡାଳ ।

OBLT-ଧ୍ରୁବ ପଦଟି ଶେଷ ପଦ ହେବା ଉଚିତ୍ ବୋଲି ଡ. ମୁଖାର୍ଜିଙ୍କ ମତ ।

### ଆଧୁନିକ ରୂପାନ୍ତର—

ମନ ତରୁ ପାଞ୍ଚ ଇନ୍ଦ୍ରି ତାର ଶାଖା
ଆଶା ବହୁଳ ପତ୍ରଫଳ ବହେ ।
ବର ଗୁରୁ ବଚନ କୁଠାରେଁ ଛେଦାଅ

କାହ୍ନୁ ଭଣଇ ତରୁ ପୁଣି ନ ଉଦ୍‌ଭବାଅ ।
ବଢ଼ଇ ସେ ତରୁ ଶୁଭାଶୁଭ ପାଣି
ଛେଦଇ ବିଦୁଜନ ଗୁରୁ ପରମାଣି ।
ଯେ ତରୁ ଛେଦଇ ଭେଦ ନ ଜାଣଇ
ପଡ଼ିଣ ସଡଇ ମୂଢ଼ ତା ଭବ ମାନଇ ।
ଶୂନ୍ୟ-ତରୁବର ଗଗନ କୁଠାର
ଛେଦକର ସେ ତରୁ, ଡାଳ ନୁହେ ମୂଳ ।

## ସରଳାର୍ଥ:—

ମନ ଗୋଟିଏ ବୃକ୍ଷ ସଦୃଶ । ପାଞ୍ଚ ଇନ୍ଦ୍ରିୟ ତାର ପାଞ୍ଚଟି ଶାଖା । ଆଶା ଆକାଂକ୍ଷାଦି ତହିଁର ପତ୍ର ଓ ଫଳ । କାହ୍ନୁପା କହନ୍ତି, ବଜ୍ରଗୁରୁଙ୍କ ଉପଦେଶ ରୂପକ କୁରାଢ଼ିରେ ଏହି ବୃକ୍ଷକୁ ଛେଦନ କର ଏବଂ ଏପରି କାଟିଦିଅ ଯେ ତାହା ଯେପରି ଆଉ ଜନ୍ମ ନ ହୁଏ । ଏହି ମନ-ତରୁ ନିଜର ଶୁଭାଶୁଭ କର୍ମ ରୂପକ ଜଳ ଗ୍ରହଣ କରି ବଢ଼େ । ବୁଦ୍ଧିମାନ ଲୋକ ଗୁରୁ ବଚନକୁ ପ୍ରମାଣ କରି ଏଥିରେ ଜଳଦାନ କରିବା ଦୂରେ ଥାଉ, ଏହାକୁ ଛେଦନ କରନ୍ତି । ଯେଉଁମାନେ ଏହି ବୃକ୍ଷକୁ ଛେଦନ କରିବା ଭେଦ ବା କୌଶଳ ଜାଣନ୍ତି ନାହିଁ; ସେମାନେ ସଂସାରେ ଦୁଃଖରେ ସଡ଼ନ୍ତି ଏବଂ ପୁନର୍ଜନ୍ମ ଲଭକରନ୍ତି । ପ୍ରଥମ ଶୂନ୍ୟାବସ୍ଥ ରୂପକ ବୃକ୍ଷକୁ ଚତୁର୍ଥ-ଶୂନ୍ୟ ରୂପକ କୁରାଢ଼ିରେ ଛେଦନ କର । କେବଳ ଡାଳପତ୍ର ନ କାଟି ସଂପୂର୍ଣ୍ଣ ରୂପେ ତାକୁ ନିର୍ମୂଳ କର ।

ଏହି ଗୀତକାଟି ସହଜ ଚର୍ଯ୍ୟା — ୧ ତୁଳନୀୟ ।

## ବିଶେଷ ଅର୍ଥ:—

ମନତରୁ—ଅବିଦ୍ୟା ମୋହିତ ଅପରିଶୁଦ୍ଧ ଚିତ୍ତ

ତୁ: ଅଦ୍ଵୟ ଚିତ୍ତ ତରୁଅର ଗଅ ତିହୁଅଣ ବିତ୍ଥାର ।
କରୁଣା ଫୁଲିଅ ଫଲଧରି ଣଉ ପରତ ଉଆର ।"
( ତିଲୋପା, ଦୋହା-୧୨ )

ଶୁଭାଶୁଭ ପାଣି —ନିଜ କର୍ମର ଦୋଷଗୁଣ ଦ୍ୱାରା ନିଜ ମନରେ ସୁଖ-ଦୁଃଖ ନିସ୍ପନ୍ଦିତ ହୁଏ ।

ସୁଣ ତରୁବର—ଶୂନ୍ୟ ଏଠାରେ ପ୍ରଥମ ଶୂନ୍ୟାବସ୍ଥ ଯେଉଁଥିରେ ଚିତ୍ତ ପ୍ରବେଶ କରିଥିଲେ ମଧ୍ୟ ମୋହାଦି ଦୋଷ ବିନିର୍ମୁକ୍ତ ହୋଇ ନ ଥାଏ ।
( ଦ୍ର:ଚର୍ଯ୍ୟା-୩୬ ଟୀକା ) ।

ଗଗନ —ଚତୁର୍ଥ ଶୂନ୍ୟ ବା ପ୍ରଭାସ୍ଵର ଶୂନ୍ୟ । ତୁ:ଚର୍ଯ୍ୟା ୩୬ "ତଥତା" ।

ଡାଳ—ଇନ୍ଦ୍ରିୟ ଓ ବାସନା ସମୂହ ।

# ୪-ସରହପା

ସରହପା ଅନେକଙ୍କ ମତରେ ଆଦ୍ୟସିଦ୍ଧ, ବିଭିନ୍ନ ସୂତ୍ରରୁ ତାଙ୍କ ଜୀବନୀ ସମ୍ବନ୍ଧରେ ନାନାପ୍ରକାର ତଥ୍ୟ ମିଳିଥାଏ । ତେଙ୍ଗୁରରୁ ଜଣାଯାଏ ସେ ଥିଲେ ଉଡ୍ଡୀୟାନ ବାସୀ, ତାରାନାଥ କହନ୍ତି ତାଙ୍କର ଜନ୍ମସ୍ଥାନ ଓଡ଼ିଶା; ମାତ୍ର ସାଗ ସମ ଜୋନ ଜାଙ୍ଗ ଅନୁସାରେ ସେ ପ୍ରାଚ୍ୟ ଦେଶର ରାଜ୍ଞୀ ନଗରରେ ଜନ୍ମିଥିଲେ । ସେତେବେଳେ ତାଙ୍କର ନାମଥିଲା ରାହୁଲଭଦ୍ର ବା ରାହୁଲ ବ୍ରଚ ଓ ସରୋଜ ବ୍ରଜ ବା ପଦ୍ମବଜ୍ର । ତାଙ୍କର ସମୟ ସମ୍ବନ୍ଧରେ ସାଂକୃତ୍ୟାୟନଙ୍କ ମତ ସେଥିଲେ ଧର୍ମପାଳଙ୍କ (୭୭୦-୮୧୫) ସମକାଳୀନ ଏବଂ ଖ୍ରୀ ୭୮୦ ବେଳକୁ ଦେହତ୍ୟାଗ କରିଥିଲେ । ଓଡ଼ିଶା ମ୍ୟୁଜିୟମରେ ସୁରକ୍ଷିତ ପଦ୍ମପାଣି ଅବଲୋକିତେଶ୍ୱର ମୂର୍ତ୍ତି ସନ୍ନିହିତ ଅଭିଲେଖ ଭିତ୍ତିରେ ତାଙ୍କର ସମୟ ଶୁଭଙ୍କର ଦେବ ୧ମଙ୍କ ରାଜତ୍ୱକାଳ (୭୯୦-୮୩୧) ପରିଧି ମଧ୍ୟରେ ନିରୂପଣ କରାଯାଇପାରେ ।

ସେ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ—ପିତା ବ୍ରାହ୍ମଣ, ମାତା ଡାକିନୀ । ବ୍ରାହ୍ମଣ ଓ ବୌଦ୍ଧ ଶାସ୍ତ୍ରରେ ଯଥେଷ୍ଟ ପାଣ୍ଡିତ୍ୟ ଅର୍ଜନ କଲାପରେ ସେ ଓଡ଼ିଶାର ରାଜା ଚୌବେସୁକଲଶଙ୍କ ଦ୍ୱାରା ମନ୍ତ୍ରଯାନରେ ଦୀକ୍ଷିତ ହୋଇଥିଲେ । ପରବର୍ତ୍ତୀକାଳରେ ରାଜା ରତ୍ନପାଳ ଓ ତାଙ୍କର ବ୍ରାହ୍ମଣ ମନ୍ତ୍ରୀଙ୍କୁ ନିଜର ସାଧନାଦ୍ୱାରା ଅଭିଭୂତ କରାଇ ସେମାନଙ୍କୁ ଦୀକ୍ଷାଦାନ କରିଥିଲେ । ତାପରେ ସେ ମହାରାଷ୍ଟ୍ର ଅଞ୍ଚଳକୁ ଯାଇ ମହାମୁଦ୍ରା ସାଧନା କରିଥିଲେ । ସେଠାରେ ତାଙ୍କର ଯୋଗିନୀ ସ୍ୱରୂପ ଗୋଟିଏ ଶରକାର କନ୍ୟାକୁ ଗ୍ରହଣ କରିଥିଲେ । ତେଣୁ ସିଦ୍ଧିଲାଭ ପରେ ତାଙ୍କର ନାମ ହୋଇଥିଲା ସରହ । ଏହି ଶବ୍ଦଟିର ମୂଳ ଶରହସ୍ତ, ଶଲଭ ବା ସରଭ । ସେ ମଧ୍ୟ କିଛିକାଳ ନାଳନ୍ଦାରେ ଅଧ୍ୟାପନା କରିଥିଲେ ।

ସରହ ନାମରେ ଏକାଧିକ ବ୍ୟକ୍ତି ଥିବାର ଅନୁମାନ କରାଯାଇଥାଏ । ସ୍ପଷ୍ଟତଃ ଉପଲବ୍ଧ ହୁଏ ବଡ଼ ସରହ ହେଉଛନ୍ତି ରାହୁଲଭଦ୍ର ଏବଂ ସାନ ବା ଲଘୁ ସରହ ହେଉଛନ୍ତି ଶବରୀପାଙ୍କ ଶିଷ୍ୟ । ସମ୍ଭବତଃ ସାନସରହହିଁ ଚର୍ଯ୍ୟାଗୀତିକାର ଲେଖକ ।

ତେଙ୍ଗୁର ତାଲିକାରେ ସରହ ଭଣିତାରେ ୨୫ଟି ତାନ୍ତ୍ରିକ ଗ୍ରନ୍ଥ ମିଳେ । ତାଙ୍କୁ ଏଥିରେ ମହାଯୋଗୀ, ଯୋଗୀଶ୍ୱର, ମହାବ୍ରାହ୍ମଣ, ମହାଆଚାର୍ଯ୍ୟ ଇତ୍ୟାଦି ରୂପରେ ଆଖ୍ୟାତ କରାଯାଇଛି । ସାଧନମାଳାରେ ରକ୍ତଲୋକେଶ୍ୱର ଓ ତ୍ରୈଲୋକ୍ୟବଶଙ୍କର ଉପାସନା ସହିତ ସମ୍ବନ୍ଧିତ ଦୁଇଟି ସାଧନା ମିଳେ । ସ୍ୱତନ୍ତ୍ରଟି ଚର୍ଯ୍ୟାଗୀତିକା ବ୍ୟତୀତ ସେ ବହୁସଂଖ୍ୟକ ଦୋହା ରଚନା କରିଥିଲେ । ତାଙ୍କର ଦୋହାସୂଚକ ଦୋହାକୋଷ ଗୀତ, ଦୋହାକୋଷ ଚର୍ଯ୍ୟାଗୀତି ଓ ଦୋହାକୋଷ ଉପଦେଶଗୀତି ନାମକ ତିନୋଟି ଗ୍ରନ୍ଥରେ ପ୍ରଧାନତଃ ସଙ୍କଳିତ ହୋଇଛି ।

## ନ. ୨୨ (ଅଚିନ୍ତ୍ୟ ଧର୍ମ-ଚର୍ଯା)

ରାଗ ·ଗୁଞ୍ଜରୀ

**ମୂଳ:—**

ଅପଣେ ରଚି ରଚି ଭବ ନିର୍ବାଣା ।
ମିଛେଁ ଲୋଅ ବନ୍ଧାବଏ ଅପଣା ॥ ୧ ॥
ଅମ୍ହେ ଣ ଜାଣହୁ ଅଚିନ୍ତ ଜୋଇ ।
ଜାମ ମରଣ ଭବ କଇସଣ ହୋଇ ॥ ୨ ॥
ଜଇସୋ ଜାମ ମରଣ ବି ତଇସୋ ।
ଜୀବନ୍ତେ ମଇଲେଁ ନାହି ବିଶେସୋ ॥ ୩ ॥
ଜା ଏଥୁ ଜାମ ମରଣେ ବିସଙ୍କା ।
ସୋ କରଉ ରସ ରସାନେରେ କଂଖା ॥ ୪ ॥
ଜେ ସଚରାଚର ତିଅସ ଭମନ୍ତି ।
ତେ ଅଜରାମର କିମ୍ପି ନ ହୋନ୍ତି ॥ ୫ ॥
ଜାମେ କାମ କି କାମେ ଜାମ ।
ସରହ ଭଣତି ଅଚିନ୍ତ ସୋ ଧାମ ॥ ୬ ॥

**ପାଠାନ୍ତର:—**

୧. ଘ—ନିବାଣା, ଚ—ମିଚ୍ଛେ
୨. ଘ—ଅମ୍ଭେ
୩. ଘ--ଜଇସା; କ, ଘ, OBLT-ମଅଲେଁ, ଖ, ଚ-ମଇଲେଁ
୪. ଘ, OBLT—ବି ସଙ୍କା; କ-କଖା
୫. ଙ—ସେ ସେ

**ଆଧୁନିକ ରୂପାନ୍ତର:—**

ଆପେ ରଚି ରଚି ଭବ ନିର୍ବାଣ
ମିଛେ ଲୋକ ଆପଣାକୁ କରେ ବନ୍ଧନ ।

ଆମ୍ଭେ ନ ଜାଣୁ ଅଚନ୍ତ୍ର ଯୋଗୀ
ଜନ୍ମ ମରଣ ଭବ କେମନ୍ତ ହୋଇ ।
ଯେପରି ଜନ୍ମ ମରଣ ବି ସେପରି
ଜୀବନ୍ତେ (କି) ମଲେ ନାହିଁ ବିଶେଷ ।
ଯେ ଏଥି ଜନ୍ମ ମରଣେ ବିଶଙ୍କ
ସେ କରୁ ରସ ରସାୟନର ଆକାଂକ୍ଷା ।
ଯେ ସଚରାଚର ତ୍ରିଦଶ ଭ୍ରମନ୍ତି
ସେ ଅଜରାମର କିମ୍ପା ନ ହୁଅନ୍ତି ?
ଜନ୍ମରେ କର୍ମ କି କର୍ମରେ ଜନ୍ମ
ସରହ ଭଣଇ ଅଚନ୍ତ୍ୟ ସେ ଧର୍ମ ।

## ସରଳାର୍ଥ:—

ସାଧାରଣ ଲୋକେ ନିଜ ମନରେ ଭବ ଓ ନିର୍ବାଣ ରୂପକ ଦ୍ୱିବିଧ ବିକଳ୍ପ କଥା ରଚନା କରି ଇଚ୍ଛାରେ ନିଜକୁ ନିଜେ ସଂସାର ବନ୍ଧନରେ ପକାନ୍ତି । ଏ ବିଷୟରେ ଆମେ ଚିନ୍ତା କରୁନା । ଆମେ ଅଚିନ୍ତ ଯୋଗୀ ଜନ୍ମ, ମରଣ ଓ ସ୍ଥିତି କିପରି ହୁଏ ଜାଣୁନାହିଁ । ଆମ ନିକଟରେ ଜନ୍ମ ଯାହା, ମରଣ ବି ତାହା; ଜୀଇବା ଓ ମରିବା ମଧ୍ୟରେ ପ୍ରଭେଦ ଆମେ ଉପଲବ୍ଧି କରୁନାହିଁ । [ତୁ: ଚର୍ଯ୍ୟା-୪୯ : ଜୀବନ୍ତେ ମଇଲେ ନାହି ବିଶେଷ] ଯେଉଁମାନେ ଏ ଦୁନିଆରେ ଜନ୍ମମରଣ ପ୍ରତି ଭୀତ, ସେମାନେ ଦୀର୍ଘଜୀବନ ଲାଭ ପାଇଁ ରସ-ରସାୟନ ଚିଛି କାମନା କରନ୍ତୁ । ସଚରାଚର ଦେବଲୋକ ପର୍ଯ୍ୟନ୍ତ ଯାତାୟାତ କରିପାରୁଥିବା ଲୋକେ ମଧ୍ୟ କାହିଁକି ତେବେ ଅଜରାମର ହୋଇପାରୁନାହାନ୍ତି ? ଜନ୍ମ ହେତୁ କର୍ମ କି କର୍ମହେତୁ ଜନ୍ମ—ସରହ, କହନ୍ତି ଏହି ସମସ୍ୟାର ସମାଧାନ ଅଚିନ୍ତନୀୟ ।

## ବିଶେଷ ଅର୍ଥ:—

ଭବ—ଜନ୍ମ, ସ୍ଥିତି ।

ରସରସାନ—ରସେଶ୍ୱର ଦର୍ଶନ ଅନୁସାରେ ଅମରତ୍ୱ ଲାଭ ଅର୍ଥାତ ଜୀବନ୍ମୁକ୍ତି ମାନବର ଶ୍ରେଷ୍ଠ ସାଧନା ହେବା ଉଚିତ । ମୁଖ୍ୟପରେ କଣ ହେବ ତାହାପାଇଁ ଏ ଜୀବନରେ ସାଧନା କରିବାର ଆବଶ୍ୟକତା ନାହିଁ । ସେଥିପାଇଁ ରସେଶ୍ୱର ସଂପ୍ରଦାୟ ବିଭିନ୍ନ ଔଷଧ ପାରିପାଚନ, ପାରଦ ଓ ଅଭ୍ରକ ଯୋଗ ମୂଳକ ରସାୟନ ଉପରେ ଗୁରୁତ୍ୱ ପ୍ରଦାନ କରନ୍ତି ।

ସର୍ବଦର୍ଶନ ସଂଗ୍ରହ:—ଏକ୍ତ ଦର୍ଶନେଽପି ମୁକ୍ତସ୍ତୁ ଦର୍ଶିତା ପିଣ୍ଡପାତନେ ।
ରସ୍ୱମଲକବତ ସାଽପି ପ୍ରତ୍ୟକ୍ଷାନୋପଲଭ୍ୟତେ ।
ତସ୍ମାନ ତଂ ରକ୍ଷେତ ପିଣ୍ଡଂ ରସୈଶ୍ଚୈବ ରସାୟନୈଃ ।
ସରହପା—ଅରେ ପୁତ୍ତେ ବୋଜହୁ ରସରସଣ ସୁସଣ୍ଠିଧ ଅବେକ୍କ ।
ବକ୍‌ଖାଣ ପଢ଼ନ୍ତେହ୍ନ ଜଗହ୍ନ ଣ ଜାଣିହ୍ନ ସୋକ୍‌ଝ ॥ [ଦୋହା-୫୧, ବାଗଚୀ]
ତଅସ (ତ୍ରିଦଶ)—ତ୍ରିଦଶା—ଉତ୍ପାଦ, ବିନାଶ, ସ୍ଥିତ (ସେନ)
ତ୍ରିଦଶ—ବାଲ୍ୟ, କୌମାର, ଯୌବନ (ବାଗଚୀ)

## ବ୍ୟାଖ୍ୟାନ୍ତର:—

ସଚରାଚର ତ୍ରିଦଶ—ସୃଷ୍ଟିଚକ୍ରରେ ଜନ୍ମ, ମୃତ୍ୟୁ, ସ୍ଥିତ ତ୍ରିଦଶା (ସେନ)
ଜାମେ    ଜାମ—ମୁନିଦତ୍ତ : ଜନ୍ମ ଦ୍ୱାରା କାମ ନା କାମ ଦ୍ୱାରା ଜନ୍ମ ହୁଏ ।
ସେନ    : ଜନ୍ମରୁ କାମ ନା କାମରୁ ଜନ୍ମ ।
ଧାମ—ଶାସ୍ତ୍ରୀ—ନିବାସ ସ୍ଥାନ
ବାଗଚୀ—ଧର୍ମ ।

## ନ. ୩୨ (ମନଃ ଶିକ୍ଷା-ଚର୍ଯ୍ୟା)

### ରାଗ-ଦେଶାଖ

**ମୂଳ:—**

ନାଦ ନ ବିନ୍ଦୁ ନ ରବି ନ ଶଶି ମଣ୍ଡଳ ।
ଚିଅରାଅ ସହାବେ ମୂକଳ ॥ ୧ ॥
ଉଜୁ ରେ ଉଜୁ ଛାଡ଼ି ମା ଲେହୁରେ ବଙ୍କ ।
ନିଅଡ଼ି ବୋହି ମା ଜାହୁ ରେ ଲଙ୍କ ॥ ୨ ॥
ହାଥେ ରେ କାଙ୍କଣ ମା ଲେଉ ଦାପଣ ।
ଅପଣେ ଅପା ବୁଝ ତୁ ନିଅ ମଣ ॥ ୩ ॥
ପାର ଉଆରେଁ ସୋଇ ଗଜିଇ ।
ଦୁଜ୍ଜନ ସାଙ୍ଗେ ଅବସରି ଜାଇ ॥ ୪ ॥
ବାମ ଦାହିଣ ଜୋ ଖାଲ ବିଖଲା ।
ସରହ ଭଣଇ ବାପା ଉଜୁବାଟ ଭାଇଲା ॥ ୫ ॥

**ପାଠାନ୍ତର:—**

୧. ଘ—ଚିଅରାଜ
୨. ଘ—ଦୁଢ଼ୁରେ ହକ୍କ; ଘ—ନିଅଡ଼୍ହି, କ—ନିଅହି
୩. ଢ—ଲେଉ, ଚ—ଲେଉ, ଖ—ଲେହୁ; ଚ—ହାଥେର
୪. ଙ—ପାରେ୍ଆରେ; ଖ—ଜୋଇ; କ,ଘ—ଗଜଇ, ଗ—ସିଝଇ, ଚ—ଟୀକା
ଅନୁସାରେ 'ମକ୍କନ୍ତ'; ଚ—ସଙ୍ଗେ; ଖ—ଅବସ ମର ଜାଇ
୫. ଘ—ବାପା, ଚ—ଭଇଲ

**ଆଧୁନିକ ରୂପାନ୍ତର:—**

ନାଦ ନା ବିନ୍ଦୁ ନା ରବି ନା ଶଶିମଣ୍ଡଳ
ଚିତ୍ତରାଜ ସ୍ୱଭାବେ ମୁକ୍ତ ।

ସୋନା ରୁଢ଼ି ନ ନିଅରେ ବଙ୍କା
ନିକଟେ ବୋଧି ନ ଯାଅରେ ଲଙ୍କା ।
ହାତେ ରେ କଙ୍କଣ ନ ଲେଉ଼ ଦର୍ପଣ
ଆପଣେ ଆପେ ବୁଝ ତୁ ନିଜ ମନ ।
ପାର ଉଆରେ ସୋହ ମଲଇ
ଦୁର୍ଜନ ସାଙ୍ଗେ ଅପସର ଯାଇ ।
ବାମ ଡାହାଣ ଯେ ଖାଲ ବିଖାଲ
ସରହ ଭଣଇ ବାପା ସିଧାବାଟ ଭାବିଲ ।

## ସରଳାର୍ଥ:—

ମୁକ୍ତି କାମନାରେ ନାଦ, ବିନ୍ଦୁ, ରବି, ଶଶି ଆଦି ସାଧନା ଅନାବଶ୍ୟକ, ଚିତ୍ତ ସ୍ୱଭାବତଃ ମୁକ୍ତ। ସିଧା ସହଜ ବାଟଗ୍ରୁଢ଼ି ସାଧନାର ଜଟିଳ ପଥରେ ଯାଅନାହିଁ । ସବୁ ତତ୍ତ୍ୱ ନିଜ ଭିତରେ, ନିଜ ପାଖରେ ଅଛି; ସେଥିପାଇଁ ଦୂର ଦୂରାନ୍ତରେ ଅନୁସନ୍ଧାନ କରିବା ଅନାବଶ୍ୟକ । ହାତରେ କଙ୍କଣ ଥାଉଁ ଥାଉଁ ଦର୍ପଣ କଣ ଦରକାର ? ନିଜ ମନକୁ ନିଜେ ବୁଝ । ସଂସାର ସମୁଦ୍ରରେ ପାରହେବାର ବେଳେ ଚିତ୍ତ ନିଜେ ନିଜକୁ ରକ୍ଷାକରେ । ଆପାତ ସହାୟକାରୀ ଦୁର୍ଜନ ସଙ୍ଗ ହେଲେ ଚିତ୍ତର ସୋହଶକ୍ତି ଅପସୃତ ହୁଏ । ବାମ ଡାହାଣ ଦୁଇପାଖେ ଖାଲ—ତେଣୁ ସରହ କହନ୍ତି, ବାପା ! ମଝିବାଟକୁ ଭାବ ସିଧା ଭାଲ ।

## ବିଶେଷ ବ୍ୟାଖ୍ୟା:—

ନାଦ, ବିନ୍ଦୁ/ରବି, ଶଶି—ଗୋରକ୍ଷ ପଦ୍ଧତି    ବିନ୍ଦୁ ଶିବୋ ରଜଃ ଶକ୍ତି
ଶ୍ଚନ୍ଦ୍ରୋ ବିନ୍ଦୁ ରଜୋ ରବିଃ ।
ନାଦ—ଲୋହିତ, ରଜ, ରବି, ଶକ୍ତି, ନାଭିମଣ୍ଡଳରେ ସ୍ଥିତ,
ବିନ୍ଦୁ—ପାଣ୍ଡୁର, ଶୁକ୍ର, ଚନ୍ଦ୍ର, ଶିବ, ଊର୍ଦ୍ଧ୍ୱ ଶରୀରରେ ସ୍ଥିତ ।

ତୁ: କଙ୍କଣପା—ବିନ୍ଦୁଣାଦ ଣହିଁ ପଇଠା-ଆଣ ଚାହନ୍ତେ ଆଣ ବିଣଠା (ଚର୍ଯ୍ୟା-୪୪)

ଚିତ୍ତ—ଦ୍ର. ଚର୍ଯ୍ୟା-୧ ବ୍ୟାଖ୍ୟା ।

ଦୁର୍ଜନ—ମୋହାଦି ।

ବାମ ଡାହାଣ—ଲଲନା, ରସନା, (ଦ୍ର: ଚର୍ଯ୍ୟା-୧, ଧମଣ ଚମଣ ପ୍ରକରଣ)

ତୁ: ଶାନ୍ତିପା—ବାମ ଦାହିଣ ଦୋବାଟାଛାଡ଼ୀ ଶାନ୍ତି ବୁଲଥେଉ ସଂକେଳିଉ
ଘାଟ ନ ଗୁମା ଖଡ଼ତଡ଼ିଣ ହୋଇ ଆଖି ବୁଜିଅ ବାଟ ଜାଇଉ
(ଚର୍ଯ୍ୟା—୧୫)

## ବ୍ୟାଖ୍ୟାନ୍ତର:—

ଲେଢ଼-ଲେଢ଼—୨ୟ ପଦରେ 'ଲେଢ୍ଡୁ'ର ଉଲ୍ଲେଖ ଥିବାରୁ 'ଲେଣ୍ଢ଼' ୩ୟ ପୁରୁଷ ଅନୁଜ୍ଞା (OBLT) ରୂପରେ ଗ୍ରହଣୀୟ ନୁହେଁ ।

ଗଜଇ-ଗମିଇ-ସିଝଇ—ବାଗ୍‌ଚୀ ଟୀକା ଅନୁସାରେ ଗ୍ରହଣ କରନ୍ତୁ 'ମହ୍ଲନ୍ତ'। ନଦୀପାର ହେବା ପ୍ରସଙ୍ଗରେ ଏହା ଯଥାର୍ଥ, ଯେନ—ଗଜଇ = ଗମିଇ (ଅପର ପାରେ (ଉତ୍ତୀର୍ଣ୍ଣ ହୋଇ) ସେ-ହିଁ ଅନୁସୃତ ହୁଏ ବୌଦ୍ଧଗାନ ଓ ଦୋହାଁ—ଗଜଇ = ଗଜେଇ ଘଟେ, ଠେଲି ଘଟେ । ଶହୀଦୁଲ୍ଲାହ 'ଜୋଇ ସିଝଇ' ପାଠ ଯୋଗୀ ସିଦ୍ଧି ପାଏ ଅର୍ଥ କରନ୍ତୁ ।

## ନ. ୩୮ (ନୌକା-ଚର୍ଯ୍ୟା)

ରାଗ-ଭୈରବୀ

**ମୂଳ:—**

କାଅ ଣାବଢ଼ି ଖାଣ୍ଟି ମଣ କେଡ଼ୁଆଳ ।
ସଦଗୁରୁ ବଅଣେ ଧର ପତବାଳ ॥ ୧ ॥
ଚିଅ ଥିର କରି ଧ(ର)ହୁ ରେ ନାଇ ।
ଅନ ଉପାଏଁ ପାର ଣ ଜାଇ ॥ ୨ ॥
ନୌବାହୀ ନୌକା ଟାଣଅ ଗୁଣେ ।
ମେଲି ମେଲ ସହଜେ ଜାଉଣ ଆଣେଁ ॥ ୩ ॥
ବାଟ ତ ଭଅ ଖାଣ୍ଟ ବି ବଳଆ ।
ଭବ ଉଲୋଳେଁ ସବ ବି ବୋଳିଆ ॥ ୪ ॥
କୂଳ ଲଇ ଖରେ ସୋନ୍ତେଁ ଉଜାଅ ।
ସରହ ଭଣଇ ଗଅଣେଁ ସମାଅ ॥ ୫ ।

**ପାଠାନ୍ତର:—**

୧. ଘ—ଣାବଡ଼ହି, ଛ-କେଡ଼ଆଲ
୨. କ—ଧହୁରେ ନାଖି, ଛ, ଖ-ଆନ
୩. ଙ—ନୋବାହଁ; କ-ଟାନୁଅ ଗୁଣେ, ଖ-ଟାଣଇ ଗୁଣେ, ଘ-ଟାଗୁ ଅଗୁଣେ;
ଖ-ମେଲି, ମିଲ ଚ-ମେଲ ମେଲ; OBLT-ଜାଇହ
୪. ଙ—ବାଟତ, କ-ବାଟ ଅଭଅ; ଙ-ଖଣ୍ଟ; କ-ଥଅ ବି, ଖ-ସବ୍ବ ବି,
ଘ-(ବି) ଥଅ ବି ।
୫. ଙ—ଲଅ, ଙ-ଖରସୋନ୍ତେ; ଘ-ପମାଏଁ, OBLT-ପମାଅ, ଚ-ଟୀକା
ଅନୁସରଣରେ ଗୃହୀତ ସମାଅ ।

**ଆଧୁନିକ ରୂପାନ୍ତର:—**

କାୟ ନାବଟି ଖାଣ୍ଟି ମାନ କେଡ଼ୁଆଳ,
ସଦଗୁରୁ ବଚନେ ଧର ପଟୁଆଳ ।

ଚନ୍ଦ ସ୍ଥିର କରି ଧରରେ ନାଆ
ଅନ୍ୟ ଉପାୟେ ପାର ନ ଯାଇ ।

ନୌବାହୀ ନୌକା ଟାଣ ଗୁଣେ
ମେଲ୍ ମେଲ୍ ସହଜେ ଯାଉ ନ ଆନେ ।

ବାଟ ତ ଭୟ ଖଣ୍ଟ ବି ବଳୁଆ
ଭବ ଉଲ୍ଲୋଳେ ସବୁ ବି ବୋଲଆ ।

କୂଳ ନେଇ ଖରସ୍ରୋତେ ଉଜାଣି ଯାଅ
ସରହ ଭଣଇ ଗଗନେ ସମାଅ ।

## ସରଳାର୍ଥ:—

କାୟାରୂପ ନୌକାରେ ବିଶୁଦ୍ଧ ମନକୁ ଆରୂଢ଼ କରି ଏବଂ ସଦ୍‌ଗୁରୁ ବଚନ ଅନୁସାରେ ତାର ମଙ୍ଗଧରି ସ୍ଥିର ଚିତ୍ତରେ ସେହି ନୌକାକୁ ଆଶ୍ରୟ କର । ଏହା ବ୍ୟତୀତ ଅନ୍ୟ ଉପାୟରେ ଭବ ସମୁଦ୍ର ପାର ହୋଇପାରିବ ନାହିଁ । ନାବିକ ଗୁଣ ଧରି ନୌକା ଟାଣିନିଏ; ତୁମେ ସେପରି ସହଜମାର୍ଗ ଧରି ଧରି ବାହିଯାଅ, ନୌକା ଏଣେ ତେଣେ ନ ଯାଉ । ବାଟରେ ନାନା ଭୟ ଅଛି, ବଳୁଆ ଖଣ୍ଟ ବି ଅଛନ୍ତି, ସଂସାର ସମୁଦ୍ରରେ ତରଙ୍ଗାୟିତ ବିଷୟ ବାସନା ବି ଝୋଲ କରିଦେଇପାରେ ବା ବୋଲି ହୋଇଯାଇପାରେ । ତେଣୁ ସରହ କହନ୍ତି, କୂଳ ଧରି ଖରସ୍ରୋତରେ ନାଆକୁ ଉଜେଇ ଦିଅ ଏବଂ ସିଧାଯାଇ ଶୂନ୍ୟ କାୟାରେ ପ୍ରବେଶ କର ।

## ରୂପକାର୍ଥ:— (ମୁନିଦତ୍ତ)

ଖାଣ୍ଟି ମନ — ପଞ୍ଚବିଧ ବିଜ୍ଞାନ ସମନ୍ୱିତ ମନ
ଚନ୍ଦ — ସମ୍ବୃତ୍ତି ବୋଧିଚିତ୍ତ ।
ବାଟ — ଅବଧୂତୀ ମାର୍ଗ ।
ଖଣ୍ଟ — ଚନ୍ଦ୍ରସୂର୍ଯ୍ୟ ବା ଇଡ଼ା ପିଙ୍ଗଳା ନାଡ଼ୀଦ୍ୱୟ ।
କୂଳ — ପ୍ରକୃତି ପରିଶୁଦ୍ଧାବଧୂତିକା ।
ଖରସ୍ରୋତ — ମହାସୁଖ ସଙ୍ଗ ସ୍ରୋତାବର୍ତ୍ତି ।
ଗଗନ — ବୈମଲ୍ୟ ଚକ୍ର ଦ୍ୱୀପ ।

## ଟିପ୍ପଣୀ:—

ନୌଯାତ୍ରା ସିଦ୍ଧ କବିମାନଙ୍କର ଏକ ପ୍ରିୟ ରୂପକ । ବହୁ ଗୀତିକାରେ ଏହି ପ୍ରସଙ୍ଗ ନାନାରୂପରେ ଉଲ୍ଲେଖ କରାଯାଇଛି (ଦ୍ରଃ ଚର୍ଯ୍ୟା-୧୩, ବ୍ୟାଖ୍ୟା) । ଡୋମ୍ବୀପାଙ୍କ ଗୀତିକାରେ (ନ-୧୪) ଗଙ୍ଗାଯମୁନା ମଝିରେ ମାତଙ୍ଗୀ ଡୋମ୍ବୀ ନୌକାରେ ପାର କରୁଥିବାର ଏକ ମାର୍ମିକ ବର୍ଣ୍ଣନା ପରିଦୃଷ୍ଟ ହୁଏ । କବି ମାତଙ୍ଗୀଙ୍କୁ ସମ୍ବୋଧନ କରି କହନ୍ତି–ଡୋମ୍ବି, ବେଳ ଉଛୁର ହେଲା, ମୁଁ ଶୀଘ୍ର ଜିନପୁରକୁ ଯିବାପାଇଁ ବ୍ୟଗ୍ର । ପାଞ୍ଚଟି ଆହୁଲା ପଡ଼ିବା ସାଙ୍ଗେ ସଙ୍ଗ ପିଠିରେ କାଛ ବନ୍ଧାହେଲା । ଶୂନ୍ୟ ଖୋଲରେ ପାଣି ବୋହିଦେବାରୁ ଫାଟରେ ପାଣି ପଶୁ ନାହିଁ । ଚନ୍ଦ୍ର ସୂର୍ଯ୍ୟ ଦୁଇ ଚକା ସୃଷ୍ଟି ସଂହାରକାରୀ ଲଟି ସଦୃଶ । ବାମ ଡାହାଣ ମାର୍ଗକୁ ନଯାଇ ସେ ସ୍ୱେଚ୍ଛାରେ ବାହନେ । କୋଉଡ଼ି ନାହିଁ ପଇସା କଉଡ଼ି ନନେଇ ସ୍ୱଚ୍ଛନ୍ଦରେ ପାର କରିଦିଏ । ଯେଉଁମାନେ ଡୋ ନାଆରେ ଯିବାର ଜାଣନ୍ତି ନାହିଁ, ସେମାନେ କୂଳରେ ହିଁ ବୁଡ଼ିମରନ୍ତି ।

## ନ. ୩୯ (ଅବନୀଭ ଶତ୍ରୁ-ଚର୍ଯ୍ୟା)

ରାଗ-ମାଲଶୀ

**ମୂଳ:—**

ସୁଇଣେଁ ହ ଅବଦାରଅ ରେ ନିଅମନ ତୋହୋରେଁ ଦୋସେ ।
ଗୁରୁ ବଅଣ ବହ୍ନା ରେଁ ଥାକବ ତଇ ଘୁଣ୍ଡ କଇସେ ।। ୧ ।।
ଅକଟ ହୁଁ ଭବ ଗଅଣା।
ବଙ୍ଗେ ଜାୟ୍ନା ନିଲେସି ପରେ ଷଗେଲ ତୋହୋର ବିଣାଣା ।। ୨ ।।
ଅଦ ଭୂଅ ଭବମୋହାରେ ଦସଇ ପର ଅପ୍ପଣା ।
ଏ ଜଗ ଜଲ ବିମ୍ବାକାରେ ସହଜେଁ ସୁଣ ଅପଣା ।। ୩ ।।
ଅମିଆ ଆଚ୍ଛନ୍ତେଁ ବିସ ଗିଲେସି ରେ ଚିଅ ପର ବସ ଅପା ।
ଘରେଁ ପରେଁ କା ବୁଝିଲେ ମରେ ଖାଇବ ମଇ ଦୁଂ କୁଣ୍ଡବାଁ ।। ୪ ।।
ସରହ ଭଣନ୍ତି ବର ସୁଣ ଗୋହାଳୀ କି ମୋ ଦୁଠ ବଳନ୍ଦେଁ ।
ଏକେଲେ ଜଗ ନାସିଅ ରେ ବିହରହୁଁ ଛ ଛନ୍ଦେ ।। ୫ ।।

**ପାଠାନ୍ତର:—**

୧. ଙ—ସୁଇଣେ, କ-ସୁଇଣା, ଚ—ସୁଇଣେ ହ(ହୁଥ)ଅ ବଦାରଅ,
ଖ-ଅବଦାର ଅରେ ।
୨. ଜ—ହୁଁ ଭବଇ ଅଣା, ଚ-ପାରେ, OBLT-ତୋହାର
୩. କ—ଅଦଅଭୂଅ, ଜ, ଘ-ଅପ୍ୟଣେ; କ-ଜଳବିମ୍ବକାରେ ।
୪. ଚ—ଅଚ୍ଛନ୍ତେଁ; କ-ପଦର ବାହ; ଘ,OBLT-ଘାରେଁ ପାରେଁ, ଙ-କୁଣ୍ଡ ବାଁ;
ଚ—ମାର, କ-ମରେ, ଖ-ମଇରେ ।
୫. ଘ—ଦୁଠ୍ୟ, ଙ-ଭଣେଇ; କ-ସରହ ଇ ଛନ୍ଦେଁ, ଚ-ସ୍ୱଚ୍ଛନ୍ଦେ,
OBLT-ସ୍ୱଚ୍ଛନ୍ଦେଁ ।

**ଆଧୁନିକ ରୂପାନ୍ତର:—**

ସପନେ ହୁ ଅବିଦ୍ୟାରତ ରେ ନିଜମନ ତୋହର ଦୋଷେ
ଗୁରୁ ବଚନ ବିହାରେ ରେ ଠାକବ ରୁଇ ଧୁଣ୍ଡ, କସେ ।

ଅଲଚ୍ଚ ହୁଁ-ଭବ ଗଗନ
ବଙ୍ଗେ ଜାୟା ନେଲୁ ପରେ ଭାଙ୍ଗିଲ୍ ତୋହ୍ୱର ବିଜ୍ଞାନ ।
ଅଦଭୂତ ଭବ ମୋହ ରେ ଦିଶଇ ପର ଆପଣା
ଏ ଜଗତ ଜଲବିମ୍ବାକାର ସହଜେ ଶୂନ୍ୟ ଆପଣା ।
ଅମିଅ ଥାଆନ୍ତେ ବିଷ ଗିଲଲୁରେ ଚିଅ ପରବଶ ଆପେ
ଘର ପର କାହାକୁ ବୁଝିଲେ ମୁଁ ରେ ଖାଇବ ମୋ ଦୁଷ୍ଟ କୁଣିଆ ।
ସରହ ଭଣନ୍ତି ବରଂ ଶୂନ୍ୟ ଗୁହାଲ କ (ଲେଡ଼ା) ମୋ ଦୁଷ୍ଟ ବଲଦେ
ଏକଲ ଜଗତ ନାଶିଣ ରେ ବିହରଉଁ ସ୍ୱଚ୍ଛନ୍ଦେ ।

ବ୍ୟାଖ୍ୟା:—

ରେ ମନ, ତୁ ନିଜ ଦୋଷରୁ ଅବିଦ୍ୟାରତ ହୋଇ ସ୍ୱପ୍ନରେ ହିଁ ରହିଛୁ । (ଉଦ୍ଧରୀ ଅନୁବାଦ ଅନୁସାରେ ଶୂନ୍ୟତା ରୂପକ ହସ୍ତରେ ଆରେ ନିଜର ମନର ଦୋଷ ସମୂହକୁ ନିବାରଣ କର) ଗୁରୁ ବଚନ ଯେଉଁଠି ପରିବ୍ୟାପ୍ତ, ତୁ କପରି ସେଠି ଧନ୍ଦ ହେଉଛୁ ? ସଂସାରରୁ ଶୂନ୍ୟଯାଏ ହୁଂ-କାର ନାଦ ଅକାଟ୍ୟ । (ଉଦ୍ଧରୀ ଅନୁବାଦ ଅନୁସାରେ—ଆଶ୍ଚର୍ଯ୍ୟ ଯେ ହୁ-ରୁ ଗଗନ ଜାତ ହୋଇଛି । ମୁନିଦତ୍ତ ଅନୁସାରେ—ଆଶ୍ଚର୍ଯ୍ୟ ହେ-ହୁଂକାର ସମ୍ଭୋଗଭବ ଚିତ୍ତରାଜ !) ବଙ୍ଗଦେଶୀ ସ୍ତ୍ରୀ (ଚଣ୍ଡାଳୀ; ଦ୍ର: ଚର୍ଯ୍ୟା-୪୯) ଗ୍ରହଣ କଲାପରେ ତୋର ବିଜ୍ଞାନ ଭଗ୍ନ ହୋଇଛି । (ବାଗ୍‌ଚୀ-ପଳାୟନ କରିଛି)

ଏ ଜଗତର ମୋହ ଏପରି ବିଚିତ୍ର ଯେ ଏଠି ପର ଆପଣା ଭେଦ ପରିଦୃଶ୍ୟ ହୁଏ । କିନ୍ତୁ ଏ ଜଗତ ତ ଜଲବିମ୍ବପରି ଅସାର । ସହଜ ତତ୍ତ୍ୱରେ ନିଜତ୍ୱ ଜ୍ଞାନ ମଧ୍ୟ ଶୂନ୍ୟ ହୋଇଯାଏ । ( ଦ୍ର: ଚର୍ଯ୍ୟା—୪୩ )

ରେ ଚିତ୍ତ, ଅମୃତ ଥାଇଁ ଥାଇଁ ପରବଶ ହୋଇ ନିଜେ ବିଷ ଗିଳୁଛୁ । ଘର ଓ ପରକୁ ଠିକ୍‌ଭାବରେ ବୁଝିଲେ ଦୁଷ୍ଟ ଘରଲୋକଙ୍କୁ ମଧ୍ୟ ମୋର ଖାଇବାର ହେବ ।

ସରହ କହନ୍ତି, ଶୂନ୍ୟ ଗୁହାଲ ବରଣୀୟ, କିନ୍ତୁ ଦୁଷ୍ଟ ବଳଦ ରଖି କଣ ହେବ ? ତେଣୁ ଜଗତକୁ ନାଶକରି ମୁଁ ଏକଲ ସ୍ୱଚ୍ଛନ୍ଦରେ ବିହାର କରେ ।

ରୂପକାର୍ଥ:— (ମୁନିଦତ୍ତ)

ଗଗନ—ପ୍ରଭାସ୍ୱର
ଅମିଅ—ସହଜାନନ୍ଦ
ବିଷ—ର୍ ପାଦ ବିଷୟ ବିପାକାନ୍

ଘରେ—ସ୍ୱକାୟା

ପର—ରାଗଦ୍ୱେଷ ମୋହାଦିକଂ

ଖାଇବ—ନିଃସ୍ୱଭାବୀ କରଣ

ବଳଦ—ଦୁଷ୍ଟ ବିଷୟସ୍ୱଂ ବଳଂ ଦଦାତି ଇତି ଚିତ୍ତରାଜୋ ବୋଧବ୍ୟଃ

ଗୋହାଲି—ଗୋ ଇତି ଇନ୍ଦ୍ରିୟଂ ତସ୍ୟ ସାଲମ୍ବନଂ ସ୍ୱକାୟଂ

## ବିଶେଷ ବ୍ୟାଖ୍ୟା:—

ହୁଂ ଭଇ ଗଅଣା—ହୁଁ—ମନ୍ତ୍ରରୁ ଉତ୍ପନ୍ନ ବଜ୍ରସତ୍ତ୍ୱ ଗଗନ ବା ବିଶ୍ୱ । ମନ୍ତ୍ର ଓ ଦେବଦେବୀ ସାଧନାରେ ନିର୍ଦ୍ଦିଷ୍ଟ ଯୋଗୀ ପ୍ରଥମେ "ଓଁ ଶୂନ୍ୟତା ବଜ୍ର ସ୍ୱଭାବାତ୍ମକୋହହମ୍" ଏହି ଜ୍ଞାନ ମନ୍ତ୍ର ପଢ଼ି ବଜ୍ର ଜପ କରିବେ । ତାହାପରେ ହେରୁକ ମନ୍ତ୍ର "ଓଁ ହୁଁ ହୁଁ" ମନ୍ତ୍ର ଜପ କରି କରି ଶୂନ୍ୟ ଭାବନା ଏବଂ ବିଶ୍ୱକୁ ବଜ୍ର କଳ୍ପନା କରି ସାଧନାରେ ଉପବିଷ୍ଟ ନିଜକୁ ଅକ୍ଷୟଭାବେ ସୁରକ୍ଷିତ ରଖିବେ । ଏହି ବିଶ୍ୱବଜ୍ର-ଭାବନା ହୁଂକାରୋଦ୍ଭୂତ । (ସୁକୁମାର ସେନ-ଚର୍ଯ୍ୟାଗୀତି ପଦାବଳୀ)

ବିଙ୍ଗେଜାୟୀ—ଅଦ୍ୱୟଜ୍ଞାନ (ଦ୍ରଃ ଚଯା-୪୧)

ଛବିଶା ଅନୁବାଦ : ବିନଗତିଂ ବ୍ୟାମିଶ୍ରୟଃ

ବିଜ୍ଞାନ—ଅବିଦ୍ୟା ଦୋଷଜାତ ବିଷୟସ୍ୱ ବିଜ୍ଞାନ ।

## ୬ ଭୁସୁକୁପା

ଭୁସୁକୁ ରାଉତୁ ଚର୍ଯ୍ୟା-ଗୀତିକାର ଅନ୍ୟତମ ଗୀତିକାର । ହରପ୍ରସାଦ ଶାସ୍ତ୍ରୀ କର୍ତ୍ତୃକ ନେପାଳ ଦରବାର ଲାଇବ୍ରେରୀରୁ ଉଦ୍ଧୃତ 'ଚର୍ଯ୍ୟାଚର୍ଯ୍ୟ-ବିନିଶ୍ଚୟ' ପୋଥିରେ ତାଙ୍କର ଆଠଟି ଗୀତିକା ସଙ୍କଳିତ—ନଂ ୬, ୨୧, ୨୩, ୨୭, ୩୦, ୪୧, ୪୩ ଓ ୪୯ ।

ଚର୍ଯ୍ୟା-ଗୀତିକାର ରଚୟିତା ଅନ୍ୟାନ୍ୟ ସିଦ୍ଧାଚାର୍ଯ୍ୟମାନଙ୍କପରି ଭୁସୁକୁଙ୍କ ଜୀବନ ଚରିତ ମଧ୍ୟ ରହସ୍ୟାବୃତ୍ତ ଏବଂ ନାନା ବିରୋଧୀ ତଥ୍ୟ-ଜାଲରେ ବିଧୃତ । ସେ କିଏ, କେବେ ଆବିର୍ଭୂତ ହେଲେ ଏବଂ କି'ବା ତାଙ୍କର ସିଦ୍ଧି—ଏହି ପ୍ରଶ୍ନଗୁଡ଼ିକ ଅଦ୍ୟାପି ଅମୀମାଂସିତ । ଭୁସୁକୁ, ରାଉତୁ କିମ୍ବା ଭୁସୁକୁ ରାଉତୁ ନାମରେ ବିକଳ୍ପରେ ପରିଚିତ ଶାନ୍ତିଦେବ କଣ ଚର୍ଯ୍ୟାଲେଖକ ଭୁସୁକୁ ? ତେବେ ମହାଯାନୀସିଦ୍ଧ ଶାନ୍ତିଦେବ, ଜାହୋରବାସୀ ତାନ୍ତ୍ରିକ ସିଦ୍ଧ ଶାନ୍ତିଦେବ, ଚର୍ଯ୍ୟା-ଗୀତିକାର ଶାନ୍ତି ପା, ରତ୍ନାକର ଶାନ୍ତି, ଶାନ୍ତିରକ୍ଷିତ—ଏମାନଙ୍କ ମଧ୍ୟରୁ କାହା ସହିତ ଭୁସୁକୁଙ୍କର ଯୋଗ ସମ୍ଭାବନୀୟ ? ଭୁସୁକୁଙ୍କର ଯଥାର୍ଥ ପରିଚୟ ନିମନ୍ତେ ଏହି ବ୍ୟାସକୂଟର ସମାଧାନ ପ୍ରଥମେ ବିଧେୟ ।

ପ୍ରଖ୍ୟାତ ମହାଯାନୀ ସାଧକ ଶାନ୍ତିଦେବଙ୍କର ଜୀବନୀ କେତେକ ସୂତ୍ରରୁ ମିଳିଥାଏ, ଯଥା—ଏସିଆଟିକ୍ ସୋସାଇଟିର ନ. ୯୯୯୦ ପୋଥି (ନେଓ୍ୱାରୀ ଅକ୍ଷରରେ ଛିନ୍ନଖଣ୍ଡି ତାଳପତ୍ର ରଚନାକାଳ ଅନୁମାନିକ ୧୪ଶ ଶତାବ୍ଦୀ), ତାରନାଥଙ୍କ ବିବରଣୀ (ଖ୍ରୀ ୧୬୦୮) ବୁସ୍ତୋନ୍‌ର ବିବରଣୀ (ଖ୍ରୀ ୧୨୯୦-୧୩୬୪) ସୁମ୍ ପା ମ୍ଖନ୍ ପୋଙ୍କ ଦ୍ୱପଗ୍-ବସମ୍-ଲଜୋନ୍-ବଜନ୍ (ଖ୍ରୀ ୧୭୪୭) । ଏହି ସମସ୍ତ ଗ୍ରନ୍ଥ ଭିତ୍ତିରେ ଜଣାଯାଏ ଶାନ୍ତିଦେବ ସୌରାଷ୍ଟ୍ର ଦେଶର (୧) ରାଜବଂଶରେ ଜନ୍ମ ହୋଇଥିଲେ । ତାଙ୍କର ପିତାଙ୍କ ନାମ ଥିଲା କଲ୍ୟାଣ ବର୍ମା (୨) ଓ ତାଙ୍କର ପିତୃଦତ୍ତ ନାମଥିଲା ଶାନ୍ତିବର୍ମା । ପିତାଙ୍କ ମୃତ୍ୟୁପରେ ତାଙ୍କର ରାଜ୍ୟାଭିଷେକ ପାଇଁ ଆୟୋଜନ ହେଲା । ଏହି ସମୟରେ ତାଙ୍କର ମାଆ କହିଲେ 'ରାଜପଦ ପାପକଳୁଷିତ । ତୁ ଯଦି ମୁକ୍ତି କାମନା କରୁ ତେବେ ବୁଦ୍ଧ ଓ ବୋଧିସତ୍ତ୍ୱମାନଙ୍କର ଦେଶକୁ ଚାଲିଯାଆ ଏବଂ ମଞ୍ଜୁବଜ୍ରଙ୍କଠାରୁ ଦୀକ୍ଷା ଗ୍ରହଣ କର ।' ଏହା ଶୁଣି ଶାନ୍ତିଦେବ ରାଜ୍ୟତ୍ୟାଗ କରି ପଳାଇ ଆସିଲେ । ଦୀର୍ଘଦିନ ଯାତାପରେ ଦିନେ ବନ ମଧ୍ୟରେ ଗୋଟିଏ ସୁନ୍ଦରୀ ବାଳିକା ସହ ତାଙ୍କର ସାକ୍ଷାତ ହେଲା । ସେହି କନ୍ୟାଟି ମଞ୍ଜୁବଜ୍ରଙ୍କ ଶିଷ୍ୟା । ସେ ତାଙ୍କୁ ଆଶ୍ରମକୁ ନେଇଗଲା । ମଞ୍ଜୁବଜ୍ରଙ୍କ ନିକଟରେ ବାରବର୍ଷ ସାଧନା କରି ମଞ୍ଜୁଶ୍ରୀ ସମ୍ବନ୍ଧରେ ଜ୍ଞାନ ଲାଭ କଲେ । ତାପରେ ଗୁରୁଙ୍କ ଆଦେଶରେ ସେ ମଧ୍ୟଦେଶ ମଗଧକୁ ଆସିଲେ ଏବଂ ନାଳନ୍ଦା ବିହାରରେ ଜୟଦେବଙ୍କ ଶିଷ୍ୟତ୍ୱ ଗ୍ରହଣ କରି ଖୃ.ବ୍. ଶାନ୍ତି ଭାବରେ

---

୧ । ପୋଥିରେ ଦେଶର ନାମ ପଢ଼ାଯାଏ ନା । ତାରନାଥଙ୍କ ମତରେ ସୌରାଷ୍ଟ୍ର, ବେଣ୍ଡେଲ୍ ଏହାମଧ୍ୟ ସ୍ୱୀକାର କରନ୍ତି ।

୨ । ଏହା ସୁମ୍‌ପାଙ୍କ ମତ, କିନ୍ତୁ ପୋଥି ଅନୁସାରେ ପିତାଙ୍କ ନାମ ମଞ୍ଜୁବର୍ମା ।

ନିଜର ନିର୍ଜନ କୁଟୀରରେ ସାଧନା କରିବାକୁ ଲାଗିଲେ । ତାଙ୍କର ଏପରି ଅସାମାଜିକ ବ୍ୟବହାର ଦେଖି ଈର୍ଷାନ୍ୱିତ ସତୀର୍ଥଗଣ ତାଙ୍କୁ ବିଦ୍ରୂପରେ ଶାନ୍ତିଦେବ ଓ ଭୁସୁକୁ ନାମରେ ଡାକିବାକୁ ଲାଗିଲେ । ସେ ଯେ ଭାଙ୍କ କୁଟୀରରେ ଭୋଜନ, ଶୟନ ବ୍ୟତୀତ କିଛି ପଢ଼ାଶୁଣା କରନ୍ତି ନାହିଁ ଏହିପରି ପ୍ରଚାର ଆରମ୍ଭ ହୋଇଗଲା । ତାଙ୍କୁ ଅପଦସ୍ଥ କରିବା ଲକ୍ଷ୍ୟରେ ଏକ ଆଲୋଚନା ସଭାରେ ତତ୍ତ୍ୱ ବ୍ୟାଖ୍ୟା କରିବାପାଇଁ ଆହ୍ୱାନ କରାଗଲା । ଶାନ୍ତିଦେବ ଅନନ୍ୟୋପାୟ ହୋଇ ସେଥିରେ ଯୋଗ ଦେଲେ ଏବଂ ଆରମ୍ଭରୁ "କିମ ଆର୍ଷଂ ପଠାମି ଅନାର୍ଷଂ ବା" ଉକ୍ତିଦ୍ୱାରା ସମସ୍ତଙ୍କୁ ସ୍ତମ୍ଭୀଭୂତ କରିଦେଲେ । ତା'ପରେ ସେ ତାଙ୍କର ବିଖ୍ୟାତ ଗ୍ରନ୍ଥାବଳୀ ବୋଧିଚର୍ଯାବତାର, ଶିକ୍ଷାସମୁଚ୍ଚୟ ଓ ସୂତ୍ରସମୁଚ୍ଚୟରୁ ପାଠ ଓ ବ୍ୟାଖ୍ୟା କରିଥିଲେ । ନିର୍ଜନ କୁଟୀରରେ କେବଳ ଭୋଜନ, ଶୟନରେ ସମୟ ଅତିବାହିତ ନକରି ସେ ଯେ ଏପରି ଗ୍ରନ୍ଥସମୂହ ରଚନା କରିଛନ୍ତି ଏହା ଦେଖି ସତୀର୍ଥଗଣ ଲଜ୍ଜିତ ହୋଇଥିଲେ ।

ତାପରେ ସେ ନାଲନ୍ଦା ପରିତ୍ୟାଗ କରି ଦକ୍ଷିଣ ଦେଶର ଶ୍ରୀ ଦକ୍ଷିଣ ନଗରରେ ବାସ କଲେ । ଏହି ସମୟରେ ପୂର୍ବ ଦେଶର (୩) ରାଜା ଅରିବର୍ମନଙ୍କ (୪) ରାଜ୍ୟରେ ବିଦ୍ରୋହ ହୋଇଥିଲା । ବିଦ୍ରୋହ ଦମନପାଇଁ ରାଜାଙ୍କଦ୍ୱାରା ଅନୁରୁଦ୍ଧ ହୋଇ ସେ 'ରାଉତ' ଅର୍ଥାତ୍ ସେନାପତି ପଦରେ ଯୋଗ ଦେଇଥିଲେ । ସେତେବେଳେ ସେ ରାଉତ ଅଚଳସେନ ନାମରେ ଖ୍ୟାତ ହୋଇଥିଲେ । ଅଚିରେ ସେ ବିଦ୍ରୋହ ଦମନ କରି ରାଜାଙ୍କର ପ୍ରିୟପାତ୍ର ହୋଇ ପଡ଼ିଲେ । ଅସୂୟା ପରବଶ ଅନ୍ୟାନ୍ୟ ରାଉତ ଓ ମନ୍ତ୍ରୀଗଣ ତାଙ୍କୁ କିପରି ପଦଚ୍ୟୁତ କରିବେ ସେହି ଭାବନାରେ ଥାଆନ୍ତି । କ୍ରମେ ସେମାନେ ସନ୍ଧାନ ପାଇଲେ ଯେ ଅଚଳସେନଙ୍କ ତରବାରୀ କାଷ୍ଠନିର୍ମିତ । ରାଜାଙ୍କୁ ସେମାନେ ତତ୍କ୍ଷଣାତ୍ ଏହି ସମ୍ବାଦ ଦେଲେ । ରାଜା ଅଚଳସେନଙ୍କୁ ଆହ୍ୱାନ କରି ତାଙ୍କର ତରବାରୀ କୋଷମୁକ୍ତ କରିବାକୁ ବାଧ୍ୟ କଲେ । ଅଚଳସେନ କହିଲେ — ମୋର ତରବାରୀ ଦୀପ୍ତିରେ ଆପଣଙ୍କର ଦୃଷ୍ଟିଶକ୍ତି ଲୁପ୍ତ ହେବ । ଯଦି ଏକାନ୍ତ ବାଧ୍ୟ କରନ୍ତି, ତେବେ ଆପଣ ଏକ ଚକ୍ଷୁ ବନ୍ଦ କରନ୍ତୁ, ମୁଁ କୋଷମୁକ୍ତ କରୁଛି । ରାଜା ତାହାହିଁ କଲେ, ଫଳରେ ଗୋଟିଏ ଚକ୍ଷୁର ଦୃଷ୍ଟିଶକ୍ତି ହରାଇଲେ ।

ତା'ପରେ ଶାନ୍ତିଦେବ କଳିଙ୍ଗ ଯାତ୍ରା କଲେ । କିଛି କାଳପରେ ପୁଣି ଦକ୍ଷିଣଗାମୀ ହୋଇ ଶ୍ରୀପର୍ବତରେ ଅବସ୍ଥାନ କଲେ । ସେଠାରେ ଥିଲାବେଳେ ଖତ ବିହାର ରାଜାଙ୍କ ଅନୁରୋଧକ୍ରମେ ପାଷଣ୍ଡ ଗୁରୁ ଶଙ୍କରଦେବଙ୍କର ଇନ୍ଦ୍ରଜାଲ ବ୍ୟର୍ଥକଲେ । ସେହି ସ୍ଥାନର ନାମ ସେହି ଦିନରୁ ହେଲା ଜିତତୀର୍ଥ ।

ଶାନ୍ତିଦେବ ସମ୍ପର୍କିତ ଏ ସମସ୍ତ ବିବରଣୀରୁ ଜଣାଯାଏ ଯେ ସେ ଯେ ଭୁସୁକୁ ବା ରାଉତୁ ନାମରେ ପରିଚିତ ଥିଲେ ଏହା ନିଶ୍ଚିତ । କିନ୍ତୁ ଚର୍ଯାଲେଖକ ଭୁସୁକୁଙ୍କଠାରୁ ନିଃସନ୍ଦେହରେ ସେ ସ୍ୱତନ୍ତ୍ର । ତା'ର ପ୍ରଧାନ କାରଣ ସେ ମଞ୍ଜୁଶ୍ରୀ ଉପାସକ, ମହାଯାନୀ

---

୩ । ସୁମ୍ପା : ମଗଧ, ମଞ୍ଜୁଶ୍ରୀ ମୂଳକଳ୍ପ : କାଶୀଖଣ୍ଡର ମୂର୍ଦ୍ଧନ୍ୟ ଦେଶ ।

୪ । ତାରନାଥ ପଞ୍ଚମ ସିଂହ ।

ସାଧକ; ମାତ୍ର ଚର୍ଯ୍ୟାକାର ତାନ୍ତ୍ରିକ ସହଜିୟା ସାଧକ । ଏହାଛଡ଼ା ମହାଯାନୀ ଶାନ୍ତିଦେବ ତାରନାଥଙ୍କ ବିବରଣୀ ଅନୁସାରେ ଶ୍ରୀହର୍ଷଙ୍କ ପୁତ୍ର ଶୀଳର ସମସାମୟିକ ଓ ନାଳନ୍ଦାରେ ଧର୍ମପାଳଙ୍କ ପରବର୍ତ୍ତୀ ଆଚାର୍ଯ୍ୟ ଜୟଦେବଙ୍କ ଶିଷ୍ୟ ଥିଲେ । ଧର୍ମପାଳ ହର୍ଷବର୍ଦ୍ଧନଙ୍କ (ଖ୍ରୀ ୬୦୬-୬୪୭) ସମସାମୟିକ ହୋଇଥିବାରୁ ଶାନ୍ତିଦେବ ସପ୍ତମ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଅବର୍ତ୍ତମାନ ହୋଇଥାଇ ପାରନ୍ତି (୫ । କିନ୍ତୁ ଚର୍ଯ୍ୟାକାର ଭୁସୁକୁ ଅନେକ ଅର୍ବାଚୀନ ମନେ ହୁଅନ୍ତି । ତାରନାଥଙ୍କ ଅନୁସାରେ ଭୁସୁକୁ ଦୀପଙ୍କର ଶ୍ରୀଜ୍ଞାନ ଅତୀଶଙ୍କର ପାଞ୍ଚ ପ୍ରଧାନ ଶିଷ୍ୟ ମଧ୍ୟରେ ଅନ୍ୟତମ; ତେଣୁ ତାଙ୍କର ଆବିର୍ଭାବ ସମୟ ଏକାଦଶ ଶତାବ୍ଦୀ ହେବା ସ୍ୱାଭାବିକ । ଆର୍ଥର ଗ୍ରୁଲନ୍‌ଓ୍ୱେଡେଲ୍ ଓ ରାହୁଲ ସାଂକୃତ୍ୟାୟନଙ୍କ ମତରେ ସେ ନାଳନ୍ଦାଧିବାସୀ କ୍ଷତ୍ରିୟ ବଂଶଜ ବା ରାଜପୁତ୍ର ଏବଂ ରାଜା ଦେବପାଳଙ୍କ (ଖ୍ରୀ: ୮୦୯-୮୪୯) ସମକାଳୀନ ।

ତେଙ୍ଗୁର ଗ୍ରନ୍ଥତାଲିକାରେ (କର୍ଡିୟର-୨ୟ ଖଣ୍ଡ, ପୃ ୧୪୦) ଶ୍ରୀ ଗୁହ୍ୟସମାଜ ମହାଯୋଗତନ୍ତ୍ର ବଳିବିଧି ଓ ସହଜଗୀତ ନାମକ ଦୁଇଟି ତାଂତ୍ରିକ ଗ୍ରନ୍ଥର ଲେଖକ ରୂପେ ଯୋଗୀଶ୍ୱର ଶାନ୍ତିଦେବଙ୍କ ଉଲ୍ଲେଖ ମିଳେ । ଏଥିରେ ମଧ୍ୟ ତାଙ୍କର ବାସସ୍ଥାନ ଜାହୋର ବୋଲି ନିର୍ଦ୍ଦେଶିତ ହୋଇଛି । ସୁମ୍‌ପାଙ୍କ ବିବରଣୀରୁ ଜଣାଯାଏ ସେ ମଧ୍ୟ ନାମାନ୍ତରରେ ଭୁସୁକୁ ବା ରାଉତୁ ଭାବେ ପରିଚିତ ଥିଲେ । ମହାଯାନୀ ଶାନ୍ତିଦେବଙ୍କଠାରୁ ଇଏ ଯେ ସ୍ୱତନ୍ତ୍ର ଏହା ସୁନିଶ୍ଚିତ । ମାତ୍ର ଅନେକ ଅନୁମାନ କରନ୍ତି ଚର୍ଯ୍ୟାକାର ଭୁସୁକୁଙ୍କ ସହିତ ଏହାଙ୍କର ଏକାତ୍ମତା ସମ୍ଭବନୀୟ, ଯେହେତୁ ଉଭୟ ବଜ୍ରଯାନୀ ତାନ୍ତ୍ରିକ ଏବଂ ଅପଭ୍ରଂଶରେ ସହଜତତ୍ତ୍ୱ ସମ୍ବନ୍ଧରେ ରଚନା କରିଛନ୍ତି । ଭୁସୁକୁ ମଧ୍ୟ ଚର୍ଯ୍ୟାଗୀତିକାରେ ନିଜକୁ 'ଯୋଗୀ' ଭାବେ ଆଖ୍ୟାତ କରିଛନ୍ତି । ଅନେକ ଆଲୋଚକ ଏହି ମତଟି ସମର୍ଥନ କରୁଥିଲେ ହେଁ ଡ. ଶହୀଦୁଲ୍ଲାହ ଏହା ଅଗ୍ରାହ୍ୟ କରିଛନ୍ତି । ସେ କହନ୍ତି ଏହି ଶାନ୍ତିଦେବ ଶାଂତରକ୍ଷିତଙ୍କ ସହ ସମାନ ହୋଇପାରନ୍ତି, ମାତ୍ର ଭୁସୁକୁଙ୍କ ସହିତ ନୁହେଁ । (୬)

'ଚର୍ଯ୍ୟାଚର୍ଯ୍ୟ ବିନିଶ୍ଚୟ'ରେ ଶାନ୍ତିପା ନାମକ ଜନୈକ ସିଦ୍ଧଙ୍କର ଦୁଇଟି ଗୀତିକା (ନ ୧୫, ୨୬) ସଂକଳିତ । ସାଂକୃତ୍ୟାୟନଙ୍କ ଅନୁସାରେ ଏ ମଗଧବାସୀ ବ୍ରାହ୍ମଣ ଏବଂ ମହୀପାଳଙ୍କ (ଖ୍ରୀ: ୯୮୮-୧୦୩୮) ସମକାଳୀନ । କେହି କେହି ବିଶ୍ୱାସ କରନ୍ତି ଯେ ସେ

---

୫ । ଶାସ୍ତ୍ରୀ ! ଖ୍ରୀ ୬୯୫-୮୧୬ (ବୌଦ୍ଧଗାନ ଓ ଦୋହା, ପୃ ୩୨), ବେଣ୍ଡେଲ୍ ମତରେ ! ଖ୍ରୀ ୮୧୬-୮୩୮ ମଧ୍ୟରେ ସୂତ୍ର ସମୁଚ୍ଚୟ ତିବ୍ବତୀରେ ଅନୂଦିତ, ତେଣୁ ଲେଖକଙ୍କ ସମୟ ସପ୍ତମ ଶତକର ମଧ୍ୟଭାଗ, ବିନୟତୋଷ ଭଟ୍ଟାଚାର୍ଯ୍ୟଙ୍କ ମତରେ ଖ୍ରୀ ୬୯୫-୭୪୩

(J. B. O. R. S. vol.14 Part.III)

୬ । ବଙ୍ଗୀୟ ସାହିତ୍ୟ ପରିଷଦ ପତ୍ରିକା, ୪୮ ବର୍ଷ, ୧ମ ସଂଖ୍ୟା ।

କାହ୍ନୁପା ଓ ଜାଲନ୍ଧରୀପାଙ୍କ ଶିଷ୍ୟ । ତେଙ୍ଗୁରରେ ସୁଖଦୁଃଖପରିତ୍ୟାଗ ଅଦ୍ୱୟ ଦୃଷ୍ଟି, ସହଜ ରତି ସଂଯୋଗ, ସହଜ ଯୋଗକ୍ରମ ଆଦି ଅଠରଟି ଗ୍ରନ୍ଥର ଲେଖକ ରୂପେ ଯେଉଁ ରତ୍ନାକର ଶାନ୍ତିଙ୍କ ଉଲ୍ଲେଖ ମିଳେ ସମ୍ଭବତଃ ଶାନ୍ତିପାଙ୍କଠାରୁ ସେ ଅଭିନ୍ନ । ସାଧନା ମାଳାରେ (୨ୟ ଭାଗ) ଏହାଙ୍କର ଦ୍ୱିଭୁଜ ହେରୁକ ସାଧନା ସଙ୍କଳିତ । ତାରାନାଥଙ୍କ ବିବରଣୀରୁ ଜଣାଯାଏ ରତ୍ନାକର ଶାନ୍ତି ମଗଧବାସୀ ଏବଂ ବିକ୍ରମଶୀଳ ବିହାରର ଜଣେ ପ୍ରମୁଖ ଆଚାର୍ଯ୍ୟ ଥିଲେ । ସେ ଧର୍ମପ୍ରଚାର ନିମନ୍ତେ ସାତବର୍ଷ ଯାବତ୍ ସିଂହଳରେ ଅବସ୍ଥାନ କରିଥିଲେ । ଏହିସବୁ ତଥ୍ୟ ଭିତ୍ତିରେ ଚର୍ଯ୍ୟା-ଗୀତିକାରେ ଦୁଇ ସ୍ୱତନ୍ତ୍ର ନାମରେ ଭଣିତା ଥିବାରୁ ଏବଂ ଉଭୟଙ୍କ ଭାଷାରେ ଯଥେଷ୍ଟ ତାରତମ୍ୟ ଥିବାରୁ ଭୁସୁକୁପା ଓ ଶାନ୍ତିପା ଦୁଇ ସ୍ୱତନ୍ତ୍ର ବ୍ୟକ୍ତି ବୋଲି ନିର୍ଣ୍ଣୟ କରାଯାଇପାରେ ।

ନାଡ଼ୋପାଙ୍କ ସେକୋଦ୍ଦେଶଟୀକା (Gaekwad Oriental Series, ପୃ ୪୮)ରେ ଗୋଟିଏ ଦୋହାମିଳେ—'ଉଭଅନ୍ତରେ ଭୁସୁକୁ ଭାବ ଶାନ୍ତି ଭଣଇ ପୋହାନ୍ତି ପହାର ।' ଡ. ସୁକୁମାର ସେନ ମତ ଦିଅନ୍ତି ଯେ ଚର୍ଯ୍ୟାର ଶାନ୍ତିପା ଏବଂ ଏହି ଦୋହାର ଶାନ୍ତିପା ଯେ ଏକ ବ୍ୟକ୍ତି ଏହା ନିଶ୍ଚିତ ଭାବରେ କୁହାଯାଇ ପାରେନା । କିନ୍ତୁ ସେ ଯେଉଁ ଶାନ୍ତି ହୁଅନ୍ତୁ ନା କାହିଁକି ଏହି ପଦରୁ ସ୍ପଷ୍ଟ ପ୍ରତୀତ ହୁଏ ଭୁସୁକୁ ଓ ଶାନ୍ତି ମଧ୍ୟରେ ନିଶ୍ଚୟ କିଛି ସମ୍ବନ୍ଧ ଥିଲା, ଯାହା ହୁଏତ ନାମାନ୍ତର ସମ୍ବନ୍ଧ କିମ୍ବା ଗୁରୁଶିଷ୍ୟ ସମ୍ବନ୍ଧ ।

ଏସିଆଟିକ ସୋସାଇଟିରେ ଭୁସୁକୁ ଭଣିତାରେ 'ଚତୁରାଭରଣ' ନାମକ ଖଣ୍ଡିଏ ସାତପୃଷ୍ଠାର ଅସମ୍ପୂର୍ଣ୍ଣ ପୋଥି ଅଛି । ଏହାର ଲିପିକାଳ ନେପାଳ ସମ୍ବତ୍ ୪୧୫ ଅର୍ଥାତ ଖ୍ରୀ ୧୨୧୫ । ଏଥିରେ ତାନ୍ତ୍ରିକ ସହଜିଆ ସାଧକମାନଙ୍କର ଜୀବନ-ଚର୍ଯ୍ୟା ସମ୍ପର୍କରେ ନାନା ବିଧିବିଧାନ ବର୍ଣ୍ଣିତ ହୋଇଛି । ଏଥିରେ ଗୋଟିଏ ସ୍ଥଳରେ 'ରାଉତୁ' ଭଣିତା ଦେଖାଯାଏ—

ଅମ୍ଭୁ ପସରରୁ ଚନ୍ଦନ ବାରହ ଅକ୍କ
ହେଟ୍ଠ କମଲ କରି ଶସୁନ ଥକ୍କ
ପୁଜ ସ୍ୱପ୍ପି ଣୀ ସମରସ କାଇ
ରାଉତୁ ବୋଲେ ଜରାମରଣ ନାଇ ॥

ଚର୍ଯ୍ୟା ଗୀତିକାର ଲେଖକ ଭୁସୁକୁ ଏବଂ ଏହି ଗ୍ରନ୍ଥର ଲେଖକ ଏକ ବ୍ୟକ୍ତି ରୂପେ ଗ୍ରହଣୀୟ । ମାତ୍ର ମଣୀନ୍ଦ୍ର ମୋହନ ବସୁ (୭) ମନେ କରନ୍ତି ଯେ ଏଇ 'ରାଉତୁ' ଭୁସୁକୁଙ୍କଠାରୁ ସ୍ୱତନ୍ତ୍ର । ଭୁସୁକୁ ନାମରେ ମିଳୁଥିବା ମୋଟ ଆଠଟି ଗୀତିକାରୁ ମାତ୍ର ଦୁଇଟିରେ (ନ ୪୧, ୪୩) ରାଉତୁ ନାମର ଉଲ୍ଲେଖ ମିଳେ, ଏଥିରେ ଦୁଇଟିଯାକ ନାମର ଉଲ୍ଲେଖ ଥିବାରୁ (ଯଥା—ଭୁସୁକୁ ଭଣଇ କଟ ରାଉତୁ ଭଣଇ କଟ ସଅଲା ଏହି ସ୍ୱଭାବ

୭ । ଚର୍ଯ୍ୟାପଦ ପୃ ୪୮

(ନଂ ୪୩) ଗୁରୁରୁ ଭଣଇ କଷ୍ଟ ଭୁସୁକୁ ଭଣେଇ କଷ୍ଟ ସହିଲା ଅଇସ ସହାବ (୪୩) ମନେ ହୁଏ ଦୁହେଁ ଗୁରୁଶିଷ୍ୟ ସଂବଂଧାନ୍ୱିତ, ଏବଂ ଅପର ଛଅଟି ଗୀତିକାର ରଚୟିତା ଭୁସୁକୁଂକଠାରୁ ଭିନ୍ନ । ଏହି ଦୁଇ ଭୁସୁକୁଂକ ମଧ୍ୟରୁ ଦୁଇଟି ଚର୍ଯାର ଲେଖକ ଯେଉଁ ଜଣକ ସେହିଁ ଚତୁରାଭରଣ ପୋଥିର ଲେଖକ ଗୁରୁଙ୍କ ଶିଷ୍ୟ । ଏହି ମତଟି ଅନ୍ୟ କାହାର ସମର୍ଥନ ଲାଭ କରିପାରି ନାହିଁ । ଉପରେ ଉଦ୍ଧୃତ ଦୁଇଟି ପଙ୍କ୍ତିରେ ଦୁଇଟି ନାମର ଏକ ଲକ୍ଷ୍ୟ କଲେ କିଏ କାହାର ଶିଷ୍ୟ ନିର୍ଣ୍ଣୟ କରିବା ଦୁଷ୍କର ।

ଉପର୍ଯୁକ୍ତ ଆଲୋଚନାର ଅନୁବୃତ୍ତିରେ ସ୍ପଷ୍ଟ ଉପଲବ୍ଧ ହୁଏ ଯେ ଚର୍ଯାକାର ଭୁସୁକୁ ମହାଯାନୀ ଶାନ୍ତିଦେବ, ଶାନ୍ତିପା, ଶାନ୍ତରକ୍ଷିତ, ରତ୍ନାକର ଶାନ୍ତି ପ୍ରଭୃତିଙ୍କଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ବ୍ୟକ୍ତି ଏବଂ ସେହି 'ଚତୁରାଭରଣ' ର ଲେଖକ । କିନ୍ତୁ ତେଙ୍ଗୁରର ତାନ୍ତ୍ରିକ ଶାନ୍ତିଦେବଙ୍କ ସହିତ ତାଙ୍କର ଯୋଗାଯୋଗ ଥିବାର ଯଥେଷ୍ଟ ସୂଚନା ମିଳେ । ଚର୍ଯାକାର ଭୁସୁକୁ କେବଳ ନିଜକୁ ରାଉତ ବୋଲି ଉଲ୍ଲେଖ କରି ନାହାନ୍ତି, ତାଙ୍କର ଗୀତିକାଗୁଡ଼ିକ ମଧ୍ୟରେ ରାଉତ ବୃତ୍ତିର ସମର୍ଥନ ମୃଗୟା ଓ ଜଳଦସ୍ୟୁ ରୂପରେ ଦେଶଲୁଣ୍ଠନର ଛବି ପ୍ରଦତ୍ତ ହୋଇଛି । ନଂ୪୯ ଚର୍ଯାରେ ସେ ଲେଖିଛନ୍ତି—'ଆଜି ଭୁସୁକୁ ବଙ୍ଗାଲୀ ଭଇଲି । ଣିଅ ଘରଣୀ ଚଣ୍ଡାଲେ ଲେଲି ।' ଏହି ପଦଟି ଉଦ୍ଧାର କରି ଶାସ୍ତ୍ରୀ କହିଛନ୍ତି ଯେ "ଆମାଦେର ଭୁସୁକୁ ଯେ ବଙ୍ଗାଲୀ ଛିଲେନ୍, ତାହା ତାହାର ଗାନେଇ ପ୍ରକାଶ "(ପୃ ୨୦) × × × "ଜାହୋର କୋଥାୟ, ଜାନା ଯାୟନା । କିନ୍ତୁ ପଦକର୍ତ୍ତା ରାଉତ ଭୁସୁକୁର ବାଡ଼ୀ ଯେ ବାଙ୍ଗାଲାୟ ଛିଲ, ସେ ବିଷୟେ ସନ୍ଦେହ ନାଇ" (ପୃ ୧୨), ଅଧ୍ୟାପକ ନିହାରରଞ୍ଜନ ରାୟ 'ବାଙ୍ଗାଲୀର ଇତିହାସ' ଗ୍ରନ୍ଥରେ ଲେଖିଛନ୍ତି ଯେ "ଆଗେ ଶୁଧୁ ଜନ୍ମେ ବଙ୍ଗାଲୀ ଛିଲେନ୍, ଚଣ୍ଡାଳୀକେ ଯୋଗ ସଙ୍ଗିନୀ କରାୟ ଯଥାର୍ଥ ବଙ୍ଗାଲୀ ହଇଲେନ୍" (ପୃ୫୬୪) × × × "ଭୁସୁକୁ ବଙ୍ଗାଲୀ ଅର୍ଥାତ୍ ପୂର୍ବ-ଦକ୍ଷିଣ ବଙ୍ଗବାସୀ ଛିଲେନ୍" (ପୃ୨୦୨) । ଡ଼ଃ ସୁକୁମାର ସେନ୍ ଏହି ପ୍ରସଙ୍ଗରେ ପ୍ରଯୁକ୍ତ ବଙ୍ଗାଲୀ ଶବ୍ଦ ଉପରେ ଟିପ୍ପଣୀ କରିଛନ୍ତି ଯେ "ବଙ୍ଗଦେଶେ [ଅର୍ଥାତ୍ ନିମ୍ନବଙ୍ଗେ] ସାମାଜିକ ଓ ଆର୍ଥିକ ଜୀବନେର ମାନ ବେଶ ନୀଚୁ ଛିଲ—ବାଙ୍ଗାଲୀ ମାନେଇ ଛିଲ ଗରିବ ବେଚାରା" (ଚର୍ଯାଗୀତି ପଦାବଲୀ, ପୃ ୮) ଡ. ଶାହିଦୁଲ୍ଲାହ୍ ଓ ସୁନୀତି ବାବୁଙ୍କ ପ୍ରମୁଖ ମଧ୍ୟ ଏହିପରି ନାନା କଷ୍ଟ ଅର୍ଥ ଦ୍ୱାରା ଭୁସୁକୁ ବଙ୍ଗାଲୀ ଥିଲେ ବୋଲି ପ୍ରମାଣ କରିଛନ୍ତି । ସେମାନେ ଏହି ପ୍ରସଙ୍ଗରେ ସରହପାଙ୍କ ଚର୍ଯାର "ବଙ୍ଗେ ଜାୟା ନିଲେସି ପରେ ଭାଗେଲ ତୋହୋର ବିଣାଣା" (ନଂ୩୯) ଅଙ୍ଗଦେଶରେ ଜାୟା କଲୁ, ତେଣୁ ତୋର ବିଜ୍ଞାନ ବା ବୁଦ୍ଧିବୃତ୍ତି ନଷ୍ଟ ହେଲା— ଏହି କଥାଟି ଆଦୌ ସ୍ମରଣ କରନ୍ତି ନାହିଁ, ସେମାନଙ୍କ ଯୁକ୍ତିର ଉତ୍ତରରେ ସାଂକୃତ୍ୟାୟନଙ୍କ ଉକ୍ତିର କରି ଏତିକି କୁହାଯାଇପାରେ ଯେ "ଗୀତ ମେଁ ବଙ୍ଗାଲୀ ଶବ୍ଦ ଖାସ ତାନ୍ତ୍ରିକ ପରିଭାଷାକେ ଅର୍ଥ ମେଁ ବ୍ୟବହୃତ ହୁଆ ହୈ, × × × ଔର, ଜବ ଦେଶରେ ଦୌଡ଼ନା ହୈ, ତବ ତୋ ଭୁସୁକୁ ଆଜ ବଙ୍ଗାଲୀ ହୁଏ, ମାନୋ ପହେଲେ ନ ଥେ" । (ପୁରାତତ୍ତ୍ୱ ନିବନ୍ଧାବଳୀ, ପୃ୧୭୭)

ଭୁସୁକୁ ତାହେଲେ ପ୍ରଥମେ କେଉଁ ଦେଶର ଲୋକ ଥିଲେ ? ତେଙ୍ଗୁର ତାନ୍ତ୍ରିକ ଶାନ୍ତିଦେବ ଓ ଭୁସୁକୁ ମଧ୍ୟରେ ଏକାତ୍ମତା ପ୍ରାୟ ସମର୍ଥିତ ହୁଏ । ସେ ଶାନ୍ତିଦେବ ଥିଲେ ଜାହୋରବାସୀ; ତେଣୁ ଭୁସୁକୁ ମଧ୍ୟ ଜାହୋରବାସୀ । ଜାହୋର ସେ ଲାହୋର ନୁହେଁ (୮) ଏବଂ ହିମାଚଳ ପ୍ରଦେଶର ମାଣ୍ଡି (୯) ବା ବଙ୍ଗ ପ୍ରଦେଶର କୌଣସି ସ୍ଥାନ (୧୦) ନୁହେଁ ଏହା ବର୍ତ୍ତମାନ ସୁପ୍ରମାଣିତ । ଅନ୍ୟପକ୍ଷରେ ଓଡ଼୍ଡ଼ୀୟାନ, ଲଙ୍କା, ସମ୍ବଲ ଇତ୍ୟାଦି ସ୍ଥାନ ସହିତ ସମ୍ପର୍କିତ ଜାହୋର ଯେ ଓଡ଼ିଶାରେ ଅବସ୍ଥିତ ହୋଇପାରେ ଏହା ସହଜରେ ଅନୁମେୟ (୧୧) । ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ଜାହୋରକୁ କେନ୍ଦୁଝର ସହିତ ସନାକ୍ତ କରିଛନ୍ତି ଏବଂ ସେଠାରେ ଜହୋରିଆ ନାମ ଏକ କ୍ଷୁଦ୍ର ଗିରି ଏବେ ମଧ୍ୟ ତାର ସାକ୍ଷୀ ସ୍ୱରୂପ ବିଦ୍ୟମାନ । କେନ୍ଦୁଝରର କିମ୍ବଦନ୍ତୀରୁ ଜଣାଯାଏ ଯେ ଶାନ୍ତିଦେବ ନାମକ ଜଣେ ସ୍ଥାନୀୟ ରାଜା ରାଜ୍ୟତ୍ୟାଗ କରି ସନ୍ନ୍ୟାସ ଗ୍ରହଣ କରିଥିଲେ । ଭୁସୁକୁ ଯେ ସନ୍ନ୍ୟାସ ଧର୍ମ ନେଇଥିବା ଜଣେ ରାଜପୁତ୍ର ବା କ୍ଷତ୍ରିୟ ଥିଲେ ଏବଂ ଶାନ୍ତିଦେବ ରୂପେ ପ୍ରଥମେ ପରିଚିତ ଥିଲେ ଏହା ଚର୍ଯ୍ୟାର ଆଭ୍ୟନ୍ତରୀଣ ସାକ୍ଷ୍ୟରେ ମିଳେ । ତା ଛଡ଼ା 'ରାଉତ' ପଦବୀ ପରମ୍ପରାନୁକ୍ରମେ କେବଳ ଓଡ଼ିଶାରେ ହିଁ ପ୍ରଚଳିତ । ଚର୍ଯ୍ୟାଗୀତିକାର ବହୁ ଲେଖକଙ୍କୁ ଓଡ଼ିଆ ରୂପେ ଗ୍ରହଣ କରାଯାଇଛି; ସେଣୁ ଭୁସୁକୁଙ୍କୁ ଉତ୍କଳୀୟରୂପେ ଗ୍ରହଣ କରିବାରେ କୌଣସି ଅନ୍ତରାୟ ନାହିଁ ।

ଭୁସୁକୁପାଙ୍କ ସମୟ ସଠିକ ରୂପେ ନିରୂପଣ କରିବା ସମ୍ଭବ ନୁହେଁ । ତେବେ ଚରୁଖରଣ ପୋଥିର ଲିପିକାଳ ଖ୍ରୀ.୧୨୯୫ ତାଙ୍କ ଜୀବନକାଳର ନିମ୍ନତମ ସମ୍ଭାବ୍ୟସୀମା ଏବଂ ଦେବପାଳଙ୍କ ରାଜତ୍ୱକାଳ ଖ୍ରୀ.୮୦୯-୮୪୯ ଊର୍ଦ୍ଧ୍ୱତମ ସୀମା । ଶାସ୍ତ୍ରୀ, ଶହୀଦୁଲ୍ଲାହ୍, ନିହାରରଞ୍ଜନ ବସୁ ଓ ସୁକୁମାର ସେନ ପ୍ରଭୃତି ତାଙ୍କର ଭାଷା ଓ ଅନ୍ୟାନ୍ୟ ସଙ୍କେତ ଉପରେ ନିର୍ଭର କରି ଅନୁମାନ କରନ୍ତି ଯେ ସେ ଏକାଦଶ ଶତାବ୍ଦୀର ମଧ୍ୟଭାଗରେ ଆବିର୍ଭୂତ ହୋଇଥିଲେ ।

ଏହି ସ୍ଥଳରେ ଭୁସୁକୁଙ୍କ ନାମ ପରିଗ୍ରହଣ ସମ୍ପର୍କରେ କେତୋଟି କିମ୍ବଦନ୍ତୀ ଉଲ୍ଲେଖଯୋଗ୍ୟ (କ) ତାଙ୍କର ପ୍ରକୃତ ନାମ ଥିଲା ଶାନ୍ତିଦେବ । ତାଙ୍କର ଶରୀର ଉଦ୍ଧନ ସହନ ଦେଖି ରାଜା ଦେବପାଳ ଥରେ ଭୁସୁକୁ କହିଦେଲେ । ତା ପରଠାରୁ ସେ ସେହି

---

୮ । Waddel—Lamaism

୯ । A. H. Francke—Indian Tibet

୧୦ । ଶରତଚନ୍ଦ୍ର ଦାସ । ଯଶୋର । ଶାସ୍ତ୍ରୀ । ପୂର୍ବବଙ୍ଗର ସଭର । ବନସ୍ପତୋଷ ଭଣ୍ଡାରୁଣି, ଢ଼ାକା ।

୧୧ । Dr. N.K. Sahu—Budhism in Orissa, P. 150-52.

ନାମରେ ପରିଚିତ ହେଲେ । (ଖ) ଭୂମିରେ ବସିକରି ଶୟନ କରୁଥିବାରୁ ଭୁସୁକୁ ନାମ ହେଲା । ନାଥସିଦ୍ଧ ମଧ୍ୟରେ ବାଲଶବ୍ଦ ନାଥ ଯଥାର୍ଥତଃ ଭୁଷୁକୁ (ଗ) ନାଳନ୍ଦାର ସଙ୍ଘରେ ତାଙ୍କର ସତୀର୍ଥଗଣ ଏପରି ନାମକରଣ କରିବା ମୂଳରେ କାରଣ ସ୍ୱରୂପ ଥିଲା — "ଭୁଞ୍ଜାନୋପି ପ୍ରଭାସ୍ୱରଃ ସୁପ୍ତୋପି କୁଟିଂ ଗତୋପି ତଦେବେତି ଭୁସୁକୁ ସମାଧି ସମାପନ୍ନତ୍ୱାତ୍ ଭୁସୁକୁ ନାମ ଖ୍ୟାତିଂ ସଂଘେପି," ଅର୍ଥାତ୍ ଭୋଜନ ସମୟରେ, ଶୟନ ସମୟରେ ଏବଂ କୁଟୀରରେ ବସି ଥିଲେ ବି ତାଙ୍କର ମୂର୍ତ୍ତି ଉଜ୍ଜ୍ୱଳ ଦିଶୁଥିଲା । (ଘ) ଭୁସୁକୁ ନିଜର ନିର୍ଜନ କୁଟୀରରେ ରହି କେବଳ ଭୋଜନ ଶୟନ କରୁଥିବାରୁ ଭୁସୁକୁ ନାମ ହେଲା । ଏଥିର ଅର୍ଥ ଭୁ=ଭୁକ୍ତ, ସୁ=ସୁପ୍ତ, କୁ=କୁଟୀରବାସ (ଙ) ସେ ସର୍ବଦା ଶାନ୍ତଭାବରେ ରହୁଥିବାରୁ ଲୋକେ ଶାନ୍ତିଦେବ କହୁଥିଲେ । (ଚ) ମଗଧ ରାଜାଙ୍କର ରାଉତ ପଦ ଗ୍ରହଣ କରିବାରୁ କିମ୍ବା ନିଜେ କ୍ଷତ୍ରିୟ ବା ରାଜକୁଳରେ ଜନ୍ମିଥିବାରୁ ରାଉତ ନାମରେ ପରିଚିତ ଥିଲେ ।

ଲୌକିକ ଜୀବନକୁ ଆଶ୍ରୟ କରି ଚର୍ଯ୍ୟା-ଗୀତିକାର ଆତ୍ମପ୍ରକାଶ । ସାଧାରଣ ମନୁଷ୍ୟର ପ୍ରାତ୍ୟହିକ ଜୀବନ ଯେଉଁ ପ୍ରକୃତି ଓ ପରିବେଶର ବେଷ୍ଟନୀ ମଧ୍ୟରେ ବିଳସିତ, ତା'ର ବାସ୍ତବ ଆଲେଖ୍ୟ ଚର୍ଯ୍ୟା-ଗୀତିକାର ପୃଷ୍ଠଭୂମିକା । ତେଣୁ ଏ ସମସ୍ତ ଗୀତିକା ସମକାଳୀନ ଜୀବନାଚରଣ ଓ ଲୋକଚର୍ଯ୍ୟାର ବିଶ୍ୱସ୍ତ ଦଲିଲ । ଯେଉଁ ସମାଜ-ପରିବେଶ ଓ ଜୀବନ-ଯାତ୍ରା ଗୀତଗୁଡ଼ିକର ଉତ୍ସ ସେ ସମାଜର ଓ ଜୀବନର କେତେକ ଖଣ୍ଡିତ ଚିତ୍ର ଭୁସୁକୁଙ୍କ ରଚନାରେ ଉଦ୍ଭାସିତ । ସଞ୍ଚିତ ଶସ୍ୟନଷ୍ଟକାରୀ ଗାତୁଆ ମୂଷାକୁ ଶାସନ କରିବାର କଳ୍ପନା (ନ ୨୧), ମେଘାଚ୍ଛନ୍ନ ଦିନ ଶେଷରେ ଚନ୍ଦ୍ରୋଦୟର ରମଣୀୟ ପ୍ରକାଶ (ନ ୩୦) ଜଳ-ଦସ୍ୟୁ କର୍ତ୍ତୃକ ଲୁଣ୍ଠିତ ଓ ଦରିଦ୍ରୀଭୂତ ଗୃହସ୍ଥର ବିଡ଼ମ୍ବନା (ନ ୪୯) ଇତ୍ୟାଦି କେତୋଟି ଚିତ୍ରକଳ୍ପ ଭୁସୁକୁଙ୍କ ରଚନାରେ ଅପୂର୍ବ କାବ୍ୟରସ ସଂଚାରିତ କରିଛି । ଚର୍ଯ୍ୟାଚର୍ଯ୍ୟ ବିନିଶ୍ଚୟ'ରେ କାହ୍ନୁପାଙ୍କ ପରେ ସର୍ବାଧିକ ଗୀତିକାର ଲେଖକଭାବେ ଭୁସୁକୁଙ୍କର ସ୍ଥାନ ଦ୍ୱିତୀୟ; ମାତ୍ର କେହି ବି କହିପାରେ ଗୁଣାତ୍ମକ ବିଚାରରେ ସେ ସମ୍ଭବତଃ ଅଦ୍ୱିତୀୟ ।

## —ନ ୬ ମୃଗୟା ଚର୍ଯା—

ରାଗ—ପଟ୍ଟମଞ୍ଜରୀ

### ମୂଳ :—

କାହେରେ ମେଲ ଅଚ୍ଛହୁ କୀସ
ବେଢିଲ ହାକ ପଡ଼ଇ ଚୌଦୀସ ।।
ଅପଣା ମାସେଁ ହରଣା ବୈରୀ
ଖଣହ ନ ଛାଡ଼ଅ ଭୁସୁକୁ ଅହେରୀ ।।
ତଣ ନ ଛୁପଇ ହରଣା ପିବଇ ନ ପାଣୀ
ହରଣା ହରଣୀର ନିଲଅ ନ ଜାଣୀ ।।
ହରଣୀ ବୋଲଅ ସୁଣ ହରଣା ତୋ
ଏ ବଣ ଛାଡ଼ୀ ହୋହୁ ଭାଂତୋ ।।
ତରଂଗତେ ହରଣାର ଖୁର ନ ଦୀସଇ
ଭୁସୁକୁ ଭଣଇ ମୂଢ଼ ହିଅହି ନ ପଇସଇ ।।

### ପାଠାନ୍ତର—

ଶାସ୍ତ୍ରୀ—ତରଙ୍ଗତେ
ଶହୀଦୁଲ୍ଲାହ – ପଡଇ, ଛାଡ଼ଇ, ଛୁବଇ, ହରଣ ସୁଣତୋ, ତରଙ୍ଗତେ
ସେନ୍—ହରିଣୋ ସୁଣ ହରିଆତୋ
ବାଗ୍‌ଚୀ—କାହେରେ ଘେଣି, ତରସନ୍ତେ
ମୁନିଦତ୍ତ ଟୀକା —ତରଙ୍ଗତେ, ତଣ ନ ଖାଅଇ

### ଆଧୁନିକ ରୂପ—

କାହାରେ ଘେନି ମେଲି ଅଛୁ (ରୁ) କସ
ବେଢ଼ିଲେ,ହାକ ପଡଇ ଚଉଦିଶ ।
ଆପଣା ମାଂସେ ହରିଣା ବଇରୀ
ଖଣେହେଁ ନ ଛାଡ଼ଇ ଭୁସୁକୁ ଆହେରୀ (ଶିକାରୀ) ।

ତୃଣ ନ ଛୁଏଁ ହରିଣ ନ ପିଅଇ ପାଣି
ହରିଣା ହରିଣୀର ନିଲୟ ନ ଜାଣି ।
ହରିଣୀ ବୋଲଇ ହରିଣା ଶୁଣ ତ
ଏ ବଣ ଛାଡ଼ି ହୁଅ (ରେ) ଉଭ୍ରାନ୍ତ ।
ତୃସ ଗଢରେ ହରିଣାର ଖୁର ନ ଦିଶଇ
ଭୁସୁକୁ ଭଣଇ ମୂଢ଼ ହିଆରେ ନ ପଶଇ ।

ବ୍ୟାଖ୍ୟା—

ସାଧାରଣ ଦୃଷ୍ଟିରେ ଗୀତକାଟିର ଅର୍ଥ କବି ଗୋଟିଏ ହରିଣକୁ ସମ୍ବୋଧନ କରି କହୁଛନ୍ତି—ରେ ହରିଣ, ତୁ ଏବେ କାହାକୁ ଆଶ୍ରୟ କରି ଆଉ କାହାକୁ ଅବହେଳା କରି ଜୀବନ ରକ୍ଷା କରିବୁ ? ଶିକାରୀମାନେ ଚାରିଦିଗରୁ ଡାକହାକ ଦେଇ ତୋତେ ଘେରିଗଲେଣି । ନିଜର ମାଂସ ପାଇଁ ତୁ ତ ନିଜେ ନିଜର ଶତ୍ରୁ । ଶିକାରୀ ଭୁସୁକୁ ସେହି ମାଂସ ଲୋଭରେ ତୋତେ କ୍ଷଣେ ମାତ୍ର ଛାଡ଼ିବ ନାହିଁ । ଶିକାରୀ ପରିବେଷ୍ଟିତ ଚକିତ, ଭୟାର୍ତ୍ତ ହରିଣ ଜୀବନ ବିକଳରେ କ୍ଷୁଧା ତୃଷା ଭୁଲିଯାଏ । ସେ ମଧ୍ୟ ଜାଣେନା ତା'ର ପ୍ରାଣର ହରିଣୀ କେଉଁଠି ଅଛି । ଜୀବନର ଏହି ଶେଷକ୍ଷଣରେ ଯଦି ଥରେ ତା'ର ସାକ୍ଷାତ ମିଳନ୍ତା ! ଏତିକିବେଳେ ଦୂରରୁ ହରିଣୀର ଅନୁଯୋଗଭରା ସତର୍କବାଣୀ ଭାସିଆସିଲା—ହରିଣରେ, ତୁ ଏକ୍ଷଣି ଏ ବଣ ଛାଡ଼ି ପଳାୟନ କର । ହରିଣ ଏହା ଶୁଣି ମୁହୂର୍ତ୍ତେ ବିଳମ୍ବ ନ କରି ଖୁବ୍ ଦ୍ରୁତ ବେଗରେ ଲମ୍ଫ ଦେଇ ଦେଇ ପଳାୟନ କଲା; ଏପରି କି ଗତି ବେଗରେ ତା'ର ଖୁରା ଭୂମିସ୍ପର୍ଶ କରୁଛି କି ନାହିଁ ଜଣାଗଲା ନାହିଁ ।

କିନ୍ତୁ ଗୀତକାଟିରେ ଏକ ତାତ୍ତ୍ୱିକ ଅର୍ଥ ଅନ୍ତର୍ନିହିତ । ଏଥିରେ ବ୍ୟବହୃତ କେତେ ଶବ୍ଦର ସନ୍ଧ୍ୟା ଅର୍ଥ ପ୍ରକାଶ କଲେ ସେହି ଗୂଢ଼ ଭାବଟି ସ୍ପଷ୍ଟ ହୋଇଯାଏ । ସନ୍ଧ୍ୟା ଅର୍ଥରେ ହରିଣ—ଚିତ୍ତ; ହରିଣୀ—ଜ୍ଞାନମୁଦ୍ରା ନୈରାତ୍ମା; ମାଂସ—ଅବିଦ୍ୟା, ମାତ୍ସର୍ଯ୍ୟାଦି ଦୋଷ; ହରିଣୀ-ନିଳୟ—ମହାସୁଖ ଚକ୍ର; ବନ—କାୟା; ତୃଣ ଓ ପାଣି—ସାଂସାରିକ ଭୋଗ ବିଳାସ; ଶିକାରୀ—ସଦଗୁରୁ ବଚନ—ବାଣଧାରୀ ସାଧକ । ଏତଦାନୁସାରେ ଗୀତକାଟିର ଅର୍ଥ ହେବ ମୃତ୍ୟୁ ଓ ମାରଦ୍ୱାରା ବେଷ୍ଟିତ ହୋଇ ଚତୁର୍ଦ୍ଦିଗରୁ ମାର ମାର ଶବ୍ଦ ଶୁଣି ବିଷୟ-ଚଞ୍ଚଳ ଚିତ୍ତ ଭାବନାରତ ଯେ କାହାକୁ ଅବଲମ୍ବନ କରି ଓ କାହାକୁ ବର୍ଜନ କରି ସେ କିପରି ନିର୍ବାଣ ଲାଭ କରିବ । ଅବିଦ୍ୟା ଓ ମାତ୍ସର୍ଯ୍ୟାଦି ଦୋଷ ହେତୁ ଚିତ୍ତ ନିଜେ ନିଜର ସର୍ବନାଶ କରେ । ଭୁସୁକୁ ଏହା ଉପଲବ୍ଧି କରି ଗୁରୁବଚନ ଅନୁଯାୟୀ ସଦାସତର୍କ ରହନ୍ତି । ଫଳତଃ କ୍ରମେ ଚିତ୍ତ ଜାଗତିକ ଭୋଗବିଳାସ ପରିତ୍ୟାଗ କରେ ଏବଂ ଜ୍ଞାନମୁଦ୍ରା ନୈରାତ୍ମାର ନିବାସ ବା ମହାସୁଖ ଚକ୍ରରେ ପ୍ରବେଶପାଇଁ ଉଦଗ୍ରୀବ ହୁଏ; କିନ୍ତୁ ଇନ୍ଦ୍ରିୟ-ଗ୍ରାହ୍ୟ ତାହାତ ଜଣାଯାଏ ନାହିଁ । ମାତ୍ର ଯୋଗୀର ଏରୂପ ଏକନିଷ୍ଠ ସାଧନା ଓ ନିର୍ବାଣ-

କାମନା ଲକ୍ଷ୍ୟ କରି ସ୍ୱୟଂ ନୈରାତ୍ମା ତାଙ୍କୁ ଆହ୍ୱାନ କରନ୍ତି—'ସାଧକ ! ସ୍ଥୂଳକାୟା ଅତିକ୍ରମ କରି ଭ୍ରାନ୍ତିଶୂନ୍ୟ ମହାସୁଖ ଚକ୍ରରେ ବିଚରଣ କର ।' ଏହା ଶୁଣି ଚିତ୍ତ ଦ୍ରୁତ ଗତିରେ (ସମ୍ପୂର୍ଣ୍ଣଭାବରେ) ମହାସୁଖ ଚକ୍ରରେ ପ୍ରବେଶପାଇଁ ପ୍ରଧାବିତ ହୁଏ । ଭୁସୁକୁ କହନ୍ତି— ଏହି ସାଧନାର ତତ୍ତ୍ୱ ମୂର୍ଖମାନଙ୍କ ହୃଦୟରେ ପ୍ରବେଶ କରେ ନାହିଁ ।

ଏହି ଗୀତିକାଟି ସହିତ କବିଙ୍କର ନ ୨୩ ଗୀତିକାଟି ତୁଳନୀୟ । ସେଥିରେ ମଧ୍ୟ ଭୁସୁକୁ ଅହେରୀର ମୃଗୟା-ଯାତ୍ରା ଓ ହରିଣୀ-ନିଧନର ଚିତ୍ର ପ୍ରଦତ୍ତ । ରୂପକ ସାହାଯ୍ୟରେ ନିଗୂଢ଼ ତାତ୍ତ୍ୱିକ ବିଷୟ କିପରି ସହଜଗ୍ରାହ୍ୟ ଭାବରେ ପ୍ରତିପାଦିତ ହୋଇପାରେ ଏକ ବିରଳ ଦୃଷ୍ଟାନ୍ତ ମୃଗୟା-ଚର୍ଯାରେ ସୁଲଭ୍ୟ । ସମାଲୋଚକଙ୍କ ମତରେ ଭୁସୁକୁଙ୍କ ରଚନା 'ସନ୍ଧ୍ୟା ସଙ୍କେତମୟ ଏବଂ ପାରିଭାଷିକ ଶବ୍ଦ କଣ୍ଟକିତ' ହେଲେ ମଧ୍ୟ ଆଲୋଚ୍ୟ ଗୀତିକାଟିରେ ମୃଗୟାର ଯେପରି ଏକ ସଂହତ ଆଖ୍ୟାନ-ରୂପକ ପ୍ରତିଫଳିତ ହୋଇଛି ତାହା ବାସ୍ତବିକ ବିପୁଳ କବିତ୍ୱ ଶକ୍ତିର ପରିଚାୟକ । 'ଆପଣା ମାଂସେଁ ହରିଣା ବୈରି'— ଭଳି ଏକ ଲୋକପ୍ରଚଳିତ କଥାର ମନୋଜ୍ଞ ବିନ୍ୟାସ ଏବଂ 'ତରଙ୍ଗତେ ହରିଣାର ଖୁର ନ ଦୀସଇ'—ଭଳି ଏକ ଉଦାତ୍ତ ଗତି-ଚିତ୍ରର ରୂପକଳ୍ପ ଗୀତିକାଟିର ମାର୍ମିକ ମୂଲ୍ୟ ବର୍ଦ୍ଧିତ କରେ । କାଳିଦାସଙ୍କର ଅଭିଜ୍ଞାନ ଶକୁନ୍ତଳମ୍‌ରେ ଦୁଷ୍ମନ୍ତଙ୍କ ବାଣବିଦ୍ଧ ହରିଣୀର ପଳାୟନ ଚିତ୍ର ମଧ୍ୟରେ ଏହିପରି ବର୍ଣ୍ଣନା ଦେଖାଯାଏ—"ପଶ୍ୟୋଦଗ୍ର ପ୍ଲୁତତ୍ୱାଦ୍ ବିୟତି ବହୁତରଂ ସ୍ତୋକ ମୂର୍ବ୍ୟାଂ ପ୍ରୟାତି ।" ଭୁସୁକୁଙ୍କର ଏହି ଚିତ୍ରକଳ୍ପଟି ଦ୍ୱିଜେନ୍ଦ୍ର ବନ୍ଦୋପାଧ୍ୟାୟ ନାମକ ଜନୈକ ବଙ୍ଗୀୟ ଉପନ୍ୟାସ ଲେଖକଙ୍କୁ ଏପରି ଗଭୀରଭାବରେ ପ୍ରଭାବିତ କରିଛି ଯେ ସେ ତାଙ୍କର ଗୋଟିଏ ଉପନ୍ୟାସର ନାମକରଣ କରିଛନ୍ତି—'ଚର୍ଯାପଦେର ହରିଣୀ' ।

---

ଉଦଗନ୍ତ ୮/୩-୪ ମାର୍ଚ୍ଚ-ଏପ୍ରିଲ ୧୯୭୭

## ନ ୨୧ (ମୂଷିକ-ଚର୍ଯ୍ୟା)

**ମୂଳ :—**

ରାଗ—ବରାଡ଼ୀ

ନିସି ଅନ୍ଧାରୀ ମୁଷାର ଚରା
ଅମିଅ ଭଖଅ ମୁଷା କରଅ ଆହାର ॥ ଧ୍ରୁ ॥ ୧ ॥
ମାରରେ ଯୋଇଅ ମୂଷା ପବଣା
ଜେଁଣ ତୂଟଅ ଅବଣା-ଗବଣା ॥ ୨ ॥
ଭବ ବିଦାରଅ ମୂଷା ଖଣଅ ଗାତୀ
ଚଞ୍ଚଳ ମୂଷା କଲଆଁ ନାଶକ ଥାତୀ ॥ ୩ ॥
କଳା ମୂଷା ଉହ ଣ ବାଣ
ଗଅଣେ ଉଠି ଚରଅ ଅମଣ ଧାଣ ॥ ୪ ॥
ତବ ସେ ମୂଷା ଉଞ୍ଚଳ ପାଞ୍ଚଳ
ସଦଗୁରୁ ବୋହେ କରହ ସୋ ନିଚ୍ଚଳ ॥ ୫ ॥
ଜବେଁ ମୂଷାଏର ଚାର ତୁଟଅ
ଭୁସୁକୁ ଭଣଅ ତବେଁ ବାନ୍ଧନ ଫିଟଅ ॥ ୬ ॥

**ପାଠାନ୍ତର—**

୧. କ—ଅମିଅ, ଖ-ଅମିତ, ଙ-ଆହାଣ୍ଡି, ଚ-ମୂଷା ଅସ୍ଥର
୨. ଚ—ଜେଣ (ଣ) ତୁଟ୍ଟଅ
୩. ଖ—ଗାତୋ, ଉଦ୍ଧଷ୍ଟ ଅନୁବାଦ—ଭିତ (କାନ୍ଥ), ଖ-ଥ ତୋ
୪. ଙ—କାଳ, ଚ-କରଅ ଅମିଅ ପାଣ (ଟୀକାର "ମଧୁପାନା ସ୍ୱାଦଂ କରୋତି" ଅନୁସରଣରେ), OBLT-ଚରଥ ମଣ ଧାନ (ଉଦ୍ଧଷ୍ଟ ଅନୁବାଦ "ରେଡ ମନୋଧମ" ଭିତ୍ତିରେ)
୫. ଖ—ତାବ, କ-ଘ-କରହ
୬. ଚ—ମୂଷା ଅସ୍ଥର ତୁଃଅ

## ଆଧୁନିକ ରୂପାନ୍ତର—

ନିଶି ଅନ୍ଧାରେ ମୂଷାର୍ ସଞ୍ଚର,
ଅମୀସ୍ତ ଭକ୍ଷଇ ମୂଷା, କରଇ ଆହ୍ଵାର୍ ।
ମାରରେ ଯୋଗିଆ ମୂଷା-ପବନ,
ଯେଣ୍ଟେ ତୁଟଇ ଗମନାଗମନ ।
ଭବ ବିଦାରଇ ମୂଷା ଖୋଲଇ ଗାତ,
ଚଞ୍ଚଳ ମୂଷା କଲିଣ ନାଶ ସ୍ଥିତ ।
କଳା ମୂଷା- ଏହାର ନାହିଁ ବର୍ଣ୍ଣ,
ଗଗନେ ଉଠି ଚରଇ ଅମନ ଧାନ ।
ତେବେ ସେ ମୂଷା ଉଚ୍ଛଳପାଚ୍ଛଳ,
ସଦଗୁରୁ ବୋଧେ କର ତା ନିଶ୍ଚଳ ।
ଯେବେ ମୂଷାର ସଞ୍ଚର ତୁଟଇ
ଭୁସୁକୁ ଭଣଇ ତେବେ ବନ୍ଧନ ଫିଟଇ ।

## ବ୍ୟାଖ୍ୟା :—

ଗାଢ ଅନ୍ଧାରଆରେ ମୂଷା ଚରିବାକୁ ବାହାରେ । ସେ ଆହ୍ଵାର ସ୍ଵରୂପ ଅମୃତ ଭକ୍ଷଣ କରେ । ହେ ଯୋଗି, ପବନ ରୂପକ ସେହି ମୂଷାକୁ ମାର, ଯେପରି ତାର ଗମନାଗମନ ବନ୍ଦ ହେବ । ଏଇ ମୂଷା ଗାତ ଖୋଲେ ଓ ସଂସାର ବିଦାରଣ କରେ । ତାର ଚଞ୍ଚଳ ଗତି କଲନା କରି ତାର ସ୍ଥିତି ବିନାଶ କର । କାଳରୂପୀ ଏହି ମୂଷାର ରୂପବର୍ଣ୍ଣ ନାହିଁ, ସେ ଶୂନ୍ୟ ମଣ୍ଡଳକୁ ଅଲକ୍ଷ୍ୟରେ ଉଠିଯାଇ ମନୋଭୂମିର ଧାନ ଖାଇଯାଏ । ଏମିତି ଏ ମୂଷା ଚଟରପଟର ହେଉଥିବ, ତୁମେ ସଦ୍‌ଗୁରୁ ଉପଦେଶ ଅନୁସାରେ ତାକୁ ନିଶ୍ଚଳ କର । ଭୁସୁକୁ କହନ୍ତି, ଏହି ମୂଷାର ଚଗଫେରା ଯେତେବେଳେ ତୁଟେ, ସେତେବେଳେ ଭବ ବନ୍ଧନ ଫିଟେ ।

## ସନ୍ଧା-ଅର୍ଥ :—

ନିଶି ଅନ୍ଧାରି—ପ୍ରଜ୍ଞା, କର୍ମଚେତନା ।
ମୂଷା—ଚିତ୍ତ-ପବନ ।
ଅମୀସ୍ତ—ବୋଧିଚିତ୍ତ ।
ଗଅଣ—ମହାସୁଖ ଚକ୍ର ।
ଅମନ ଧାନ—ଅମନୋଧାନ ଭୂମି, ଅମନସ୍କ ଧ୍ୟାନ ।

**ବ୍ୟାଖ୍ୟାନ୍ତର :—**

ଗୀତକାଡିର ନିମ୍ନୋକ୍ତ ଶବ୍ଦ ଓ ବାକ୍ୟାଂଶର ଭିନ୍ନଭିନ୍ନ ବ୍ୟାଖ୍ୟା ପରିଦୃଷ୍ଟ ହୁଏ । ଚ୍ଚଗ, ଚ୍ଚର, ଚରଅ—ବିଚରଣ କରିବା । ମାତ୍ର ପଶୁପକ୍ଷୀଙ୍କ ସମ୍ବନ୍ଧରେ ଖାଦ୍ୟାନ୍ୱେଷଣରେ ବିଚରଣ ଯଥାର୍ଥ ।

ଆହାର—ଆହରଣ (ସେନ), exhausts (ଶହୀଦୁଲ୍ଲାହ୍) eat (ମୁଖାର୍ଜି) । ମାତ୍ର ଏଠା ମୁଖ୍ୟ ଖାଦ୍ୟ ବା ଜୀବନ ଧାରଣର ଯୋଗାଣ ଅର୍ଥରେ ଗ୍ରହଣୀୟ ।

ଭଖଅ—ଭକ୍ଷକ (ସେନ) ଭକ୍ଷୟିତ୍ୱା (ବାଗଚୀ) । ଗୀତକାର ଅନ୍ୟାନ୍ୟ କ୍ରିୟା ପ୍ରୟୋଗ ଦୃଷ୍ଟିରୁ ସମାପିକା କ୍ରିୟାଭାବରେ ଗ୍ରହଣୀୟ ।

ବହାରଅ—ବୃନ୍ଦାରକ (ବଲାସୀ, ଶକ୍ତିମାନ-ସେନ), ବିଦାରକ (ଅନ୍ୟାନ୍ୟ), ସମାପିକା କ୍ରିୟା ଭାବରେ ଗ୍ରହଣୀୟ ।

ଗାଣ୍ଠ—ଗଣ୍ଡି (ବାଗଚୀ), କାଣ୍ଡ (ଚଉଦଶ ଅନୁବାଦ), ଗାଣ୍ଠ ଅର୍ଥ ସର୍ବାପେକ୍ଷା ସୁଚ୍ଛଳ ଗ୍ରାହ୍ୟ । ଟୀକାର ଅର୍ଥ-ଗଡ (ଦୁର୍ଗତ)

କଲଅଁ—କବଳୟିତ୍ୱା (having eaten—ବାଗଚୀ), କଲ୍ୟାଣ (ସେନ), ଆକଳନ କରିବା ଅର୍ଥ ଟୀକା ସମର୍ଥିତ ।

ନାଶକ—ନାଶକାରୀ (ବାଗଚୀ), ନାଶ ନିମିତ୍ତ (ଶହୀଦୁଲ୍ଲାହ୍, ସେନ), ସ୍ୱାର୍ଥିକ 'କ' ସଂଯୁକ୍ତ ଅନୁଜ୍ଞା ଭାବେ ଗ୍ରହଣୀୟ ।

ଥାଣ—ନିକ୍ଷେପ (Deposit-ବାଗ୍‌ଚୀ), ପାତ (ଚଉଦଶ ଅନୁବାଦ), ଟେକ (କର), ଶହୀଦୁଲ୍ଲାହଙ୍କ ମଂ-ଆ-କୋ ପାଠ 'ଆଅ.ରୁ' ଅର୍ଥ ସୂଚକ ।

ଉହ—ଉପ୍ୟ (ବାଗଚୀ), ଅନୁମାନ କରିବା (ସେନ) direetion (ମୁଖାର୍ଜି)। (ଚର୍ଯ୍ୟା । ୨୯ ଟୀକା ଦ୍ରଷ୍ଟବ୍ୟ) ।

ଅମନ ଧାନ—ଅମନସ୍କ ଧ୍ୟାନ (ସେନ), ମନୋଧର୍ମ (ଚଉଦଶ ଅନୁବାଦ) ଅମନ ଧାନ (Late autumn crop—ଶହୀଦୁଲ୍ଲାହ୍), ବାହ୍ୟାର୍ଥରେ ଧାନ କ୍ଷେତ ଏବଂ ଗୂଢ଼ ଅର୍ଥରେ ଅମନ ଧାନ ଭୂମି ଗ୍ରହଣୀୟ ।

## ନ. ୪୩ (ସମରସ—ଚର୍ଯ୍ୟା)

ରାଗ-ବଙ୍ଗାଲ

**ମୂଳ—**

ସହଜ ମହାତରୁ ଫରିଅ ଏ ତେଲୋଏ,
ଖସମ ସଭାବେ ରେ ବା ଣ ମୁକା କୋଏ ॥ ୧ ॥

॥ ୨ ॥

ଜିମ ଜଳେ ପାଣିଆ ଟଳିଆ ଭେଭ ନ ଜାଅ
ତିମ ମଣ ରଅଣାରେ ସମରସେ ଗଅଣ ସମାଅ ॥ ୩ ॥
ଯାସୁ ନାହ୍ନି ଅପ୍‌ପା ତାସୁ ପରେଲ କାହ୍ନି
ଆଇ ଅନୁଅଣା ରେ ଜାମ ମରଣ ଭବ ନାହ୍ନି ॥ ୪ ॥
ଭୁସୁକୁ ଭଣଇ କଟ ରାଉତୁ ଭଣଇ କଟ ସଅଳା ଏହୁ ସହାବ
ଜାଇ ନ ଆବଇ ରେ ଣ ତହିଁ ଭାବାଭାବ ॥ ୫ ॥

**ପାଠାନ୍ତର:—**

୧. କ—ଫରିଅଏ, ଘ-ଫଫରିଣ୍ଣ; କ-ବାଣତ କା, ଚ-ବାଣତ ମୁକା, ଖ-ବାନ୍ଧଣତ ମୁକା, O.B.L.T-ବା (ଧ)ଣତ (ମୁ)କା, ତିବତି ଅନୁବାଦରେ—"ବନ୍ଧନାତ୍ ମୁକ୍ତଃ କଃ" ।

୨. ସଂସ୍କୃତ ଓ ତିବତିରେ ମଧ୍ୟ ଅବଲୁପ୍ତ ।

୪. କ—ଭେଢ଼, କ-ମରଣ ଅଅଣା ।

୪. କ—ଜନ୍ତୁପୁଣା ହୁ, ଙ-ଜାସୁ ନାହୁ; କ-ଅଷ୍ପାତା ସୁପରେଲ, ଗ-ଅପ୍‌ପା ତାସୁ ପରେଲ, O·B.L.T-ଅପ୍‌ପା ତା ସୁପରେଲ ।

୫. କ—ତଂହୁ ।

## ଆଧୁନିକ ରୂପାନ୍ତର :—

ସହଜ ମହାତରୁ ଫରଇ ଏ ତେ ଲୋକେ
ଖସମ ସ୍ୱଭାବେ ରେ ବା ନମୁକ୍ତ କେ ?
ଯେମିତ ଜଳେ ପାଣି ଟଳି ଭେଦ ନ ଯାଏ
ତେମିତ ମନରତନ ରେ ସମରସେ ଗଗନ ସମାଏ ।
ଯାହାର ନାହିଁ ଆପଣା ତାହାର ପର କାହିଁ ?
ଆଦ ଅନୁତ୍ପନ୍ନର ରେ ଜନ୍ମ ମରଣ ଭବ ନାହିଁ ।
ଭୁସୁକୁ ଭଣଇ କଟ ରାଉରୁ ଭଣଇ କଟ ସକଳ ଏହି ସ୍ୱଭାବ
ଯାଏ ନା ଆସେ ରେ, ନା ତହିଁ ଭାବାଭାବ ।

### ବ୍ୟାଖ୍ୟା—

ସହଜ (ତତ୍ତ୍ୱ ବା ଆନନ୍ଦ) ଏକ ମହାତରୁ ସଦୃଶ ତ୍ରିଭୁବନରେ ପରିବ୍ୟାପ୍ତ । (ତୁ : ତିଲୋପା-ଅଦଅ ଚିତ୍ତତରୁଅର ଗଅ ତିହୁଅଣ ବିତ୍ଥାର । ଦୋହା-୧୭ ।। ବାଗ୍‌ଚୀ) ତାହାର ଉପଲବ୍‌ଧି ପାଇଁ କେବଳ ଆବଶ୍ୟକ ଚିତ୍ତରେ ଶୂନ୍ୟତା ବୋଧର ଜାଗରଣ । ଚିତ୍ତ ଶୂନ୍ୟତାଭାବ ସମ୍ପନ୍ନ ତ ହେଲେ କିଏ ବା (ଭବ ବନ୍ଧନରୁ) ମୁକ୍ତ ନହୁଏ ?

ଜଳ ଓ ପାନୀୟ (ଦୁଗ୍‌ଧ, ମଦ୍ୟ ଇତ୍ୟାଦି) ଯେପରି ଅଭେଦ୍ୟ ଭାବେ ମିଶିଯାଏ, ସେପରି ବୋଧିଚିତ୍ତ ଶୂନ୍ୟତତ୍ତ୍ୱରେ ପ୍ରବେଶ କଲେ ସହଜ ସହିତ ସମରସ ପ୍ରାପ୍ତ ହୁଏ । (ତୁ : ସରହ-ଶିଅ ମଣ ମୁଣହୁରେ ଣିଉଣେଁ ହୋଇ । ଜିମ ଜଲ ଜଲହି ମିଲନ୍ତେ ସୋଇ ।। ଦୋହା-୩୨ ।।, ଜଭ ବି ପଇସଇ ଜଲହି ଜନ୍ତୁ ତତ୍ତ୍ୱଇ ସମରସ ହୋଇ । ଦୋହା-୭୪ । ବାଗ୍‌ଚୀ)

ଏପରିଭାବେ ସହଜରସରେ ଯିଏ ନିମଗ୍ନ ତାର ତ ନିଜ ଅସ୍ତିତ୍ୱଜ୍ଞାନ ବା ଆତ୍ମ-ଚେତନା ରହେନାହିଁ, ତେଣୁ ତା ନିକଟରେ ଅପରାପର ସମ୍ବନ୍ଧରେ ଚେତନା କାହୁଁ ଅବା ଆସିବ ? (ତୁ : କାହ୍ନୁପା-ଘୁମଇ ଣ ଚେବଇ ସପରବିଭାଗ । ଚର୍ଯା-୩୬) ଏହି ଅବସ୍ଥାରେ ଯେତେବେଳେ ସାଧକ ନିଜର ଉତ୍ପତ୍ତିର ସୂତ୍ର ମଧ୍ୟ ବିସ୍ମୃତ ହୋଇ ମନେକରେ ଯେ ସେ ମୂଳରୁ ଉତ୍ପନ୍ନ ହୋଇନାହିଁ, ସେତେବେଳେ ତା ନିକଟରେ ଜନ୍ମ, ମରଣ ଓ ଜୀବନର ଚିନ୍ତା ସୁଦ୍ଧା ରହେନାହିଁ । (ତୁ : ଭୁସୁକୁ-ଆଇଏ ଅନୁଅନା ଏ ଜଗରେ ଭଂାନ୍ତିଏ ସୋ ପଡ଼ିହାଇ । ଚର୍ଯା-୪୧)

ଭୁସୁକୁ ଶପଥ ଦୃଢ଼ଭାବରେ କହନ୍ତି ଯେ ସାରା ସଂସାରରେ ସକଳ ବସ୍ତୁର ମଧ୍ୟ ଏହାହିଁ ସ୍ୱଭାବ । ସଂସାରରେ ଯିବା-ଆସିବା, ଥିବା-ନଥିବା ବୋଲି କୌଣସି ତତ୍ତ୍ୱ ନାହିଁ । (ତୁ : କାହ୍ନୁ—ଭବ ଜାଇ ନ ଆବଇ ଏଥୁ କୋଇ । ଚର୍ଯା-୪୨)

ତିଲୋପାଙ୍କର କେତୋଟି ଦୋହାରେ ଏବଂ ଗୀତିକାର ଅନୁରୂପତତ୍ତ୍ୱ ଏହିପରିଭାବେ ପରିଦୃଷ୍ଟ ହୁଏ—

ସହଜେଁ ସ୍ୱଭାବ ଣ ପୂଚ୍ଛିହ । ସୁଣ୍ଣ କରୁଣ ତହି ସମରସ ଇଚ୍ଛିଅ ॥ ୨॥
ଚିତ୍ତ ଖସମ ଜହି ସମସୁହ ପଇଠ୍ଠଇ । ଇନ୍ଦୀଅ ବିସଅ ତହି ମତ୍ତ ଣ ଦୀସଇ ॥୩॥
ଆଇରହିଅ ଏହୁ ଅନ୍ତରହିଅ । ବରଗୁରୁ ପାଅ ଅଦ୍ଧଅ କହିଅ ॥ ୭ ॥

[ ବାଗଚୀ ]

## ବିଶେଷ ଅର୍ଥ :—

ସହଜ—ଚର୍ଯ୍ୟା ୨୯ ବ୍ୟାଖ୍ୟା ଦ୍ରଷ୍ଟବ୍ୟ ।
ଖସମ—ଚର୍ଯ୍ୟା ୨୫ ବ୍ୟାଖ୍ୟା ଦ୍ରଷ୍ଟବ୍ୟ ।
ସମରସ—ଦ୍ରଷ୍ଟବ୍ୟ ୧ମ ଭାଗ, ୮ମ ଅନୁଚ୍ଛେଦ ।

ହିନ୍ଦୁ ତଥା ବୌଦ୍ଧ ତାନ୍ତ୍ରିକ ଯୋଗସାଧନାରେ ସମରସର ପାରିଭାଷିକ ଅର୍ଥ ଏକ ଚରମ ଅନୁଭୂତି, ଯେତେବେଳେ କି ଯୁଗନଦ୍ଧ ରୂପ ଚେତନା ସ୍ତରରେ ସମୀଭୂତ ହୋଇଯାଏ । ତାନ୍ତ୍ରିକ ଗ୍ରନ୍ଥରେ ଏହି ଅନୁଭୂତିର ବ୍ୟାଖ୍ୟା ନିମ୍ନଲିଖିତ ଭାବେ ଉପଲବ୍ଧ ହୁଏ—

(୧) ସ୍ୱାନ ମଧ୍ୟୋତ୍କୃଷ୍ଟାନ୍ୟେବ ଅନ୍ୟାନି ସ୍ନାନି ତାନି ଚ
ସର୍ବେ ତାନି ସମାନୀତି ଦ୍ରଷ୍ଟବ୍ୟଂ ତତ୍ତ୍ୱ ଭାବତଃ
ସ୍ଥିରଚଳଂ ସ୍ନାନି ତାନୀତି ସର୍ବେ ତାନୀତି ନୈବାହମ
ସମାନି ତୁଲ୍ୟ ଚେଷ୍ଟାନି ସମରସୈସ୍ତତ୍ତ୍ୱ ଭାବନୈଃ ॥ (ହେବଜ୍ର ତନ୍ତ୍ର)

(୨) ଅଦ୍ୱୟାକାରଂ ସର୍ବନ୍ତୁ ଦ୍ୱୟଂ ଏତନ୍ନବିଦ୍ୟତେ
ସମଂ ସମରସାକାରଂ ଅଚିନ୍ତ୍ୟଜ୍ଞାନ ସମ୍ଭୂତମ୍ ।
(ଅଚିନ୍ତ୍ୟ ଦ୍ୱୟକ୍ରମୋପଦେଶ-କୁଦ୍ଦାଳ ପାଦ)

ତିଲୋପା ଓ କାହ୍ନୁପାଙ୍କ ଦୋହାରେ ଏବଂ ବୀଣାପାଙ୍କ ଚର୍ଯ୍ୟାଗୀତିକାରେ ସମରସର ଉଲ୍ଲେଖ ଏହିପରି ଭାବେ ଦେଖାଯାଏ—

(୧) ଜହି ଜାଇ ଚିତ୍ତ ତହି ସୁଣହୁ ଅଚିତ୍ତ
ସମରସେଁ ଣିମ୍ମଲ ଭାବାଭାବ ରହିତ ॥ (ତିଲୋପା)

(୨) ଜିମ ଲୋଣ ବିଲିଜ୍ଜଇ ପାଣିଏହି ତିମ ଧରଣି ଲଇ ଚିତ୍ତ ।
ସମରସ ଜାଇ ତକ୍ଖଣେ ଜଇ ପୁଣୁ ତେ ସମ ଣିତ୍ତ ॥ (କାହ୍ନୁପା)

(୩) ଜବ୍ବେଁ ମଣ ଅତ୍ଥମଣ ଜାଇ ତନୁ ତୁଟ୍ଟଇ ବନ୍ଧଣ ।
ତବ୍ବେଁ ସମରସ ସହଜେ ବଜ୍ଜଇ ଣହି ସୁଦ୍ଦ ଣ ବହ୍ମଣ ॥ (ସରହପା)

(୪) ଆଲିକାଲି ବେଣି ସାରି ସୁଣିଆ—ଗଅବର ସମରସ ସାନ୍ଧି ଗୁଣିଆ ॥(ବୀଣାପା)

## ୍ନ ୪୯ (ବଙ୍ଗାଲୀ-ଚର୍ଯ୍ୟା)

ରାଗ—ମଲ୍ଲାରୀ

**ମୂଳ—**

ବାଜ ଣାବ ପାଡ଼ୀ ପଉଁଆ ଖାଲେଁ ବାହୁଉ
ଅଦଅ ବଙ୍ଗାଳେ ଦେଶ ଲୁଡ଼ଉ ॥ ୧ ॥
ଆଜି ଭୁସୁ(କୁ) ବଙ୍ଗାଳୀ ଭଇଲୀ
ଣିଅ ଘରଣୀ ଚଣ୍ଡାଳୀ ଲେଲୀ ॥ ୨ ॥
ଡହୁଅ ପଞ୍ଚ ପାଟଣ ଇନ୍ଦି ବିସଆ ଣଠା
ଣ ଜାଣମି ଚିଅ ମୋର କହୁ ଗଇ ପଇଠା ॥ ୩ ॥
ସୋଣ ତ ରୁଅ ମୋର କିମ୍ପି ଣ ଥାକଉ
ଣିଅ ପରିବାରେ ମହାସୁହେ ଥାକଉ ॥ ୪ ॥
ଚଉକୋଡ଼ି ଭଣ୍ଡାର ମୋର ଲଇଆ ସେସ
ଜୀବନ୍ତେ ମଇଲେଁ ନାହୁ ବିଶେଷ ॥ ୫ ॥

**ପାଠାନ୍ତର :—**

୧. ଚ-ସ୍ୱଜ (ଉବଙ୍ଗ ଅନୁବାଦ ଅନୁସାରେ); ମୂଳରେ 'ଦଙ୍ଗାଳେ', ଟୀକାରେ 'ବଙ୍ଗାଳେ'—କ, ଚ-ବଙ୍ଗାଲେ, ଖ-ବଙ୍ଗାଲ ଘ, OBLT-ଦଙ୍ଗାଳେ; କ-କ୍ଲେଶ

୨. ମୂଳରେ 'ଚଣ୍ଡାଲୀ' ଟୀକାରେ 'ଚଣ୍ଡାଲେ'—ଘ, OBLT-ଚଣ୍ଡାଲେଁ, ଚ-ଚଣ୍ଡାଲୀ ।

୩. କ-ଡହୁ ଜୋ, ଙ-ଦହୁଅ; କ-ଧାଟଣ, ଙ-ପାଟଣ

୪. କ-ସୋଣ ତରୁଅ, ଘ, OBLT-ସୋଣ ରୁଅ ଖ-ସୋଣ ଅରୁଅ; ଘ-ମହାକେନ୍ଦେ; ଘ, ଚ-ଟୀକା ଅନୁସାରେ (ନିମଚଗ୍ନାହଂ) 'ରୁଞ୍ଜଉ' ପାଠ ଗ୍ରହଣୀୟ ।

## ଆଧୁନିକ ରୂପାନ୍ତର :—

ବାଜ ନାବ ପାଡ଼ି ପଉଁଆ ଖାଲେ ବାହୁଁ
ଅଦ୍ୱୟ ବଙ୍ଗାଲେ ଦେଶ ଲେଉଁ
ଆଜ ଭୁସୁକୁ ବଙ୍ଗାଳୀ ହୋଇଲି
ନିଜ ଘରଣୀ ଚଣ୍ଡାଳୀ ନେଲି ।
ଦହିଣ ପଞ୍ଚପାଟଣା ଇନ୍ଦ୍ରିୟ ବିଷୟ ନଷ୍ଟ,
ନ ଜାଣଇ ଚିତ୍ତ ମୋର କାହିଁ ଯାଇ ପ୍ରବିଷ୍ଟ ।
ସୁନା ତ ରୂପା ମୋର କିଛୁ ନ ଆଉ
ନିଜ ପରିବାରେ ମହାସୁଖେ ରହୁ ।
ଚଉକୋଡ଼ି ଭଣ୍ଡାର ମୋର ନେଇଣ ଶେଷ
ଜୀବନ୍ତେ ମରଣେ ନାହିଁ ବିଶେଷ ।

## ବାହ୍ୟ ଅର୍ଥ :—

ପଦ୍ମା ନଦୀରେ ବଜ୍ର ନୌକା ପକାଇ ବାହିବାହିଯାଇ ନିର୍ଦ୍ଦୟ ବଙ୍ଗଦେଶରେ ସନ୍ଧାନ କରୁ କରୁ ଗୋଟିଏ ଚଣ୍ଡାଳୁଣୀକୁ ଘରଣୀ ରୂପେ ଗ୍ରହଣ କରି ଭୁସୁକୁ ଆଜ ବଙ୍ଗାଳୀ ହେଲ । ଏହା ଫଳରେ ପାଞ୍ଚପାଟଣା (ବାଣିଜ୍ୟ ପେଣ୍ଠ) ଦଗ୍ଧ ହୋଇ ଇନ୍ଦ୍ର ସମ୍ପତ୍ତି ନଷ୍ଟ ହେଲା । ଜଣା ପଡ଼ିଲା ନାହିଁ ମନ ଯାଇ କେମିତ, କେଉଁଠି ଲଖିଗଲା ! ଯାହାର, ସୁନାରୂପା କି ଧନ ସମ୍ପତ୍ତି କିଛୁ ନ ଆଉ ପଛେ ନିଜ ପରିବାରରେ ଟିକେ ସୁଖରେ ରହିବାକୁ ମିଳୁ । ଚାରିକୋଟି ଭଣ୍ଡାର ତ ନିଃଶେଷ ହୋଇଛୁ, ଏବେ ଜୀଇଲେ କେତେ, ମଲେ କେତେ ?

## ଗୁହ୍ୟ ଅର୍ଥ :—

ବୋଧିଚିତ୍ତ ରୂପକ ନୌକା ପ୍ରଜ୍ଞାରୂପକ ପଦ୍ମାନଦୀରେ ଅଦ୍ୱୟତତ୍ତ୍ୱଜ୍ଞାନ ଉପଲବ୍ଧି ଉଦ୍ଦେଶ୍ୟରେ ବାହିନେବା ଫଳରେ ନିର୍ମାଣ କାୟାରେ ଚଣ୍ଡାଳୀ ଶକ୍ତି ସହିତ ସାଧକର ସମ୍ବନ୍ଧ ସ୍ଥାପିତ ହେଲା ଏବଂ ସେ ଅଦ୍ୱୈତ ଜ୍ଞାନାରୂଢ଼ ହେଲ । ରୂପ ବେଦନାଦି ପ୍ରତ୍ୟବ-ମୁକ୍ତ ଚିତ୍ତ ଅଚିତ୍ତଭାବରେ ଲୀନ ହୋଇଯାଇଛୁ । ଜାଗତିକ ରୂପାଦି ବିଷୟ ନିରପେକ୍ଷଭାବେ ସାଧକ ନିଜ କାୟାରେ ଅନ୍ତର୍ଲୀନ ରହି ମହାସୁଖ ଉପଭୋଗ କରୁଛୁ । ଏପରି ଅଦ୍ୱୟ ଶୂନ୍ୟତା ଜ୍ଞାନଯୋଗୁ ତା ନିକଟରେ ଅସ୍ତିତ୍ୱ-ନାସ୍ତିତ୍ୱ, ଜୀବନ-ମୃତ୍ୟୁ ସକଳ ସମାନ ପ୍ରତୀତ ହେଉଛୁ ।

## ବିଶେଷ ବ୍ୟାଖ୍ୟା :—

ବାଜ (ବଜ୍ର) ପଉଁଆ (ପଦ୍ମ)—ଚିତ୍ତ ଓ ପ୍ରଜ୍ଞା, ଜ୍ଞାନସିଦ୍ଧି ଅନୁସାରେ ସ୍ତ୍ରୀନ୍ଦ୍ରିୟଂ ଯଥା ପଦ୍ମଂ ବଜ୍ର ପୁଂସେନ୍ଦ୍ରିୟଂ ତଥା' (ଶଶୀଭୂଷଣଙ୍କ ବ୍ୟାଖ୍ୟା-ବଜ୍ରଯାନ ରୂପ ନୌକା)

ତୁ : ଉଅଡ଼ା ଷୁପି ଜୋଇନ୍ତୁ ଲେ ଅଙ୍କବାଲୀ,
କମଲ କୁଲିଶ ଘାଣ୍ଟି କରହୁଁ ବିଆଲୀ ।। (ଗୁଣ୍ଡରୀପା-ଚର୍ଯ୍ୟା୪)

**ବଙ୍ଗାଳ**—ଅଦ୍ୱୟ ତତ୍ତ୍ୱ (ଦ୍ର : ଚର୍ଯ୍ୟା-୧୦, ଡୋମ୍ବୀ ପ୍ରକରଣ), ବଜ୍ର-ପଦ୍ମ ସଂଯୋଗରେ ଜାତ ଅଦ୍ୱୈତ ଜ୍ଞାନ । (ତୁ: ବଙ୍ଗେ ଜାୟା ନିଲେସି ପରେ ଭାଗେଲ ତୋହର ବିଣାଣା, ସରହ ଚର୍ଯ୍ୟା-୩୯)

**ଘରଣୀ** (ଗୃହିଣୀ,—'ଅପରିଶୁଦ୍ଧାବଧୂତୀ ବାୟୁରୂପା' (ମୁନିଦତ୍ତ)

**ଚଣ୍ଡାଳୀ**—'ପ୍ରକୃତ ପ୍ରଭାସ୍ୱର ରୂପିଣୀ' (ମୁନିଦତ୍ତ) । ନିର୍ମାଣ କାୟାର ଅଧିଷ୍ଠାତ୍ରୀ ଶକ୍ତି । ହୃଦ୍‌ ତନ୍ତ୍ରର ମୂଳ କୁଣ୍ଡଳିନୀ ଶକ୍ତି ସହିତ ତୁଳନୀୟ । ସାଧକ ଯୋଗ ସାଧନ ଦ୍ୱାରା ଏହାକୁ ଊର୍ଦ୍ଧ୍ୱମୁଖରେ ଜାଗ୍ରତ କରି ମହାସୁଖ ଲାଭ କରେ । ଭିନ୍ନ ଭିନ୍ନ କାୟାରେ ଚଣ୍ଡାଳୀ ଡୋମ୍ବୀ, ନୈରାମ୍ଣା, ସହଜ ସୁନ୍ଦରୀର ରୂପ ପରିଗ୍ରହ କରନ୍ତି । କୃଷ୍ଣାଚାର୍ଯ୍ୟପାଦ ଗୋଟିଏ ଚର୍ଯ୍ୟା-ଗୀତିକାରେ (ନଂ ୭) ଏହାର ବିଶଦ ଉଲ୍ଲେଖ କରିଛନ୍ତି—"କମଲ କୁଲିଶ-ମାଝେ..." ଇତ୍ୟାଦି, ଅର୍ଥାତ୍‌ ବଜ୍ର ଓ ପଦ୍ମ ମଧ୍ୟସ୍ଥଳରେ ମିଳିତ ହୁଅନ୍ତେ ସେହି ସଙ୍ଗମ ଯୋଗୁଁ ଚଣ୍ଡାଳୀ ପ୍ରଜ୍ୱଳିତ ହେଲା । ସେହି ଅଗ୍ନି ଡୋମ୍ବୀ ଘର ଦହନ କଲା । ମୁଁ ଚନ୍ଦ୍ରରୁ ଜଳ ଆଣି ସିଞ୍ଚନ କଲି. ଏହି ଅଗ୍ନିର ଧାସ କ ଧୂଆଁ ଦିଶେ ନାହିଁ । ଏହା ମେରୁ ଶିଖରଯାଏ ମାଡ଼ିଯାଇ ଆକାଶରେ ପ୍ରବେଶ କରେ । ହେବଜ୍ର ତନ୍ତ୍ର ଅନୁସାରେ—

ଚଣ୍ଡାଳୀ ଜ୍ୱଳିତା ନାଭୌ ଦହତି ପଞ୍ଚ ତଥାଗତାନ ।
ଦହତି ଚ ଲୋଚନାଦୀନ ଦଗ୍‌ଧେ ହୁଂ ସ୍ରବତେ ଶଶୀ ॥

**ପଞ୍ଚପାଟଣ**—ପଞ୍ଚସ୍କନ୍ଧାଶ୍ରିତାହଂକାର ମମକାରାଦିକଂ (ମୁନିଦତ୍ତ) (ଦ୍ର : ଚର୍ଯ୍ୟା-୧, ପଞ୍ଚସ୍କନ୍ଧ ପ୍ରକରଣ)

**ସୋଣ** (ସ୍ୱର୍ଣ୍ଣ)—ଶୂନ୍ୟତା ରତ୍ନ ।

**ରୁଅ** (ରୂପା)—ଭାବରତ୍ନ

**ପରିବାର**—ନିର୍ବିକଳ୍ପ ପରିହାର

**ଚଉକୋଡ଼ି** (ଚତୁଷ୍କୋଟି)—ସତ୍‌. ଅସତ, ସଦସତ, ନସତ ନଅସତ କମ୍ବା ଅସ୍ତି ନାସ୍ତି ତଦ ଉଭୟାନୁଭୟ ।

**ବ୍ୟାଖ୍ୟାନ୍ତର :—**

ଗୀତିକାଟିର ନିମ୍ନୋକ୍ତ ଶବ୍ଦ ଓ ବାକ୍ୟାଂଶରେ ପାଠ ଓ ବ୍ୟାଖ୍ୟାରେ ଭିନ୍ନତା ଦେଖାଯାଏ ।

ଅଦଅ—ଅଦ୍ୱୟ (ସାଧାରଣତଃ ଗୃହୀତ), ନିର୍ଦ୍ଦୟ (ସେନ)

ବଙ୍ଗାଲେ—ଯୋଗୀ ସମ୍ପ୍ରଦାୟ ବିଶେଷ, ଦସ୍ୟୁ (ସେନ) ଅର୍ଥ—ନିର୍ଦ୍ଦୟ ବଙ୍ଗାଳିଆ ଦେଶ ଲୁଟ କଲା ।

କ୍ଲେଶ—ଶାସ୍ତ୍ରୀ ଗୃହୀତ ପାଠ । ଅର୍ଥ—କ୍ଲେଶ ଲୁଟିଲ ।

ଲୁଡ଼ିଉ—ଲୁଟିବା (ସେନ)

ଚଣ୍ଡାଲେ ଲେଲ୍—ନିଜ ସ୍ତ୍ରୀ ଚଣ୍ଡାଳଦ୍ୱାରା ଅପହୃତ ହେଲା (ମୁଖାର୍ଜୀ)

ସଂକେତ : [ଶା-ହରପ୍ରସାଦ ଶାସ୍ତ୍ରୀ; ଶ-ଶ୍ରେଷ୍ଠଦୁଲ୍ଲାହ୍; ସେ ସୁକୁମାର ସେନ,
ମୃ-ଭାଗପଦ ମୁଖାର୍ଜୀ,
ବ-ମଣୀନ୍ଦ୍ର ମୋହନ ବସୁ, ପ୍ର-ଗୋପାଳଚନ୍ଦ୍ର ପ୍ରହରାଜ, ଭାଷାକୋଷ ।
ସଂ— ସଂସ୍କୃତ, ପ୍ରା-ପ୍ରାକୃତ, ଓ-ଓଡ଼ିଆ, ଦ୍ର-ଦ୍ରଷ୍ଟବ୍ୟ, ତୁ-ତୁଳନୀୟ]

ଅଇସ-<ଇଦୃଶ । ସେ—<ଅବାଦୃଶ । (such) ପ୍ର-ଏସନ, ଏସା

ଅକଟ—ବିସ୍ମୟକର (ଦ୍ର: ଶାସ୍ତ୍ରୀ-ଦୋହାକୋଷ, ପୃ୧୧୦: ଅକ୍‌କଟ ଇତ୍ୟାଶ୍ଚର୍ଯ୍ୟଂ;) ଓ-ଆକଟ

ଅକଲେସେଁ—ଅକ୍ଳେଶ+ଏନ>ଏଁ, ଅକ୍ଳେଶରେ (without defficulty).

ଅଛନ୍ତେ—ବ <ଅର୍‌ଛ+ଅନ୍ତ (ଘଟମାଣ ବିଶେଷଣ)+ଏଁ (୭ମୀ) । ବିଦ୍ୟମାନ (being).

ଅଛମ୍—ଅଛୁ+୧ମ ପୁରୁଷ ନିର୍ଦ୍ଦେଶକ—ମ (I am)

ଅଛହୁଁ—ଅଛୁ+୧ମ ପୁରୁଷ ବହୁବଚନାତ୍ମକ ପ୍ରତ୍ୟୟ-ହୁଁ

ଅଠକମାରୀ—ଶା—ଅଷ୍ଟଙ୍କ ହୃତଃ । ସେ—ଆଠ କାମର ଯୁକ୍ତ ନୌକାର ନାମ ।
ମୃ-ନେପାଳୀରେ କମାରୀ ଅର୍ଥ-Female slave. ଅଷ୍ଟକୁମାରୀ ।

ଅଦସ୍ତ—ଅଦ୍ରସ୍ଥ ବା ନିର୍ଦ୍ଧସ୍ତ

ଅନହା—<ଅନାହୃତ ।

ଅନୁଦିନ—(day after day) ସଂ ।

ଅନ୍ତରେ—ବ-୪ର୍ଥୀ ବିଭକ୍ତି ବାଚକ । (for the sake) ନିମିତ୍ତେ ।

ଅପ୍‌ପା, ଅପା—(<ଆତ୍ମା) ଓ-ଆପେ

ଅବଣାଗବଣେ—ବ—ଅବ (ଗମନାର୍ଥକ)+ଅନଟ୍=ଅବଣ+ଆଗମନ (ଆଗବଣ) ।
ସେ—ଆଗମନଗମନ ଯିବାଆସିବା ।

ଅବର—ସେ—<ଅପର । (also) ପ୍ର—ଆବର ।

ଅବଶ—(inert) ହାଲିଆ କରିବା ।

ଅବସର—ଅପସର

ଅବିଦାରଅ—ଅବିଦ୍ୟାରତ

ଅମଣେଧାଣ—ଅମଳ ଧାନ, ତୁ: ବଙ୍ଗଳା-ଆମନଧାନ;) ଅମନ ଧାନ

ଅହ୍ଣିସି—ଅହର୍ନିଶି ।

ଅହାରୀ—ଅହାରିତମ୍ (ଆହାରିତମ୍) ଆହାରଣ କରି ବା ଆହାର କରି ।

ଆହାରିଉ—ସେ—ଅହାହ୍ରିତଃ, √ହର । ଆହାର କରିବା (ଆହାରିତ) ।

ଅହେରୀ—(<ଆଖେଟିକ) ଶିକାରୀ

ଆଇ—ଆଦି

ଆଇଦସି—ଅ.ସି-ଅ.ଇଦ+୨ୟ ପୁରୁଷ ନିର୍ଦ୍ଦେଶକ—ସି । ତୁମେ ଅ.ସୁଛ । (ସେ-ଅ.[illegible]ସି)

ଅକାଶ ପୂନ୍ଥା—(ବ-ଅକାଶ କୁସୁମ ସଦୃଶ) ଅକାଶ ଫଳମୁକ୍ତ ହେବା ।
ଅଟଳି—ହେ— ଅଗ୍ରାହ୍ଣକା (prominent) ଶ୍ରେଷ୍ଠ ସ୍ତ୍ରୀ । ପ୍ର—ଆଗଳ ଅଗୁଆଳ ।
ଆଚ୍ଚରେ—ଶାସ୍ତ୍ରାନୁମୋଦିତ ଅଚରଣ, ପଦ୍ଧତି ।
ଅଣୁତ୍ତ—ଅନୁତ୍ତର (Supreme)
ଆବଇ—ବ-ଆଗମନାର୍ଥକ ଆବ+ତି>ଇ । ସେ-ଆୟାତି (he comes) ଆସଇ ।
ଅଲଜାଲ—ପ୍ର:ଅଲଜାଲୁଆ, ଅଲୁବାଲ୍ ଇତ୍ୟାଦି (trifles fush)
ଅଲଏଁ =ଅଲ+ଏନ; ଅଲଦ୍ବାଗ
ଅଲେ—ଥଳ°+ଏନ>ଏ । (in vain) ଅକାରଣରେ ।
ଆସ—ଆଶା
ଆସବମାତା—ଆସବ ମତ୍ତ । ମଦ୍ୟପାନ ମତ୍ତ ।
ଆହ୍ବାଗ—ସଂଗ୍ରହ; ଭକ୍ଷଣ
ଇନ୍ଦ—ଇନ୍ଦ୍ର ।
ଇଷ୍ଟାମାଳା—ଜପମାଳା [କଣ୍ଠମାଳ—ଥାଟ (show, humbug) ମାଳା ] ।
ଉଆର—ସେ-ଉପକାରକ । କଟେଗ୍ରି'ସଦର ମହଲ (cent, Place, a pavilion);
ଶ—ଉପକାରକା : ଉଅ+ଆରଥା (ପାଲ) ନଈ ଭିତରେ ପଡ଼ିଥିବା ଚଡ଼ା; ବା' ପଠା ମୂ—teacher; । ପ୍ର=ଉଷର । (ଲକ୍ଷ ଉଷର ବେଢେଧାଇଁ—ଗୁରୁବଂଶ; ସେଷେ ଉଠି ବେନ କୁମ୍ଭ ଅଚ୍ଛୁ କ ଉଷର—ଉଷାଭିଳାଷ ) ।
ଉଆସ—ଉଦାସ (ମୂ—unattached) ଶ—indifferent.
ଉଇଜଅ—ସେ—ଉଦ୍ଭପଦ୍ୟତେ; ବ—ଉବ୍‌ବଜ୍‌ଜଇ>ଉଚଜଇ>ଉଇଜଅ ।
ପ୍ର—ଉକେଇବା (ଉପରକୁ ଉଠିବା) । ଉଦ୍‌ଭିଧାଅ ।
ଉଏଲ—ସେ—ଉଦତ+ଇଲ । ଉଇଁଲ ।
ଉଏସଇ—ଉପଦେଶସୂଚ ।
ଉଏସେଁ—ବ—ଉପଦେଶେ । ଶ—ଉଦ୍ଦେଶେ (in the direction of) ଉଁଏସେ (ଉଦସ୍ଥ ହୁଏ ସେ) ।
ଉଚ୍ଛଳିଲ—ଉଚ୍ଛଳିତ ହେଲ ।
ଉଜାଅ—(<ଉଦଯାତ) ଉଜାଣି ଯିବା. ଓ—ଭସାଇଦେବା
ଉଜ୍—ଋଜୁ
ଉପାଡ଼ୀ—ଉତ୍ପାଡ଼ିତ । (ସୁପାଡ଼ି—ସେ ସୁଘଟିତ, ମୂ—well done)
ବ—ଉତ୍ପାଟ୍ୟ ।
ଉମତ—ଉନ୍ମତ୍ତ ।
ଉଲ୍ଲୋଳ—ତରଙ୍ଗ ବକ୍ଷୋଭ

ଉହ୍ୟ—ବ—ଉଦ୍ଦେଶ; ସେ—<ଉହ୍ୟତେ, (is guessed); ଶ—ଫ—ଉହ୍ୱେ, Perceive. ପ୍ର—ତର୍କଣାକରିବା, ବିତର୍କ, ଅନୁମାନ ।
ଶାବଦତ୍ତ ଅନୁବାଦ ଅନୁସାରେ—ଉହ୍ୟଲଗେ ଣ=ଆକାରଂ ନ ପ୍ରାପ୍ୟତେ । ଏହା ଦୂର ନିର୍ଦ୍ଦେଶକ ସର୍ବମାନ ରୂପେ ଗ୍ରହଣୀୟ ହୋଇପାରେ । ତୁ: ଉଧର, ବହ୍ (ହିନ୍ଦୀ) ।

ଏହ୍—ବ—ଏତଦ୍ ଶବ୍ଦଜାତ । ପ୍ର—ଏଉଠା, ଏଉଠି ।

ଏକାକାରେଁ—ପ୍ର—ଏକାକାର (in the same form) ଶା—ଏକାକ୍ଷର ।

ଏକେଲ୍—ପ୍ର—ଏକଲ, ଏକଲା ।

ଏଡ୍ଡ—ପ୍ର. ଏଡ୍ଡବା ।

ଏଥୁ—ପ୍ର. ଏଥୁ, ଏତ୍ଥୁ, ଏତ୍ଥୁ ।

ଏବଂକାର—ଏ-ବ ବିଷୟ । (ପାରିଭାଷିକ)

କଇସନ—କଦ୍ରୁଶନ, ସେ—କଢ଼ି>କଇ ପ୍ର—କେସନ (what sort, fem.) ।

କଇସା—କଦ୍ରୁଶ । କେସା; କେଇସା ।

କଇସେଁ—କଦ୍ରୁଶେନ । କେଶନେ (how) ।

କଏଲ୍—କୃତ+ଇଲ୍ଲ । କଲ, କରିଲା ।

କଂଖା—କାଂକ୍ଷା, ଆକାଂକ୍ଷା

କଙ୍ଗୁଚନା—(କଙ୍ଗୁଣ୍ଣ=କମ୍ବୁଣ୍ଣ, ଶା—କାକୁଡ଼ୀ) ପ୍ର—କଙ୍ଗ, କଙ୍ଗୁଣୀ (ସୁଆଁ, ଚୀନା, କଡ଼ମା, କୋଦୁଆ ଇତ୍ୟାଦି । ଶ୍ୱେତ, ପୀତ, କୃଷ୍ଣ ଓ ରକ୍ତ ଚାରିବର୍ଣ୍ଣର ଦେଖାଯାଏ) । Panicum Italicum.

କଚ୍ଚ—ଖଚିତ, ଖବନ୍ଧ ।

କଣ୍ଣହାର—କର୍ଣ୍ଣଧାର । (କାଣ୍ଡାରୀ) ।

କପାସୁ—କାର୍ପାସ । (ତୁ: କପାସିଆ ଛମାସିଆ) ।

କବାଲୀ—କପାଲୀ ।

କରଣ—କରିବା ।

କରଣକ—କରଣ+କ (ଇନ୍ଦ୍ରସ୍ୱର) ।

କରଣ୍ଡକସାଲ—ବ—ବୃକ୍ଷରକ୍ତୁ କରଣ୍ଡକେନ ଶାଖାତଳେ ଶୋଭତେ ଇତି । ସେ—କରଣ୍ଡ—ଢୋଲ ? ତୁ. ପ୍ରା—କରଣ୍ଡ, କଂଯାଳ—କାଂସ୍ୟତାଳ । ପ୍ର—କରଣ୍ଡ—ପେଟରା, ଖଣ୍ଡ, ପାଜ, କଂସାଳ—କଂସା ଛଆର ଝାଞ୍ଜ, ବୁଢ଼ିକ, କରତାଳ ।

କରଅ—ବ କୃତ୍ୱା । କରିଣ ।

କରଅଇ—ସେ-କରୟତେ, ବ—କ୍ରିୟତେ ।

କରୁଆ—କୃତ୍ୱା ।
କରେଣ୍ଡା—କରେଣୁ ଶବ୍ଦ ଏକବଚନେ (bull elephant) ।
କର୍ବେ—କର୍ତ୍ତବ୍ୟ, ପ୍ରା—କରବ୍ବ ।
କଳଅଁ—କଳ, କଳନା କର ।
କହିଁଗଇ—ଗଇ<ଗତଃ । ବ—କମ୍+ଅଧ୍ୟଂ-ଧ୍ୟଂ । କାହିଁ ଯାଇ
କାଅ—କସ୍ମା ।
କାଅର—କାତର ।
କାଜ—କାର୍ଯ୍ୟ । କାଜ (ସମ୍ବଲପୁରୀ) ।
କାନ୍ଧ—ସ୍କନ୍ଧ ।
କାମଚଣ୍ଡାଲୀ—ପ୍ର. କାମଚଣ୍ଡୀ, କାମଚେଷ୍ଟା ଜର୍ଜରିତା ସ୍ତ୍ରୀ, କାମରୂପର ଠାକୁରାଣୀ ।
କାଳଏ—କାଳ+ଏକ । କାଳଦ୍ୱାର ।
କାହ୍ନ—ସେ-କସ୍ୟ, ବ—କମ୍>କା+ହ୍ନ ବର୍ଣିଷ୍ଠାର୍ଥେ । ପ୍ର—କାହିଁ=କପରି ।
କାହ୍ନାରେ—କାହ୍ନେରେ । କସ୍ୟ>କାହ୍ନ+୨ସ୍ଥା-ଏ (ରେ) ।
କଅ—କୃତ, ବ—କୃତ୍ୱା (made) ।
କଉ—ସେ-କୃତକଃ, ବ-କୃତମ୍ ।
କର୍ମି—କମ୍+ଅପି । କମ୍ପା, କପାଇଁ ।
କୁଣ୍ଡବା—କୁଟୁମ୍ବ (ତୁଃ ହେମଚନ୍ଦ୍ର—କୁଟୁମ୍ବ, ପୁଜରାଟୀ—କୁଣବ ଓ—କୁଣିଆ ବା କୁଣୁଆ)
ଶା—ସମ୍ବଳ, କର—କୁଣ୍ଡ ।
କୁଳଣ ଜଣ—କୁଳିନ ଜନ (men of class) ।
କେଡ଼ୁଆଳ—ବ-କୃପୀଟପାଳ । (oar) ପ୍ର—କେରୁଆଲ-ଆହୁଲ, ସାନ ଯାପୁଆ ଡଙ୍ଗାରେ
କେରୁଆଲ ଆହୁଲ ଓ ମଙ୍ଗଧର ଦୁଇ କାମ କରେ ।
କୋହ୍ନୋ—କଃ+ଅପି । କେହୁ ।
କୋ—କଃ ।
କୋଇକୋଏ—କୋଽପି, କୋବ । କେହ୍ନ ।
ଖଣଅ—(<ଖଣ୍ଡ) ଖୋଳର ।
ଖଣହ୍ନ—କ୍ଷଣ+ହିଁ । ସେ-କ୍ଷଣସ୍ୟ ।
ଖସମ—ଖ ସମଂ । ଖ ପଦ । [same as sky] ଶୂନ୍ୟତା ।
ଖଟ୍ଟେ—ଖଟ, ପର୍ଯ୍ୟଙ୍କ ବନ୍ଧ (a yogic seat) ।
ଖାଣ୍ଡି—ବଣ୍ଟଳ, ସେ-ଖଣ୍ଡି ।
ଖାଣ୍ଟ—ଖଣ୍ଟ, ଦସ୍ୟୁ ।
ଖେଳନ୍ତୁ—ବ-ଖେଳ+ଅନ୍ତଂ>ନ୍ତୁ । ଖେଳନ୍ତୁ—ଖେଳନ୍ତୁ, ଖେଳନ୍ତାର ।

ଗଅଣ—ଗଗନ ।
ଗଅଣତ—ବ-ଗଗନ+ଅନ୍ତଜାତ—ତ ।
ଗଅବରେ—ଗଜବର ଦ୍ୱାରା ।
ଗଇ—ଗତ୍ୱା>ଗଇଅ । ଯାଇ ।
ଗରୁଆ—ସେ—ଗରୁକ, ବ—ଗୁରୁ+କ (heavy)
ଗାଢ—ସେ-ଗାଧିତ (sung) ବ—ଗୀସ୍ତତେ ।
ଗିବତ--ଗ୍ରୀବା+ଅନ୍ତଜାତ ଭ । ଗ୍ରୀବାରେ ।
ଗୁଞ୍ଜରା—ଗୁଞ୍ଜର୍, ଗୁଞ୍ଜ—ସ୍ତ୍ରୀ ।
ଗୁଣିଆ—ବ-ଅସମାପିକା କ୍ରିୟାର୍ ପ୍ରତ୍ୟୟ, (ମୁ—I take after calculating) ।
ଗୁଣେ—ରସି ବା ଦଉଡ଼ି ଦ୍ୱାରା ।
ଗୁଲ—ବ-ପ୍ରା. ଘୋଲ<ଘୂର୍ଣ୍ଣ—ଘଲ । ଗୋଳ, ଗୋଳଆ, ଗୋଳମାଳ । (noise) ।
ଗୁହାଡ଼ା—ଗୁହାର [request] ବ—ଗୋରୁ ଉପଦ୍ରବ ଦେଇ ଆବେଦନ କରିବା ପଦ୍ଧତିରୁ ଗୋହାର, ଗୁହାର ।
ଗେଲ—ଗତ+ଇଲ୍ଲ । ଗଲ ।
ଗୋଅର—ଗୋଚର ।
ଘାଲଉ—ସେ-ଘାତ+ଲ (ଦୂର କରା ହେଲା) ବ—ଘଞ୍ଚରୁ ହତ୍ୟା ବା ପ୍ରବୃଧ ଅର୍ଥେ । ମୁ—Overpower. ପ୍ର—ଘାଲି, ଘାଲିଆ । ଭୂ: ଘାଏଲ୍ (ଓଡ଼ିଆ ଅନୁବାଦରେ—ପଞ୍ଚଜନଂ କାଡ଼ସ୍ତ) ।
ଘଣ୍ଡ—(ସେ<ଧୂଣ୍ଡକ) ପର୍ଯ୍ୟଟକ । ଶା-ଲୁକାଇଥିବା, ବାଗ୍‌ଚୀ, କର-ଘୁଣ୍ଟି । ଓ-ଧୂଣ୍ଡିବା, ଧନ୍ଦିବା ।
ଘେଣିଳ-ଗୃନ୍ଥିତ । ବ—ଗ୍ରହ>ଟେଣ୍ଢ+ଇଅ ।
ଘୋଳଅ—ଘୂର୍ଣ୍ଣିତ, ମୁ—stir, ଶ—ଘୋଳେଇ, ବରଚୁଚ (to wander) । ଘୋଳିବା (mixing up) । (ଘୋରଅ-ଘୂରିବା' revolve) ।
ଚଉକୋଡ଼—ଚତୁଷ୍କୋଟି, ଖ୍ୱରଗୁଣ ।
ଚରଅ, ଚ୍ୱଣ—ଚ୍ୱରଣା, ଭ୍ରମଣ । ଓ-ଚରିବା, ପଶୁମାନଙ୍କର ଖାଦ୍ୟ ଅନ୍ୱେଷଣ ଓ ଭୋଜନ ।

ଚଞ୍ଚାଲୀ—ଶ A bamboo lath, a fence of bamboo. (ଛା. ସା. ପତ୍ରିକା—ମୂଳ: ଚୌଡ଼ୁଳୀ=ମଡ଼ାର ଖଟ) ଚ୍ୱଞ୍ଚରା, ଚ୍ୱଞ୍ଚଡ଼ା ।
ଚ୍ୱଙ୍ଗେଡ଼ା—ଚ୍ୱଙ୍ଗୁଡ଼ା ।
ଚ୍ୱରବାସେଁ—କ-ଚତୁର୍ଥ ଅବାସ, ସେ—ଚହ୍ୱାରବଂଶେନ (with four bamboos)
ଚ୍ୱହଇ—ସେ-ଚକ୍ଷତେ; ବ ଚକ୍ଷ>ଚ୍ୱହ+ଇ । ଚ୍ୱହିବା ।

ଚଅ—ଚତୁ ।
ଚଏ—ଚତ୍ୱେ ।
ଚେଅନ—ଚେତନ (Consciousness) ।
ଚେବଇ—ଚେତୟତି । ମୂ-feel, ସେ-Perceive.
ଛଛନ୍ଦ—ସ୍ୱଚ୍ଛନ୍ଦ ।
ଛଡ଼ଗଇ—ଷଟ୍‌ଗତିଃ ।
ଛନ୍ତେ—ଅଛନ୍ତେ ।
ଛଇଲ୍ଲ—ବିଚ୍ଛଇଲ୍ଲ । ଛଦ+ଇଲ୍ଲ+ଇ ।
ଛନ୍ଦକ—ସେ-ties and nooses, Yogic process,
ମୂ—Rythm. ବ-ଛନ୍ଦ+କ (ଷଷ୍ଠୀ),
ଶ-trick (ଛନ୍ଦବାନ୍ଧ) । ଛନ୍ଦମନ୍ଦ ।
ଛାର—କ୍ଷାର । ଖାର । (ଛାରଖାର) ।
ଛିଜଅ—ଛେଦ କର ।
ଛିନାଳୀ—ମୂ—a lewd woman. ବ-ଛିନ୍ନ+ନାଳ । ସେ harlot. ଅବହଟ୍‌ଠ—ଛିଣ୍‌ଣାଳିଆ । ପ୍ର—ଛିନ୍ନାଳୀ, ଛିଣ୍ଡାଳୀ ବ୍ୟଭିଚାରିଣୀ ସ୍ତ୍ରୀ ।
ଛୁଧ—ସେ କ୍ଷୁବ୍‌ଧ (impure), ବ-ଶୁଦ୍ଧ, ଶ-କ୍ଷୁବ୍‌ଧ>ଛୁଦ୍‌ଧ (ଅପରିଶୁଦ୍ଧ) । ପ୍ର-ଛୁଦ୍ଧ ।
ଛୁପଇ—(<କ୍ଷୁଭ୍ୟତି, ସ୍ପୃଶ୍ୟତି) ଛୁଇଁବା ।
ଛେବଇ—ଛେଦୟତି । ଛେଦିବା ।
ଛେବନ୍ତୁ—ସେ-ଛେଦୟତୁ (ଅନୁଜ୍ଞା) ଛେଦକର ।
ଛୋଇଅ—ସେ-କ୍ଷୁଭିତ (touched) ତ-ସ୍ପୃଶ୍ୟ>ଛୋଇଅ>ଛୋଇଅ । ଛୁଇଁବା ।
ଜଅଜଅ—ଜୟ ଜୟ ।
ଜଇସା—ଯାଦୃଶ ।
ଜଇସେଁ—ଯାଦୃଶ ।
ଜହୁ—ଯସ୍ମିନ୍>ଜହ୍‌ମି>ଜହ୍‌ମ୍ପି>ଜହୁ । ଯାହାରେ ।
ଯାଅ—ଯାତ । ଯାଏ ।
ଜାଇ—ଯାତି, ଯାସ୍ୟତି, ଯାଇ ।
ଜାଗନ୍ତ—ଜାଗ+ଅନ୍ତ (ବର୍ତ୍ତମାନ ବିଶେଷଣ) ।
ଜାମ—ଜନ୍ମ ।
ଜାସି—ଯାସି, ତୁମେ ଯାଅ ।
ଜାହୁ—ଯା+ହୁ (ଅନୁଜ୍ଞା) ଯାସି । ତୁମେ ଯାଅ ।
ଜାହେର—ଯସ୍ୟ+ଏର । ଯାହାର ।

ଜଣରଅଣ—ଜନରତ୍ନ ।
ଜତା—ଜତ ।
ଜତେଲ—ଜତ+ଇଲ୍ଲ । ଜଡ଼ଳ ।
ଜନହର—ଜନପୁର ।
ଜମଜମ—ପ୍ରା-ଜେବ୍‌ବ>ଜେବ୍‌ବ>ଜେମ୍ମ । ଯେମିତ ଯେମିତ ।
ଜମକର—ଯେମିତକର ।
ଜେତଇ—ଯେତେହିଁ ।
ଜୋ—ଯଃ । ଯତ୍ । ଯେ ।
ଜୋଇ—ଯୋଗୀ ।
ଜୋଇଣି—ଯୋଗିନୀ ।
ଜୋହ୍ନା—ଜୋତ୍ସ୍ନା । ଗ୍ର—ଜହ୍ନା·
ବାଜରା, ମକ୍‌କା ଇତ୍ୟାଦ ।
ଝାଣେ—ଝାନେ ।
ଝଳଆ—ଢ଼ଳବା, ଗଡ଼ବା
ଝାଲହ—ଦ-ଝଲ୍ (ବଚଳନ)+ଇହ (ଅନୁଜ୍ଞା) ।
ସେ—spilled, ମୂ—wrong । ଝାଳବା ।
ଠାକୁରକ—ପ୍ରା-ଠକ୍‌କୁର+କ (୬ଷ୍ଠୀ) । King in chess. (ଠାକୁର ଷଡ୍ରିଂଶ)
ସେ-ବଦେଶୀ ଶବ୍ଦଜାତ ।
ଡ଼ହୁଅ—ଦାହ କର ।
ଡାର—ଡାଳ ।
ଡାହ—ଦାହ ।
ଡୋମ୍ବୀଏର—ଡୋମ୍ବୀର ।
ଡୋମ୍ବିତ—ଡୋମ୍ବୀଠାରୁ । (ଅପାଦାନେ ୭ମୀ) ।
ତଁଇଲେ—ସେ-ତ୍ୱସ୍ମେନ, ବ-ତ୍ୱସ୍ମା+ଏନ>ତଏଁ>ତ ଇ । ତୁଇ ଲେ ।
ତଇଲ—ସେ-ତ୍ରିକ+ଲ, ଦ—ତ୍ରିତଲ, ଶ—ତୃତୀୟ>ତଇଅ>ତଇ+ଲ ।
(third) । ଗ୍ର-ତଇଲ (ଗୃହପାଇଁ ପାହାଡ଼ ଉପରେ ପ୍ରସ୍ତୁତ ଜମି) ।
ତଇସେଁ।—ତାଦୃଶ । ତେସା ।
ତରଙ୍ଗମ—ଦ-ତୁରଙ୍ଗମ, କୁରଙ୍ଗମ ପଣ ତରଙ୍ଗମ ।
ସେ—ମମ (ମୋ ଦ୍ୱାରା, ମୁଁ) । ତରଙ୍ଗ—ମୁଁ ।

ତରଙ୍ଗତେ—ତୃଣ୍ଟିଂଗତେ ବା ତରଙ୍ଗ ଦ୍ୱାରା, ଲର୍ଣ୍ଣ ପ୍ରଦାନ କର ।
ତରଣ୍ଣ—ସେ-ତରଳ, ଦ-ତୃଣ୍ଟି>ତରଳ । ତଳବା ।

ତସୁ—ତସ୍ୟ>ତସ୍‌ସୁ>ତସୁ । ତା'ର ।
ତବୋଲା—ତାମ୍ବୂଳ ।
ତାନ୍ତ—ସେ-ତନ୍ତ୍ରିକା (String, cut gut) । ପ୍ର-ତନ୍ତୁ, ତନ୍ତ୍ରୀ । ତୁ: ତନ୍ତୁର (ପଦ୍ମନାଭ) । ଅନ୍ତ ।
ତାହେର—ତସ୍ୟ+ଏର । ତାହାର ।
ତିଅ—ତ୍ରିକ, ତ୍ରି । ତିନ ।
ତିଅସ—(<ତ୍ରିଦଶ) ଦେବତା, ସ୍ୱର୍ଗ, ତିନ ଦଶା ।
ତିଣି—ତିନ ।
ତିମତିମ—ବ-ତେବ୍‌ବ>ତେବ୍‌ବଁ>ତେମ୍ନ । ତେମିତ ।
ତିଶରଣ—ତ୍ରି ଶରଣ ।
ତିହୁଅଣ—ତ୍ରିଭୁବନ ।
ତେ—ସେ [ବହୁବଚନ] ।
ତେତ—ତେତେ ।
ତେଁଲେଏ—ଯେତିଲେକେ ।
ତୋଏ—ତୁମ୍ଭ । ତୋ ଦ୍ୱାରା ।
ତୋଡ଼ିଆ—ସେ-ତୋଟିତ; ବ-ତୁଟ୍ଟ>ତୋଡ଼+ଇଆ ।
ଶା-ତୋଲସ୍ୱିତ୍ୱା । ପ୍ର-ତୋଡିବା ।
ତୋଡିଅ—ଦୋଟଯ୍ୱିତ୍ୱା, ତୋଡ଼ଯ୍ୱିତ୍ୱା (to break) ।
ଥାକଇ—(<ସ୍ଥା) ରହିବା, ଠାକବା ।
ଥାଧ—ସ୍ଥିତ, ବଡ଼ ପଣ ।
ଦଶବଳ ରଅଣ—ବୁଦ୍ଧ । ବୁଦ୍ଧି, କ୍ଷାନ୍ତ, ବୀର୍ଯ୍ୟାଦ ଦଶବଳଯୁକ୍ତ ରତ୍ନ ।
ଦହ ଦହେ—ଦଶ ଦଶେ । (ଦହ୍‌=ପୋଡ଼ିବା; ଜଳୁଜଳେ) ।
ଦାଣ୍ଡୀ—ଦାଣ୍ଡୀ (courtesan) ।
ଦିଆ—ଦା+ଇଆ । ଦେଇ, ଦେବାଦ୍ୱାରା ।
ଦିଠ—ଦୃଷ୍ଟ ।
ଦିଢ଼—ଦୃଢ଼ ।
ଦିଧଲ—ବ-ଦଗ୍ଧ, ସେ-ଦେବାହ୍ୱେଲ (ଦହ୍ୱଲ) ।
ଦିବ—ଦାତବ୍ୟ+ଇ । ମୁଁ ଦେବ ।
ଦିସ—ଦିଶା, ଦିଶା । ବ-ଉଦେଶ ।
ଦୁଆ—ଦ୍ୱାର । (ତେଳର ଦୁଆ) ସେ ଦ୍ୱାର ।
ଦୁଠ—ଦୁଷ୍ଟ ।

ଢୁଣ୍ଢୋଲୀ—ସେ-ଢୁଣ୍ଢେଲିକା, ବ—ଆଡ଼ମ୍ବର, ଆଲୋଡନ ଅଥେ ଢୁଁଢୋଳଢା (quarrel,) ପ୍ର—ଧନ୍ଦୋଳ ।

ଦୁଲକ୍‌ଖ—ଦୁର୍ଲକ୍ଷ୍ୟ । ଛଦକ୍ଷ ଅନୁବାଦ ଅନୁସାରେ—ଲକ୍ଷଣହୀନ devoid of any sign) ।

ଦେହୁଁ—ଦା+ଅହଂ ଜାତ ହୁଁ; ସେ—ଦସ୍ୱସ୍ମ । ଆମେ ଦେଉଁ ।

ଧଣଅ—ସେ-ଧନ୍ୱତ । ଧୃ ଧାତୁଜ ।

ଧାଉ—ଧାତୁ ।

ଧାଏ—ଧାତୁ+ଏ (୭ମୀ) ।

ଧାମ—ଧର୍ମ । (JDL ଡ. ବାଗ୍‌ଚୀ, ଧାମ ବୃକ୍ଷ ଅର୍ଥରେ ନେବା ପକ୍ଷପାତୀ) ।

ନଅବଲ—ବ-ନବବଲ, ସେ-ନ୍ୟାସ୍ତ ବଲ, ପ୍ର-ନ୍ୟାସ୍ତବଲ । ଏହା ସତରଞ୍ଜ ଖେଳଠାରୁ କେତେକ ପରିମାଣରେ ଭିନ୍ନ । ଚେସ୍ ଖେଳ ।

ନଡ଼ପେଡ଼ା—ସେ-ନଟପେଟକ (dancer's box) ଶ. ନଡ଼ ପେଟକ ; ନଡ଼ ଅର୍ଥ reed (ନଳ) । ଛଦକ୍ଷ ଅନୁବାଦରେ ନଡ଼=reed, ପେଡ଼ା—to beat = beating of reed.

ନାଇ—ସେ· ନୌକାର ହାଲ, ମୁ-Prow of the boat (<ନାଭି, ନାହା)

ନାଚଅ—ନୃତ୍ୟନ୍ତ । ନାଚଇ ।

ନାଠ—ନଷ୍ଟ ।

ନାଡ଼ିଆ—ବ-ନଗ୍ନଟୀକାରୁ ଉଚ୍ଛାର୍ଯ୍ୟେ । ସେ-ନେଡେ (Shaven headed), ମୁ-Learned, ଶା-ଲର୍ମିଟ । ପ୍ର-ନାଣ୍ଡିଆ ଲେଡ଼ା ।

ନାବୀ—ନାବ ।

ଣିଅ—ନିଜ ।

ନିଅଡ଼ି—ନିକଟ+ଇ (୭ମୀ) ।

ନିଧିନ—ନିର୍ଘୃଣ (=ନିସ୍ତପଃ) । ହୁ—ନିଘେନ (ଘନିଷ୍ଠ) ।

ନିଚିତ—ନିଶ୍ଚିତ ।

ନିଦାଲୁ—ନିଦ୍ରାଳୁ ।

ନିବିତା—ନିବୃତ୍ତ । (ଛଦକ୍ଷ ଅନୁବାଦରେ 'ଅଚିନ୍ତ୍ୟ-ଭୂତଃ—a state of mind when no thought arises)ପେ. ପରମସୁଖୀ ।

ନିରେବଣ—ବ-ନିର୍ବେଦନ, ସେ-ନିଚେତନ, ନିଶ୍ଚେତନ (Senseless, quiet.) ନିର୍ବାଣ ।

ନେଉର—ନୂପୁର ।

ନୈରାମଣୀ—ନୈରାତ୍ମା ।

ପଇଠା—ପ୍ରବିଷ୍ଟ ।
ପଇ ସଇ—ପ୍ରବିଶତି । ସେ-ପଶଇ ।
ପଇସି—ପ୍ରବିଶ୍ୟ । ପଶି ।
ପଇସନ୍ତେ—ସେ-ପ୍ରବିଶନ୍ତ, ବ-ପ୍ରବିଶ୍ୟ>ପଇସ+ଅନ୍ତ ।
ପ୍ରବେଶନ୍ତେ (ଶତୃନ୍ତାନ୍ତ ଅସମାପିକା) ।
ପଉଁଆ—ପଦ୍ମ ।
ପଡ଼ନ୍ନ—ପଟହ । ପ୍ର—ନାଗରା ଢୋଲ ।
ପଡ଼ିଆ--ପତିତ । ଯଥାର୍ଥ ପାଠ୍ୟ—ପଣ୍ଡି+ଆରେ (ସମ୍ବୋଧନ) ।
ପତବାଲ—କର-ପଟୁଆଲ, ମଙ୍ଗ, ସେ-ନୌକାର ପାଲ, ମୂ-sail, ଶା-ଢ଼ାଲ ।
ପତିଆଇ—ପ୍ରତ୍ୟୟିତ ବା ପ୍ରତ୍ୟେତି । ବିଶ୍ବାସ କରିବା, ପରତେ ଯିବା ।
ପଦୁମା—ପଦ୍ମ ।
ପମାଇ—ସେ-ପ୍ରମାପିତା (measured) । ବସୁ-ପ୍ରମାପ୍ୟ ।
ପ୍ର-ପ୍ରମା—ମାପ (ବର୍ତ୍ତି. ଵ୍ୟପର୍ଯ୍ୟସ୍ତ ହେବୁ) । ଶ-ପ୍ରମାପୟତି (ପ୍ରବେଶ କରେ, ପ୍ରମାଣ କରେ) ।
ପରଶ—ସ୍ପର୍ଶ ।
ପରିହଣ—ପରିଧାନ । ଭୁ: ପହରଣ ।
ପରିଚ୍ଛିନ୍ନ—(ସେ-broken away; ମୂ-spoilt, ବ-ପରିଚ୍ଛେଦନ ଅର୍ଥେ) ।
ପ୍ର-ଖଣ୍ଡିତ, ପରିମିତ; ସୁବୁଭକ୍ତ ଗୀତା—ଶ୍ରୀଗୁରୁ ପରମଗୁରୁ କହ ପରିଚ୍ଛିନ୍ନ । ପରିଷ୍କାର, ସ୍ପଷ୍ଟ ।
ପରିନିବ୍ବୃତା—ପରିନିର୍ବୃତ । ସେ—satiated, ମୂ—released, ପରିନିର୍ବାପିତା) ।
ପରିମାଣ—(ନାମଧାତୁ) ପରିମାଣ କର, (determine) ।
ପରେ—ସେ: ପରଦ୍ୱାର, ମୂ Other; ଓ-ଭାପରେ, ପରିମାଣରେ ।
ପସଙ୍ଗେ—ପ୍ରସଙ୍ଗେ ।

ପହାର—ବ. ପ୍ରହୃତ୍ୟ । (ଅପହରଣ କରିବା) ସ-ପ୍ରହାରିତ (ପ୍ରହାର କରିବା) ।
ପାକେଲ—ପାକଳ (ପକ୍ୱ+ଇଲ୍ଲ) ।
ପାଙ୍ଖି—ପାଖେ । (ପାକ୍ଷିକ, supporter, witness) ।
ପାଖୁଡ଼ୀ—ପାଖୁଡ଼ା (ପକ୍ଷଟୀକା, ପର୍ଣ୍ଣଟୀକା) ।
ପାଟେର—ବ-ପାଟ୍ୟ+ଏର, ପରିପାଟୀର । ଭୁ: ଚର୍ଯା ୪୧—ପାଟନ, ଟୀକାର୍ଥ-ଇନ୍ଦ୍ର ସ୍ୱ-ବଷୟ । ପ୍ରକୃତ ପାଠ—କରଣ+କପଟେର) ।
ପାଡ଼—ପକାଇ । ସେ-ନୌବନ୍ଧର, ନାବବାଡ଼ୀ ।

ପାଣିଆ—ପାନୀୟ ।
ପାଣ୍ଡିଆସ୍ଏ—ପଣ୍ଡିତାସ୍ୟେ ।
ପାଡ଼—ପଥ ।
ପାବତ—ପର୍ବତ ।
ପାର୍ ଉଆର୍—ପାର ଉତ୍ତାର, ସେ-ପାରେ ଉତ୍ତୀର୍ଣ୍ଣ ହେବା, ମୂ-Across the bank
ପାର୍ଶ୍ୱ—ପାର (ପାର୍ଶ୍ୱ) ।
ପୀଛୁ—ପୃଷ୍ଠ ।
ପିଉଛା—ପୃଚ୍ଛା (querry) ପ୍ରଶ୍ନ, ପୃଚ୍ଛା ।
ପିଡ୍ଡାଡ଼—ପୀଢ଼, (ପୀଠିକା, ପୀଠ) ଚେସ୍ ଖେଳର ପାଲ ।
ପୁଛମି—ପୃଚ୍ଛାମି, (I ask) ।
ପୁଛିଅ—ସେ-ପୃଚ୍ଛିକ, ବ-ପୃଷ୍ଟ ।
ପୁଙ୍ଖଆ—ମୂ-bow, ସେ-tail feather ? ବାଜପକ୍ଷୀ । ପ୍ର-ପୁଙ୍ଖ—ବାଣର ପକ୍ଷଯୁକ୍ତ ଅଂଶ, ବାଣମୂଳ, ଶରର ପକ୍ଷଯୁକ୍ତ ଶେଷ ଭାଗ ।
ପେଖଇ—ପ୍ରେକ୍ଷତ, (he finds)
ପେମ୍ମ—ପ୍ରେମ ।
ପୋଦ୍ଧାଅ—ପ୍ରବ୍ରଢ । ପୋଦ୍ଧାଇ ।
ଫରଇ—ସ୍ଫୁରଢ, (Pervade) । ଭୂ: ଫର୍ ଫର୍ ହେବା, ଫରିବା, ଫେରିବା ।
ଫିଟଉ—ବ-ସ୍ଫୋଟଉମ୍; ଶ-ସ୍ଫୁଟ>ଫିଟ୍ଟ । ଖେଳରେ ହାତ ଫିଟେଇବା । (ସେ-ମୁକ୍ତ ହେଉ, ମୂ-ଦ୍ୱିଗସ୍ ପୁରୁଷ ଅନୁଜ୍ଞା) ।
ଫିଟେଲ୍—ସ୍ଫୁଟିତ+ଇଲ୍ଲ । ଫିଟିଲା ।
ବଥଣେ—ବଚନେ ।
ବଇଠା—ଉପବିଷ୍ଟ ।
ବଙ୍ଗାଲୀ—ସେ-ନୀଚ, ଦୁର୍ଗତ; ପୂର୍ବବଙ୍ଗୀୟ ଲୋକ ।
ବଟଇ—ବର୍ତ୍ତିଢ । (exists) ।
ବଡ଼ୁଆ—ବଟିକା, (ପତ୍ତିକା-footman) । ପ୍ର-ବଡ଼-ସତରଞ୍ଜ ଖେଳର ଗୋଟି ।
ବଡ଼—ଶ-ଅପଭ୍ରଂଶ-ବଢ଼ ( ମୂର୍ଖ ) ଉଦଗ୍ର ଅନୁବାଦରେ ମଧ୍ୟ 'ମୂର୍ଖ' ଅର୍ଥ ମିଳେ ।
ବନ୍ଧାବଏ—(<ବନ୍ଧାପୟତ) ବନ୍ଧାଏ
ବଲାଗ—ବାଲାଗ୍ର । (କେଶାଗ୍ର ପରିମିତ) ।
ବଲ୍ଲ—ପିଣ୍ଡଦାନ । ।
ବଲ୍ଲଆ—ବଳବାନ ।

ବଉ—ବରଞ୍ଚ, ବରଂ, ମୂ-better.
ବଉସଅ—ବତ୍ସର । ବରଷଇ ।
ବହୁଳ—( abundant ) ଘନ ବା ଘଞ୍ଚ ।
ବାଖୋଡ଼—ବ-ଙ୍କଣ+ଖଣ୍ଡ>ଖୁଣ୍ଡ, ବାଁଖୋଡ଼ । ଶ-ସର୍ବାନନ୍ଦ ହସ୍ତୀବନ୍ଧନ ସ୍ତମ୍ଭ ଅର୍ଥରେ ଉଲ୍ଲେଖ କରିଛନ୍ତି । (ଦ୍ୱା+ଖୋଡ଼, ଦୁଇ ସ୍ତମ୍ଭ) ଭୁ: ବାଖୁରୀ ।
ବାଜ—ବଜ୍ର, ବାଜରୀ ନୌକା
ବାଡ଼—(ବାଟିକା) ।
ବାଡ଼ବ—ବଢ଼ଇ । (ବର୍ଦ୍ଧିତ) ।
ବାଣ—ବର୍ଣ୍ଣ ।

ବାପୁଡ଼ୀ—ବାପୁଡି. ଶ—ମୈଥିଳୀ-ବାପୁଡ଼, ହେମଚନ୍ଦ୍ର-ବାପୁଡ଼ା ସେ-Poor fellow, ମୂ-Dear, (ନଃସ୍ୱ), ପ୍ର-ବାପୁଡ଼, ବାପୁଡ଼ ।
ବାଲୀ—ବାଳିକା ।
ବାହ୍ମ—ବାହୁ ।
ବାହୁଅ—(ବାହୁସ୍ୱତ) ବାହୁଲ ।
ବାହୁଅ—(ବାହୁକ) ବାହୁଣ ।
ବାହା—(ଶାଖା) ବହନକାରୀ । (ବୃହା) ।
ଵି—(ଅପି) ସଂଯୋଗସୂଚକ ଅବ୍ୟୟ ।
ଵିଆପଙ୍କ—ବ୍ୟାପକ ।
ବିକଣେଅ—ବି-କ୍ରୀଧାତୁ>ବିକ୍‌କଣ । ବିକବା । (ସେ-ବିକ୍ରୀଣାତି ଶା-ବିକ୍ରୀଣିହୁ) ।
ବିଟାଳ—ମୂ-spoil, ପ୍ର-ପ୍ରତାରକ ଧୂର୍ତ୍ତ, କାମୁକ, ଦୁଷ୍ଟ ।
ବିଟାଳହୁ—ପ୍ର-ଅପବିତ୍ର କରିବା, ଜାତିମାରିବା । ଅପଭ୍ରଂଶ ବିନ୍‌ଟାଳ (ବିଷ୍ଟଲତଃ—ଅଶୁଚୀକୃତ) ।
ବିଣାଣ - ବିଜ୍ଞାନ ।
ବିନ୍ଧାରଅ—ସେ-ବୃନ୍ଦାରକ । ବିଦାରକ, ବିନ୍ଧକାରକ । ବିଧାରଣ କରିବା ।
ବିନ୍ଦହ୍ମ—ବିନ୍ଦୁ (ଅନୁଜ୍ଞା) ।
ବିବୁଜନ—ବିଦ୍ୱଦଜନ ।
ବିବାହୁଆ—ବିବାହ+ଇଆ, ବିବାହ ହୋଇ ।
ବିବୁହ—ବିବୁଧ ।
ବିମନ—ବି-ବିଶିଷ୍ଟ ମନ, ମୂ-sad, ପ୍ର. ବ୍ୟାକୁଳ, ବିରକ୍ତ, ବିଚଳିତ, ବ୍ୟାକୁଳ । ଶା-ଅନ୍ୟମନସ୍କ ।

ବରୁଆ—ବରୁପା ।
ବଲସଅ—ବଲସଇ (ବଲଶ୍ଚ)
ବସ୍ତୋଏ—ବସ୍ତୋଗେ ।
ବସନ୍ନା—ବଷଣ୍ଣ (ଦୁଃଖିତ) ।
ବସଙ୍କା—ଶଙ୍କା ।
ବହ୍ଣ—ବସ୍ନାନ, ବହୁଳ ।
ବେଅନ—ବେଦନ ।
ବେର୍ଣ—ବେଢେ । (ବେଙ୍ଗଢ଼ାଷା) ।
ବୋଁଧ—ହ୍ବୋଧା ।
ବୋଲବା—ବୋଲ୍‌ବା; (କ୍ରିୟାବିଶେଷ୍ୟ) ।
ବୋଲଆ—ବୋଲବା, କର—ଭେଳଆ (<ବଲ୍ଲ)
ବୋଢେ—ଦୋଧେନ ।
ଭଇଲ—ଭୂତ+ହଲ୍ଲା । ହୋଇଲ ।
ଭଙ୍ଗର୍ତ୍ତ—ଭଙ୍ଗରଣ୍ଡା ।
ଭାଇବ—ଭାବ୍ୟ (କର୍ମବାଚ୍ୟରେ) ।
ଭାଇଲ—ଭଦ୍ର+ଇଲ୍ଲ ।
ଭାଞ୍ଜିଅ—ଭଞ୍ଜ୍+ଇଅ । ଭାଙ୍ଗି । (ସେ-ଭଞ୍ଜିତ, ଅସମାପିକା) ।
ଭାଙ୍ଗତରଙ୍ଗ—'broken wave' ତରଙ୍ଗଭଙ୍ଗ ।
ଭଂତୋ—ଭ୍ରାନ୍ତ, ଭ୍ରମନ୍ତ
ଭାଭଗ୍ରଆଲ—ଦ-ଭର୍ଭରକା+ଆଳୀ, ଶ-ଭବାଟୀ (an amorous woman)
  >ଭ୍ରଭଗ୍ର+ଆଲ ପ୍ରତ୍ୟୟ ।
  ସେ-ନାଗଗ୍ରପର୍ଣୀଆ । ପ୍ର-ବାଳୁରଲ, ବାଲୁଆଲ (କେଶଦୃତୀ) । ଡକଗ ଅନୁ-
  ବାଦରେ 'ବଙ୍କ ବାଳୀ' Curly hair ।
ଭାଲ—ଭଲ (ଭଦ୍ର>ଭଲ୍ଲ ।
ଭିଡ଼—ଭିଡ଼ (close contact) ଟାଣିନେବା, ଆକର୍ଷଣ କରିବା ।
ଭୁଜଙ୍ଗ—ଲମ୍ପଟ । ନାଗର ।
ଭେଉ—ଭେଦ, ମର୍ମ ।
ଭେଲା—ବହ୍ନଲ ।
ମଅଗଲ—ମଦଗଲ (ମଦସ୍ରାବ) ମୃ-elephant in rut.
ମଇ—ମୁଁଇ (ମସ୍ସା) ।
ମଇଲେଁ—ମରିଲେ ।

ମଙ୍ଗଂର—ମଙ୍ଗଳ
ମଠଏ—ମର୍ତ୍ତ୍ୟ+ଏନ ବା ମର୍ତ୍ତ୍ୟ । ମର୍ତ୍ତ୍ୟଦ୍ୱାରା ବା ଭୃଙ୍ଗିଦ୍ୱାରା ।
ମର୍ଜ୍ଜିଭ—(ମାରଜ୍ୟ) । ମରାହେଲ । (ଣ-ମାରସ୍ଥାନାଯ) ।
ମରଥଇ—ମରବର୍ତ୍ତି (ମି୍ ସ୍ମୃତେ>ମରନ୍ଥଇ) ।
ମହାସୃଡ—ମହାସୁଖ ।
ମା—ନଷେଧାର୍ଥକ ଅବ୍ୟୟ ।
ମାଅ—ମାୟା ।
ମାଙ୍ଗେ—ବ-ମାର୍ଗ । ଣ-ଠକ୍‌ର ଅନୁବାଦ ଅନୁଯାରେ 'Hinder part of a boat
କିନ୍ତୁ ଆପ୍ଟେଙ୍କ ଅନୁସାରେ 'Head of a boat.' ପ୍ର-ନୌକାମୁଣ୍ଡ ।
ଆଗ ପଛ ଉଭୟ ମଙ୍ଗ ।
ମାଝବେଣୀ—ମଧ୍ୟ ବେଣୀ (ଜଳପ୍ରବାହ) ।
ମାଝେଁ—ମଝିରେ ।
ମାଡେଲ—ମଣ୍ଡ+ଇଲ୍ଲ । ମାଡଲ ।
ମାଡେସି—ହେ-ମର୍ଦ୍ଦ ଶ୍ବସି; ମାଦ୍-to kill; ଠକ୍‌ର ଅନୁବାଦରେ—to go aside,
to turn; ମୃଦ୍ smash.
ମାରସି—ମାର+ସି (୧ମ ପୁରୁଷ ନର୍ଦ୍ଦେଶକ) । ହେ-ମାରସ୍ୱାମି ।
ମାରଅ—ମାରଣ (ମାରସ୍ୱିହ୍ବା) ।
ମିଛା—ମିଥ୍ୟା ।
ମୁକଲ—ମୁକୁଳା । ମୁକ୍ତ+ଇଲ୍ଲ ।
ମୁକା—ମୁକ୍ତ+ସ୍ୱାର୍ଥରେ-ଆ
ମୁତ୍ତିହାର—ଣ-ମୁକ୍ତହାର (ସଙ୍କର୍ମ ପୁଣ୍ଣସାକ—pearl necklace) ମୋତହାର ।
ମୁନଆ—ସେ-ମୁନକ (ସ୍ୱରଠିକ୍ କଣବା, ଚନ୍ତ୍ରିତ), ମନ+ଣ୍ବାଚ୍=ମନ୍ବା>ମଣିଅ
>ମୁଣିଅ । ପ୍ରାକୃତରେ ମୁଣିଆ (ଜାଣିବା),
ମୁଁ—ponder (ଭୂ: ମଣାଇବା, ମଣିବା) ।
ମେଣ—ମନ+ଏର+ଇ (ସ୍ତ୍ରୀ) । ମୋଣ ।
ମେହେଲ } ଣ-ଅବସ୍ଥୀ—ମେହସ୍ତା; ସେ-ବଦେଶୀ ଶବ୍ଦଜାତ,
ମେହେର } ଅନ୍ତଃପୁର, ଅବରୋଧ । ପ୍ର-ମାହାସା ।
ମୋଏ—ମମ>ମୋ+ଏନ>ଏ । ମୋ ଦ୍ୱାରା ।
ମୋଖ—ମୋକ୍ଷ ।
ମୋଡ଼ଇ—ମର୍ଦ୍ଦ ସ୍ୱିହ୍ବା>ମୋଡ଼ଅ । ସେ-ମର୍ଦ୍ଦିତଃ ।
ମୋରଙ୍ଗୀ—ମୟୂରାଙ୍ଗ ବା ମୟୂରାଙ୍ଗିକ ।
ମୋଲ୍ଲଣ—ମୃଣାଳ (ବର୍ଣ୍ଣବିପର୍ଯ୍ୟୟ ଦ୍ୱାରା) ।

ମୋହ୍ବା—ମୋହ୍ବ ।
ମୌଲିଲ—ମୁକୁଳିତ+ଇଲ୍ଲ ।
ଭଅଣି—ଭଜନୀ ।
ରତ୍ତ୍ରେ—ରତ (ଅନୁରକ୍ତ) ।
ରସଥ—ବ-ଇଷା>ଇସ+ଥ>ଇ>ଥ ସେ-ରନ୍ସ୍, ରମ ଧାତୁର ଲୁଙ୍ରେ—ପ୍ରେମ କରିବା । ଓଡ଼ିଆ ଅନୁବାଦରେ—ଆସକ୍ତଃ । ପ୍ର—ରଷା (ଗୁ: ରଷାରଷି) make love
ମରୁଅ—ରୁପା
ରୁନ୍ଧେଲ—ରୁଧ୍>ରୁନ୍ଧ+ଇଲ୍ଲ ।
ରୁବ—ରୁପ ।
ଲଇ—ବ-ଲଭିତ୍ବା ।
ଲଇଆ—ବ-ଲଭିତ୍ବା, ସେ ଲଭିତ ।
ଲବଏ—ଲଭ୍ୟତେ । ଲଭଇ ।
ଲାଇଅ— ଲପ୍ୟ । ଦାଇବା, ଲେପିହେବା ।
ଲାଗେଲ୍ଲ—ଲାଗିଲ । (ଲଗ୍ନ+ଇଲ୍ଲ) ।
ଲଙ୍କ—ଲଙ୍କା । ଦୂରବର୍ତ୍ତୀ ସ୍ଥାନ । କୋରାପୁଟ ମୁଣ୍ଡାଭାଷାରେ ମଧ ଏହା ପ୍ରଚଳିତ ।
ଲଙ୍ଗ—ନଗ୍ନ, ଉଲଙ୍ଗ, ନାଗା ।
ଲୀଲେଁ—ଲୀଳା+ଏଁ ।
ଲୁଢ଼ଣ୍ଣ—ଲୋଢ଼ିବା, ଲୁଣ୍ଠନ କରିବା
ଲେମ୍ମି—ନେବ । ବ-ଲଭ>ଲହ୍>ଲେ+ମ୍ମି ।
ଲେହ୍ନୁଁ—ବ-ଲଭ>ଲହ୍+ହୁଁ (ଅହମ୍ ଜାତ) । ନେଉଁ ।
ଲୋଅ—ଲୋକ ।
ଲୋଢ଼ିବ—ବ-ଲୁଣ୍ଠ>ଲୋଢ଼+ଇତବ୍ୟ (ଅନୁସନ୍ଧାନ କରିବା) ।
ସଅଲ—ସକଳ ।
ସଅଲା—ସକଳ । କର—ସସ୍ତକ (ସଂସାର)
ସଗୁଣ—ଶାଗୁଣା (ଶକୁନ) ।
ସଲ—ବ-ଦ୍ବ>ସର>ସଡ଼+ଇ । ପ୍ର-ଶଢ଼ା, ସେ-କ୍ଳାନ୍ତ, ଶୀର୍ଣ୍ଣ ।
ସପରବ୍ବଗା—ସୁ+ପର+ବଗ୍ଗ ।
ସବରାଲ—(ମୁ-ସବସାଲ-pain) ଶବର+ଆଲ । ଶବରତ୍ବ ।
ସମ—(ସମଂ) ସହ । ସଙ୍ଗ ।
ସମରୁଳ—ସମରୁଲ୍ୟ ।

ସମାଅ—ସେ-ସମାସ୍ୱାଦ (ପ୍ରବେଶ କରେ) । ବ-ସନ୍ଦ୍>ସନ୍ଧସ୍ତୁଦ (ପ୍ରବେଶ କରିବା) ।
ଣ—ସମ୍ଭାପଯୁଦ>ସମ୍ଭାଅଇ>ସମାଇ । ପ୍ର-ସମାଇବା, ସମ୍ଭାଇବା (ପ୍ରବିଷ୍ଟ ହେବା) ଯଥା—ବ୍ରହ୍ମାଣ୍ଡ ଯାହାର ଉଦରେ ପ୍ରଳୟେ ସମ୍ଭାଇ (ବୈଦେହୀଶ-ବିଳାସ) ।

ସମାହୁଅ—ସମାଧିଭୂତ । ସମାଧି ସକଳ ।

ସରହର—ଶରଧର ।

ସହାଦେ—ସହଦେ ।

ସା—ସେ ।

ସାଅର—ସାଗର ।

ଶାଖି—ସାକ୍ଷୀ ।

ସାଚ—ସତ୍ୟ>ସଚ ।

ସାଦ—ଶବ୍ଦ>ସଦ୍ଦ ।

ସାହା—ଶାଖା ।

ସୀସ—ଶିଷ୍ୟ ।

ସିହର—ଶିଖର ।

ସୁଇନା—ସ୍ୱପ୍ନ>ସୁବଣ>ସୁଇଣ ।

ସୁକଡ଼—ବ-ସୁକର, ସେ-ସୁନ୍ଦର, ଚମତ୍କାର (ସୁ+କୃ) ।

ସୁଣତ—ଶୂନ୍ୟତା ।

ସୁତେଲ—ଶୋଇଲା । (ସୁପ୍ତ+ଇଲ୍ଲ) ।

ସୁଧ—ଶୁଦ୍ଧ ।

ଶୂନ—ଶୂନ୍ୟ ।

ସୁନପାଖ—ଶୂନ୍ୟପକ୍ଷ ଶୂନ୍ୟପାର୍ଶ୍ୱ ।

ସୁନବାଦ—ଶୂନ୍ୟବାଦ ।

ସୁରଅ—ସୁରତ ।

ସୁହେ—ସୁଖେ ।

ସେଜ—ଶଯ୍ୟା ।

ସୋ—ସେ (ସୌରସେନୀ-ସୋ) ।

ସୋଣ—ସ୍ୱର୍ଣ୍ଣ ।

ସୋନ୍ତେ—ସ୍ରୋତେ

ସବୋହୁଅ—ସବୋଧିତ ।

ସବୋହେ—ସବୋଧେନ ।

ହ୍ୱ—(<ଅପି) ନିଶ୍ଚୟାତ୍ମକ ବା ସଂଯୋଗାତ୍ମକ ଅବ୍ୟୟ ।

ହ୍ୱରଅ—ହୃତ । ସେ-ହ୍ୱରତ>(ଆହୃତ) ।

ହ୍ୱାଉଁ—ବ-ଅହ୍ୱମ୍>ଅହ୍ୱକଂ>ହ୍ୱକଂ>ହ୍ୱଉଁ । ମୁଁ ।

ହ୍ୱାକ—ଡାକ, ମୂ-clamour

ହ୍ୱାଡ଼େର—ହ୍ୱଡ୍‌ଡ଼>ହ୍ୱାଡ଼+ଏର । (ସ୍ତ୍ରୀ) ।

ହ୍ୱଅ—ହ୍ୱଆ (ହୃଦୟ) ।

ହ୍ୱଅହ୍ୱ—ହ୍ୱଆ+ହ୍ୱ (୭ମୀ) ।

ହ୍ୱଣ୍ଡଇ—ବ-ହ୍ୱଣ୍ଡଢ଼ । ଭୋଗପୁର ଦେଶ'ସ୍ଥ ଭାଷାରେ—ହଣ୍ଡିବା, ଭଣ୍ଡ ବା (ଘୂରବୁଲିବା) ।

ହ୍ୱଁ—ପାରସର୍ଗିକ-'ହ୍ୱଁ' କାର, ଓ-ତହ୍ୱଁ, ଅପାଦାନ କାରକ ଅର୍ଥ ସୂଚକ ।

ହ୍ୱେଷେ—(ହ୍ୱଏ —ହୃଦୟେ) ଜାଣିବା ।

ହ୍ୱୋହ୍ୱ—ଭୂ>ହ୍ୱୋ+ହ୍ୱ (ଅନୁଜ୍ଞା) ହୁଅ ।

